# ଚଉତିଶା ସଞ୍ଚୟନ

(ଦ୍ୱିତୀୟ ଭାଗ)

ରାଜ୍ୟ ସାଂସ୍କୃତିକ ବ୍ୟାପାର ନିର୍ଦ୍ଦେଶାଳୟ
ଭୁବନେଶ୍ୱର

ଉତ୍କଳୀୟ ପ୍ରାଚ୍ୟ ଗ୍ରନ୍ଥମାଳା (ଓଡ଼ିଆ)—୧୯

# ଚଉତିଶା ସଂଚୟନ

## (ଦ୍ୱିତୀୟ ଭାଗ)

ସଂକଳକ

ଡକ୍ଟର କୁଞ୍ଜବିହାରୀ ଦାଶ, ଏମ୍. ଏ, ପିଏଚ୍. ଡ଼ି.

ପ୍ରକାଶକ

ରାଜ୍ୟ ସାଂସ୍କୃତିକ ବ୍ୟାପାର ନିର୍ଦ୍ଦେଶାଳୟ, ଭୁବନେଶ୍ୱର

ପ୍ରକାଶକ
**ରାଜ୍ୟ ସାଂସ୍କୃତିକ ବ୍ୟାପାର ନିର୍ଦ୍ଦେଶାଳୟ,**
ଭୁବନେଶ୍ୱର-୭

ପ୍ରଥମ ସଂସ୍କରଣ—୧୦୦୦
୧୯୭୭

**ମୁଦ୍ରଣ—**
ବିନାୟକ ପ୍ରିଣ୍ଟର୍ସ
ଖଟ୍ଟିବିନ ସାହି,—କଟକ-୮

**ମୂଲ୍ୟ—**

ORISSAN ORIENTAL TEXT SERIES (ORIYA)-19

# CHAUTISA SANCHAYANA

( PART-II )

COMPILER :
*Prof. Dr. Kunja Bihari Das*
M. A., Ph. D.

PUBLISHED BY :
DIRECTORATE OF CULTURAL AFFAIRS, ORISSA
BHUBANESWAR

# ମୁଖବନ୍ଧ

'ଚଉତିଶା ସଞ୍ଚୟନ'ର ପ୍ରଥମ ଭାଗ ଦୁଇବର୍ଷ ପୂର୍ବେ ପ୍ରକାଶିତ ହୋଇଥିଲା । ଦ୍ୱିତୀୟଭାଗ ତାଠାରୁ ଆକାରରେ କ୍ଷୁଦ୍ରତର ହେଲେହେଁ ସାହିତ୍ୟିକ ଉପାଦାନ ଓ ମାନଦୃଷ୍ଟିରୁ ନ୍ୟୂନତର ନୁହେ । ଦୁଇଟିଯାକ ସଞ୍ଚୟନ ମିଶି ପ୍ରାୟ ହଜାରେ ପୃଷ୍ଠାର ହେଲେହେଁ ସମସ୍ତ ଚଉତିଶା ଅନ୍ତର୍ଭୁକ୍ତ ହୋଇଅଛି, କୁହାଯାଇ ନ ପାରେ । ଅଦ୍ୟାପି ଲୋକମୁଖରେ ପ୍ରଚଳିତ, ପୋଥିରେ ଲିଖିତ ବହୁ ଚଉତିଶା ସଂଗୃହୀତ ହୋଇପାରିନାହିଁ । ତଥାପି ଏହା ଯେ ଓଡ଼ିଶାରେ ବୃହତ୍ତମ ଚଉତିଶା ସଂଗ୍ରହ, ଏହା ନିର୍ଦ୍ଦ୍ୱନ୍ଦରେ କୁହାଯାଇପାରେ ଓ ଏହାକୁ ଭିତ୍ତି କରି ପି.ଏଚ୍.ଡ଼ି. ବା ଡ଼ି.ଲିଟ୍ ଡ଼ିଗ୍ରୀ ଲାଗି ସନ୍ଦର୍ଭ ଲେଖାଯାଇପାରେ ।

ଏହି ସଞ୍ଚୟନର କେତେକ ଚଉତିଶା ଜୀର୍ଣ୍ଣଚ୍ଛିନ୍ନ, କୀଟଦଷ୍ଟ ତାଳପତ୍ର ଖେଦାମାନଙ୍କରୁ ସଂକଳିତ ହୋଇଅଛି । ଏକାଧିକ ଖେଦାର ଦୁଷ୍ପ୍ରାପ୍ୟତା ଯୋଗୁଁ ନିଖୁଣଭାବେ ପାଠୋଦ୍ଧାର କରିବା ସମ୍ଭବପର ହୋଇନାହିଁ । ଲୁପ୍ତପାଦ, ଲୁପ୍ତଶବ୍ଦ ଓ ନାନାଭାବେ ଖଣ୍ଡିତ ହେଲେହେଁ ଛନ୍ଦ ଓ ଭାବସମ୍ଭାର ଦୃଷ୍ଟିରୁ ସେଗୁଡ଼ିକ ଉପାଦେୟ ବୋଧହୁଏ । କୌଣସି କୌଣସି କବିଙ୍କର ଗୋଟିଏ ଚଉତିଶା ହିଁ ଏକମାତ୍ର ସ୍ମାରକ ହୋଇ ରହିଅଛି । ଭବିଷ୍ୟତର ପୋଥି ସଂକଳକ, ଜ୍ଞାନୀ ଗବେଷକ ଦଳେ ଶୁଦ୍ଧ ପାଠୋଦ୍ଧାର କରିପାରିବେ, ଏ ବିଶ୍ୱାସ ମୋର ଅଛି । ହୁଏତ ଏହାର କୌଣସି କୌଣସି ଚଉତିଶା ଲୁପ୍ତନାମ କବିଙ୍କ ଆବିଷ୍କାରରେ ପଥପ୍ରଦର୍ଶକ ହେବ ।

ସଗୁଳଶତି ସଂପୂର୍ଣ୍ଣ, ଅପୂର୍ଣ୍ଣ, ଆଂଶିକଭାବେ ପ୍ରାପ୍ତ ଚଉତିଶା ଏହି ସଞ୍ଚୟନରେ ସଂକଳିତ । ଗୋଟିଏ ଗୋଟିଏ ଚଉତିଶା ଏକ ରାଗରେ ବା ଏକାଧିକ ରାଗରାଗିଣୀରେ ରଚିତ ହୋଇଅଛି । କେତେକ ଚଉତିଶା ଶୃଙ୍ଗାର ରସାତ୍ମକ, କେତେକ ତାତ୍ତ୍ୱିକ, ଶିକ୍ଷାମୂଳକ; କେତେକ ବା ଶବ୍ଦାଳଙ୍କାରମୟ । ଏଥିରୁ ବହୁ କବିଙ୍କ ବିଚିତ୍ର ରଚନାଶୈଳୀର ଆସ୍ୱାଦ ମିଳିଥାଏ ।

ଲୁପ୍ତରତ୍ନ ଉଦ୍ଧାରରେ ସହାୟକ ହୋଇଥିବାରୁ ଓଡ଼ିଶା ରାଜ୍ୟ ସାଂସ୍କୃତିକ ବ୍ୟାପାର ନିର୍ଦ୍ଦେଶାଳୟ ସର୍ବତୋଭାବେ ସାଧୁବାଦର ପାତ୍ର । ସଂକଳନ କାର୍ଯ୍ୟରେ ମୋତେ ବିଶେଷ ସାହାଯ୍ୟ କରିଥିବାରୁ ଓଡ଼ିଶା ଯାଦୁଘରର ପୋଥିବିଭାଗର ପଣ୍ଡିତ ନୀଳମଣି ମିଶ୍ର ଓ ଶ୍ରୀଯୁକ୍ତ ଭଗବାନ୍ ପଣ୍ଡା ଧନ୍ୟବାଦାର୍ହ ।

୨୯ । ୭ । ୭୭
କଟକ

} ଅଧ୍ୟାପକ ଡକ୍ଟର କୁଞ୍ଜବିହାରୀ ଦାଶ

# ସୂଚୀପତ୍ର

**ବିଷୟ** | **ପୃଷ୍ଠା**

| ବିଷୟ | ପୃଷ୍ଠା |
|---|---|




# କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ଚଉତିଶା

## ରାଗ-କୌଶିକ

କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ବୃଷଭାନୁ କୁମାରୀ ଅତି ସୁକୁମାରୀ
କନକ ପ୍ରତିମ ଗଉରୀ ଗଉରୀ ପ୍ରିୟ ଯୋଗ ବିଯୋଗକାରୀ
କଞ୍ଜ ଖଞ୍ଜନ ଗଞ୍ଜନ ମଞ୍ଜୁଳ ଲୋଚନା
କହଇ ତା ଆଗେ ବସିଣ ଦୂତିକା ଶ୍ରୀକୃଷ୍ଣ ବେଦନା ରଚନା । ୧ ।
ଖଗପତି ପତି କାମ ଖରପନ୍ତ ରଖାଣ ପ୍ରହାର ବଶରୁ,
ଖସେ ଅନଶେ ମାରଧାରୀ ନିର୍ମଳ ନୟନ ଯୋଗରୁ,
କ୍ଷୀରୋଦସାରେ, ଦିଶେ ସେ ଯେମନ୍ତ ସୁନ୍ଦର,
ଖରେ ଅମଳ କମଳ ଦଳ ଯୋଗୁ ଗଲେ କି ତୁଷାରନିକର ? ୨ ।

······ତୋ ଗତି ରତି ଗତାଗତି ଅଗତି ସମଲୋକ ହୋଇ,
ଗତେ ସେ ରଜନୀ ନିକରେ ଶୋକରେ ସ୍ୱକରେ ହୃଦୟ ଗଡ଼ଇ ।
ଗୁଣମଣି ସଗୁଣମଣି ମାନଙ୍କୁ ନେଇ,
ଗଳାରେ ଗଳାଇ ଦେଲେ ସଖାମାନେ କାମ ପାଶ ପ୍ରାୟେ ମଣଇ । ୩ ।
ଘନଜଘନୀ ଘେନ ଭୃତ୍ୟ ସ୍ନେହକୁ ନ ତେଜ ସୁନିଜ ଦାସରେ
ଘେନାଘେନିମାନ ଗୁଡ଼ି ଏତେ ମାନ କରିଛୁ କି ଦୋଷ ବଶରେ ?
ଘନ ନିତମ୍ବୀ, ତୋହର ଅଙ୍ଗ ସଙ୍ଗ ବିନୁ,
ଘୋର ଅତନୁ ଅତନୁଶରେ ତନୁ କରୁଛି କ୍ଷୀଣ ଦିନୁ ଦିନୁ । ୪ ।

ନବଘନ ନବ ତମାଳ ବଲ୍ଲରୀ ନୀଳ ନିର୍ମଳ ଇନ୍ଦୀବର
ନିନ୍ଦା କରଇ ଯା ତନୁରେ ସୁତନୁ ସେ ଏବେ ହେଲା ଅସୁନ୍ଦର
ନାହିଁ ନାହିଁ ଗୋ, ତୋ ବିନୁ ତାଙ୍କୁ ପ୍ରତିକାର
ନୁହେଁ କି ଏମନ୍ତ ଏଥୁ ଆନମତି ତୋ ମନରେ ସଖୀ ବିଚାର ? । ୫ ।

ଚତୁରୀ ମଣି ତୋ ବିନୁ ସେ ଚତୁର ଅତି ଆତୁର ହୋଉଅଛି;
ଚିତ୍ତୁ ଚନ୍ଦ୍ର ହାସ ଲଗିଲେ ସେ ଚନ୍ଦ୍ରହାସ ସମ ତ୍ରାସ ପାଉଛି ।
ଚସକେଶିନୀ, କେଶୀ ନିସୂଦନ ଯେ ବିନା
ଚ୍ୟୁତ ଶର ଧନୁରୁ ଚ୍ୟୁତ ଅଚ୍ୟୁତ ଶରେ ପାଉଅଛି ବେଦନା । ୬ ।

ଘୁଡ଼ିଲାନ ତାର ଅଧରୁ ରଙ୍ଗିମା ରଙ୍ଗିମା ନୟନ ଭଙ୍ଗିମା,
ଘୁଡ଼ିବ ଜୀବ ନାହିଁ ଯେବେ ବା ତୁମ୍ଭେ ତା ସମୀପକୁ ଗମା ।
ଛଳ ନୁହଇ, କହୁଅଛି ଯେତେ ବଚନ
ଛଟକାକ୍ଷୀ ହେ: ପିବାକୁ ଡେଉଥିବ ଲୋଚନ କମଳ ଲୋଚନ । ୭ ।

ଯୁବତୀମଣି ମଣିଲ ଯେବେ ମୁହିଁ ନାହିଁ ତୋ ସମାନ ସୁନ୍ଦରୀ,
ଯାହା ଜଗତ ନାୟିକାଙ୍କୁ ନାୟିକ ପଣେ ମୋହିଛନ୍ତି ଏତେ କରି ।
ଯେଣୁ କରି ଗୋ, ତୋ ବିନୁ ନାହିଁ ତାର ଗତି
ଯାଇ ତା'ର ବେଗେ ହତ କର ଦନ୍ତୀ ଗତି ରତିପତିର ଖ୍ୟାତି । ୮ ।

ଝୁରି ଝୁରି ତନୁ କ୍ଷୀଣ କଲାଣି ସେ ଅନେଶ ଗୁଣ ଗୁଣି ତୋର,
ଝରୁଛି ନୟନୁ ନୀର ଝରଝର ଯେସନେ ନଦରୁ ଝରେ ଝର ।
ଝମ ଝମ ଗୋ, ହେଉଅଛି ତାର ଶରୀର
ଝଳ ବରଷା ବରଷା ଇନ୍ଦୀବର ନୟନୁ ଯେଣୁ ହେଲେ ଦୂର । ୯ ।

ନବଜଳଧର ଯେସନ ବିଜୁଳି ବିହୀନେ ଦିଶେ ଅସୁନ୍ଦର,
ନୋହେ ଶୋଭା ବଲ୍ଲୀ ବିହୀନରେ ଯେସନେ ତମାଳ ତରୁବର ।
ନୀଳକେଶୀ ଗୋ, ତୋ ବିନୁ ତା ଶୋଭା ଏସନ,
ନାଗରୀ ନାଗର ରସ ସାଗରକୁ ତୋ ମୁଖ ସାଗର ନନ୍ଦନ । ୧୦ ।

ଟଳିବନି ତାର ଜୀବନ ଜୀବନ ଜୀବନ ଜଳଦେ ଯେମନ୍ତ,
ଟାଣ ପ୍ରସୂନ ସଗର ସନ୍ତତି ସନ୍ଧିଥିବ ତାକୁ ସନ୍ତତି ।
ଟହ ଟହ ଗୋ, ବିମ୍ବ ବିଡ଼ମ୍ବିତା ଅଧର
ଟାଣ ତମ ତମ ପ୍ରାଣେ ହେଲା ଆସି ଆସି ତୁ ଉହ୍ଲାଳକୁ ଦୂର । ୧୧ ।

ଠଣ କାମରଙ୍କ ତା ମନ ପ୍ରଚଣ୍ଡ କୋଦଣ୍ଡ ମଣ୍ଡନ ହୋଇଛି,
ଠାଠିକ ଅଖଣ୍ଡ ପ୍ରଚଣ୍ଡ କୋଦଣ୍ଡ ମଣ୍ଡଳେ ମଣ୍ଡନ ହୋଇଛି ।
ଠଣ ବିଶିଖ ମୟୂଖେ ତନୁ ସରୁ ତାର
ଠିକ ଲାବଣ୍ୟ ନୀର ନାଶ କରନ୍ତେ ଜୀବମାନେ ହେଲେ ପିବାର । ୧୨ ।

# ଚଉତିଶା ସଞ୍ଚୟନ

## (ରାଗ ଚୋଖୀ)

ଡ଼ାଳମ୍ବ ପ୍ରସୂନ ସମ        ଶୋଣତାର କରମୋଞ୍ଚ
ଉପୃକ୍ତ ଅତ୍ୟନ୍ତ ସ୍ପୃଷ୍ଟ ଭାବ ଭଜନ୍ତି,
ଡାଳମ୍ବଦନ୍ତୀ ଶୁଣରେ        ଘୋର ନୀରସ ଗୁଣରେ
ବାହୁ କାଳ ତାହାର ସଂଯୋଗ ହୋଇଛି
ଢୋଲା ଭୃଙ୍ଗ ଯୁତ ନେତ୍ରାବ୍ଜ
ଡମ୍ବରୁମଧ୍ୟା ହୋଇଛି ସପ୍ତୀ ନ ତେଜ । ୧୩ ।

ତାଳେ ସେ ସରିତ ଦ୍ୱିଜ-        ମାନଙ୍କର ପକ୍ଷପାତ
ଦ୍ୱିଜ ପଦ ଚିହ୍ନରେ ଅଙ୍କିତ ହୋଇଛି,
ତାଳେ ସ୍ୱେଦ ବିନ୍ଦୁ ବୃନ୍ଦ        ବ୍ୟାଜରେ ନଷ୍ଟ ବୁଦ୍ ବୁଦ
ନୀରସ ଭାବରୁ ସେହୁ ଜାତ ହୋଇଛି
ହଳ ହଳ ଶମ୍ବର ଶର
ତାଳେଣ ଏମନ୍ତ କଲ୍ପ କୋଦଣ୍ଡ କର । ୧୪ ।

ଏଣୁ କରିରେ ଅବଳା        ତୁମେ ସନ୍ଧ୍ୟା ମେଘମାଳା
ସମାନ ହୋଇ ପ୍ରବେଶ ହୁଅ ସେଠାରେ
ଅମଳ ତଡ଼ିତ କାନ୍ତି        ସୁର ଗୃପ ଭୂରୁ ତଥି
ହାରି ବକାଳୀର ଭ୍ରାନ୍ତ ତେସନ ହୋଇ
ଏମନ୍ତ ହେଲେରେ ତରୁଣୀ
ଆଉ ସନ୍ତାପିବ ନାହିଁ କାମ ତରଣୀ । ୧୫ ।

ତାର ତର ହାର ବର        ସମାନ ଅଗାର ବର
ହରପର କାରାଗାର କରି ମଣଇଁ
ତୁଷାର କରଇ କର        ନକର ବିରହ ଭର
ବରୁଁ ଚଣ୍ଡକର କର କରି ମଣଇଁ
ତାଙ୍କୁ ସ୍ମରଣର ମାଇଙ୍କ
ତେଣୁ ସେ ନାଗର ବର ଶୋକ କରଇ । ୧୬ ।

ଥରେ କହୁ କହୁ ଦୂତୀ        ଆଣି ଜ୍ୟୋତି ପତି ଅନ୍ତ
ବାରୁଣୀର ତରୁ ଶୋଣ ଜ୍ୟୋତି ହୋଇଲା

ସ୍ଥୂଳ ବସ୍ତୁକୁ ତେଜିଲା      ନଭ ମଣ୍ଡଳ ଗୁଡ଼ିଲା
ହେତୁରେ ଅଚଳ ପଶିଲା
ଥିର ଗୁଣ ତହିଁ ନୋହିଲା
ଅପ୍ୟେ ନୋହିଣ ସେ ସିନ୍ଧୁ ମଧ୍ୟେ ପଡ଼ିଲା । ୧୭ ।

ଦିନମଣି ଅସ୍ତ ମଣି      ପଦ୍ମିନୀ କଞ୍ଜଲୋଚନୀ
କାନ୍ତ ଆଗତ ପଥକୁ ଧ୍ୟାନେ ରହିଲା
ଦ୍ୱିଜ ଦମ୍ପତି ନିକର      ନ ପାଇ ବସୁନକର
ଲଭି ଚଣ୍ଡ ଅନୁସାର ପାର ନୋହିଲା
ଦେଖୁ ଦେଖୁ ସନ୍ଧ୍ୟା ପ୍ରବେଶ
ଦଶିଲା ଶୋଣିତ ଘନ ନବ ଆକାଶ । ୧୮ ।

ଧୀରେ ମଣଇ ସେ ମନ      ମୀନ କେତନ ରାଜନ
ତ୍ରୈଲୋକ୍ୟ ଜିଣିବ ବୋଲି ହେଲା ବାହାର
ଧରିଛନ୍ତି ଦିଗ ନାରୀ      ଗୃହ ଦିଗକୁ ବିସ୍ତାରି
କି ଶୋଣିତ ତର ନବ ବିତାନ ବର
ଧୀରେ ସନ୍ଧ୍ୟା ଗଲାକ ନାଶ
ଧ୍ୱାନ୍ତ ବଂଶ ପ୍ରବେଶ ହୋଇଲେ କ୍ରମଶ । ୧୯ ।

ନିଶ୍ଚେ ମଣିଲ ଏମନ୍ତ      କାନ୍ତ କେଳିତର କାନ୍ତ
ମର୍ତ୍ତ୍ୟ ଲୋକ ଜିଣିବାକୁ ଉତ୍ସୁକ ହେଲେ
ନିବିଡ଼ ମମତାରାଶି ମାୟୂଙ୍କୁ ଶୀଘ୍ରେ ପ୍ରକାଶି
କାମିନୀ କରକୁ ବେଗେ ସ୍ୱବେଶ କଲେ
ନିଶାକର ଏଥୁ ଅନ୍ତରେ
ନିର୍ମଳ ଗୁଣ ପ୍ରକାଶ କଲା ନଭରେ । ୨୦ ।

ପୟୋଧି ପଟ୍ଟରେ ବସେ      ସୁର ନଦୀ ଧାରା ମିଶେ
ନୈଶ ନାରୀ କେଶେ କିବା ମଲ୍ଲିକାମାଳ
ପୂର୍ଣ୍ଣ ହିଁ ମକର କର      ପ୍ରକରେ ତମନିକର
ନାଶି ଆସି ହେଲା ପ୍ରାଚୀ ଅଚଳ ଚୂଳ
ପ୍ରବେଶ ଆକାଶେ କ୍ରମଶଃ
ପେଶଲ କାଳିନ୍ଦୀ ଜଳେ କି କଳହଂସ ? । ୨୧ ।

ଫାଳ ଚନ୍ଦ୍ରୋଦୟ ଦେଖି ଦୂତିକା ବୋଲଇ ସଖୀ
ମୃଗାଙ୍କ ମଣ୍ଡଳ ଦେଶ ଚୁମ୍ବିତ ଚରର
ସ୍ଫୁଟରଜତ ପାତ୍ରରେ ସ୍ମର ଅର୍ଥରେ କି ପ୍ରାର୍ଚି
ନାଶି ଥୋଇଛି କସ୍ତୁରୀ ଅଙ୍କ ବ୍ୟାଜରେ
ଫଳ କି ସେ ଅବା ସାର
ସ୍ଫୁଟ ହୋଇଛି ଅଙ୍ଗେ ଅଶୀତ ଭ୍ରମର ।
ବିଧୁବଦନି ଶୁଣରେ ଏହା ମଣିଛି ମନରେ
ତୋ ମୁଖ ବିଧି ବିଧାନ କରିବ ବୋଲି
ବିଧୁ ମଧୁ ଦେଶ ସାର ଘୁଷ ନେଇଣ ସତ୍ୱର
ହୋଇ ଚୋର ଲପନକୁ କଲରେ ବାଳୀ
ବଳ ଦେଖ ପ୍ରତ୍ୟକ୍ଷେ ଅଛି
ବିସ୍ତୃ ପଦଚି କଳଙ୍କ ବ୍ୟାଜେ ଦିଶୁଛି । ୨୩ ।

ଭାସ୍ୱର ଶଶୀ ଭାସ୍କର ମାର୍ଗ ଦିଗନ୍ତର ପୁର
ଧବଳିତ କରିବାର ଦେଖିଣ ଦୂତୀ
ଭାଷଇ ମଧୁର ବାଣୀ ଶୁଣରେ ମଧୁ ରମଣୀ
ଶୁକ୍ଳା ଅଭିସାର କରି ଯିବା ତୁରିତ
ଭଲେ ଶୁଣି ଦୂତୀ ବଚନ
ଧୀରୁମଣି ଆରମ୍ଭିଲେ ବେଶ ରଚନ । ୨୪ ।

(ରାଗ-କଲ୍ୟାଣଆହାରୀ)

ମଲ୍ଲୀ ମାଳିକା ଜାଳିକା କେଶ ପାଶେ ବାଳିକା ନେଇ ନିବେଶିଲା
ମଞ୍ଜୁ ପୀତବାସ ପିନ୍ଧି ପୀତବାସ ଚନ୍ଦନ ଅଙ୍ଗରେ ଲେପିଲା ।
ମୀନନୟନା, ଏ ଆଜ ବେଶକୁ ସାରିଲା
ମନ୍ଦ ମନ୍ଦ ହୋଇ ଦୂତୀ କର ଧରି ଯାଇ ବୃନ୍ଦାବନେ ମିଳିଲା । ୨୫ ।

ଯହିଁ ସର୍ବଦା ସର୍ବ ଋତୁ ଅଛନ୍ତି ଦେଖିଲା ତା ସର୍ବ ମୋହିନୀ,
ଯୁବା ବସନ୍ତ କାନ୍ତ କାନ୍ତ ଆଗତେ ଚୂତଲତା ସାତ୍ତ୍ୱିକ ହେନି ।
ଯହିଁ ପୁଲକ, କୁଳ ବକୁଳାବଳୀ ତାର
ଜଗତ ପ୍ରାଣ ପ୍ରକମ୍ପନ ବ୍ୟାଜେ କି କାମେ କମ୍ପିତ କଳେବର ? । ୨୬ ।

ରମ୍ୟ ବିକଚ ନବ ନୀପ ବଦନ ନୃପରଥ ପ୍ରାପ୍ୟେ ହୋଇଛି,
ରୋଳ ରୋଲମ୍ବ ରମ୍ୟମାଳ ଶ୍ୟାମଳ ଚିକୁଳ ମଞ୍ଜୁର ପାଇଛି ।
ରମ୍ୟ ତାହାର, ଘୋଷରେ ଘୋଷିତ ହୋଇଛି
ରମଣୀପ୍ସୁ ପରାଗ ପୁଷ୍ପରଥରେ ଧୃତ ଧୂଳି ଧାରା ଭଜିଛି । ୨୭ ।

ଲକ୍ଷିଣ କଚଣ ମାଧବ ଧବକୁ ମାଳତୀ ଅନୁରାଗଭରେ
ଲଳିତ ସ୍ତବକ ସ୍ତନ ଦେଖାଇଛି ରାଗ ପଲ୍ଲବ ଅଧରରେ
ଲମ୍ବ ଭ୍ରମରାଳି କୁନ୍ତଳକୁ ଫେଡିଛି
ଲବଙ୍ଗ ପୁନାଗଙ୍କ ସଯୋଗ୍ୟ କଳିକା ମାଳିକା ବ୍ୟାଜେ ପୁଲକିଛି । ୨୮ ।

ବାସନ୍ତୀ ଯୁବତୀ ଅଶୋକ ପତ୍ରକ ଶାଖା ଭୁଜେ ଭଡ଼ି ଶୋଭିତ
ବିକଚ କମଳ ପରାଗରେ ସଙ୍ଗୀ କରି ଦେଖିଲି ବାତ କାନ୍ତ
ବଳେ ଯାଇଣ, ମିଶନ୍ତେ ଶରୀରେ ତାହାର
ବାରେ କି କମ୍ପିତ କିଶଳୟ କରେ ହୋଧେ ନଆଳି ନାରିବର ? । ୨୯ ।

ସୁନ୍ଦର କେତକୀ ପାଶରେ ମିଳିନ୍ଦ ବୃନ୍ଦ ଦେଖି ଏହା ମଣଇ
ସମସ୍ତ ମଧୁପ ନାଦ ଶୁଣିବାରୁ ବଧୂ ସଞ୍ଜାତ କ୍ଷୋଭ ହୋଇ
ସେ ସେ ସୁବର୍ଣ୍ଣ, କରନ୍ତ ହୋଇବେ କରନ୍ତି
ସାରିବ ଜୀବନ ପ୍ରଷ୍ଟବନେ ଏଣୁ ଆତ୍ମହତ୍ୟାରେ ନାହିଁ ଭ୍ରାନ୍ତି । ୩୦ ।

ସାରିକା ଶୁକ କୋକିଳ କଳକଳ ଶୁଣି ମନେ ଏହା ବିଚାର
ଶୁଭ ଧାରଣୀ ଭାଷନ୍ତି ଦ୍ୱିଜ ଭେଟ ହେବାକୁ କିଶୋର କିଶୋରୀ
ସୁର ସୁତାର ଅସିତ ଶୀତଳ ସଲିଳ
ଶୋଭିତ ସାନ୍ଦ୍ର ସାନ୍ଦ୍ର ସାରସ ଶ୍ରେଣୀ ନଭେ କି ସୁରଧୂନୀ ଧାର ? । ୩୧

ଶ୍ରୀକୃଷ୍ଣ କେଳି ସଲିଳ ବୋଲି ଅବଗାହ କଲେ ଦୃଷ୍ଟ ଭୂଗତ
ସନ୍ତୋଷ ବୋଲ୍ବି ଶରୀର ତାପ କରି ନିମଗ୍ନ କଲେ ଏଥି ଗାତ୍ର ।
ଶ୍ରେଣୀ ନୟନ, କୋକନଦ ବ୍ୟାଜେ ଦିଶୁଛି
ସଫଳ ହୋଇଲି ବୋଲି ମକରନ୍ଦ ଛଳେ ଆନନ୍ଦାଶ୍ରୁ ମୁଞ୍ଚୁଛି । ୩୨ ।

ହରି ମହିମାରୁ ଏବନ ନପାରୁ କେତେତହିଁ ଅବା ମୁଁ ବର୍ଣ୍ଣିଛି,
ହୋଇ ସେ ବନେ ଦୁଷ୍ଟକ କୃଷ୍ଣ ପାଶେ ପେଶିଲେକ ରାଧା ମୃଗାକ୍ଷୀ
ହରିଙ୍କି, ଆସି ରାଧାଙ୍କୁ ବେଗେ ନେଲା
ହରି ହରିଣାକ୍ଷୀ ଚତୁରାକ୍ଷ ଭେଟି ପ୍ରେମନଦୀ ତଟ ଲଙ୍ଘିଲା । ୩୩ ।

କ୍ଷମେ ରତି ସାରି ରତାନ୍ତ ସୁବେଶ କରି କୃଷ୍ଣ ଶୋଭା ଦଶନ୍ତ,
କ୍ଷୌଣୀ ଜଣି ଶ୍ରମ ନାଶିବାକୁ ରଥୁ ଓହ୍ଲାଇଛି କି ରତିପତି ?
କ୍ଷଣେ ମନରୁ, ଯେ ପ୍ରଭୁ ପ୍ରେମମୟ ରସ
କ୍ଷୟ ନୋହିବ ବୋଲି ତାଙ୍କ ଚରଣେ ରସେ ଶ୍ୟାମଘନ ମାନସ । ୩୪ ।

—○—

# ଚାଟୁ ତରଙ୍ଗ ଚଉତିଶା

କର ଧରି ରାଧା    କୃଷ୍ଣଙ୍କୁ କହନ୍ତି
ନକର ମାନ ମାନିନୀ
କମଳଲୋଚନୀ    କମଳେ ପୂଜୁଛି
ଜନେକ ସୁତା ଜନନୀ,
କହ କହ ମିଛଣି !
କି କେ ବସିଛି ହେଟବଦନୀ
କର କର କରେ କୃପା-ମଣି । ୧ ।

ଖର ନିଶ୍ୱାସ    ଖରତରେ ବହଇ
ବିମ୍ବାଧର ସୁରଙ୍ଗିଣୀ
ଖଞ୍ଜନ ନୟନୁ    ଅଞ୍ଜନ ଖସଇ
କାଳିକଲା ଗୁଣ ଯେନି,
ଖିନ ବିଧୂରି କହ
ଖୀନ ନକର କନକ ଦେହ
ଖରେ ଖଞ୍ଜି କଣ୍ଠମାଳ ନିଅ । ୨ ।

ଗଜପତି ଗତି    ଦେଖାଏ ବିମତି
ବନରେ ଗୋ ବାସ କଲି
ଗଞ୍ଜିଣି ମରାଳ    ହୋଇ ଅନ୍ତରାଳ
ବନରେ ଡେଇଁ ପଡ଼ିଲି
ଗୁଣ ଗଉରୀ ଶୁଣ
ଗତ କଥା ପସନ୍ଦେ ନ ଯେନ
ଗାତେ ବିନ୍ଧୁଛି ମଦନ ବାଣ । ୩ ।

ଘନପୀନ ଉଚ୍ଚ    କୁଚ ଗିରି ଶିଖେ
ମଦନ କରୁଛି କେଳି
ଘନ ପତ୍ରାବଳୀ    କୁଞ୍ଜଲତା ଦେଖା
ଆକାଶୁ ଏ ଘନ ମିଳି,
ଘନଜଘନୀ ଆରେ
ଯେନ ବିନତି କରୁଛି ତୋରେ
ଘୋର ଦୁଃଖ ଭୁ ନ ଦିଅ ମୋରେ । ୪ ।

ନାହିଁ ମୋର ଦୋଷ    ମୋ ପରେ କି ରୋଷ
ମୁଁ ସିନା କିଣା ତୋ ଦାସ
ନୟନ ପ୍ରାନ୍ତେ    କୁନ୍ତ ମୂନ ପ୍ରହାରୁ
ବେଗେ ବାନ୍ଧ ବାହୁ ଫାଶ
ମୀନ ପଦ୍ମ ନୟନ !
ବାହୁ ନୟନରେ ଭ୍ରୂ ମାର ଘେନ
ନବଘନ କେଶ ଶୋଭା ଜିଣି । ୫ ।

ଚଭୁଷ ତୋ ମୁଖ    ଚନ୍ଦ୍ରମା ନିର୍ଜ୍ଜିତ
ଲଜେ କଳଙ୍କ ଲଭିଲା
ଚକୋର ତୋ ନେତ୍ର    ସୁମରୁ ପୀରତି
ଚକ୍ର ବାକ ଦୁଃଖ ଦେଲା,
ଚିନ୍ତା ନ କର ସଖୀ
ଚିର ଅଭିମାନେ ହେଲୁ ଦୁଃଖୀ
ଚନ୍ଦ୍ରା ବଦନ ଟେକ ସୁମୁଖୀ । ୬ ।

ଛୁଡ଼ଣ ବିଧାତା    ସୃଷ୍ଟି ଭାର ଚିନ୍ତା
ତୋତେ ଗୋ ନିର୍ମାଣ କରି
ଛାଇକି ତୋ ସରି    ମେନକାଦି ନାରୀ
ନୋହି ହେଲେ ନୃତ୍ୟକାରୀ
ଛାଡ଼ ଚତୁରୀ ମାନ,
ଛାଡ଼ି କହ ଅମୂଲ୍ୟ ବଚନ
ଛିନ୍ନ ନକର ଦାସ ଜୀବନ । ୭ ।

ଜଳଜ ମୀନ ଏଣୀ    ତୋର ନୟନ
ଲଜ୍ଜିତେ ବ୍ରତନେ ପଶିଲେ
ଜଳଜ ସୁତ    ନିଲଜ୍ଜ ଖଞ୍ଜନକୁ
ରେଖା ହସ୍ତ ପୃଷ୍ଠେ ଦେଲେ
ଜଳନିଧି ତନୟା
ଜାଣି ବିଷ୍ଣୁଙ୍କର ହେଲା ପ୍ରିୟା
ଜୀବ ଜୀବନୀ କରନ୍ତୁ ଦୟା । ୮ ।

# ଚଉତିଶା ସଞ୍ଚୟନ

ଝାସ ତୋ ଅପାଙ୍ଗ     ହାସ ପାଇ ସଖୀ
ମଦନ ଶରେ ନ ଗଲା
ଝସ କେତନେ କାମ     ମନେ ମଦନ
ବିରହେ ଦେହ ଦହିଲା
ଝରେ ନୟନୁ ନୀର
ଝଡି ପଡୁଛି କୁଚ ଉପର
ଝଡି ରହୁଛି ନାଭି କାସାର । ୯ ।

ନାନା ସୁମନାରେ     ସୁମନାର ସୁତ
ତୋତେ ଗୋ ନିର୍ମାଣ କଲା
ନ ଜାଣି ଦାରୁଣ     ବିଧାତା ତୋ ହୃଦ
ଉପାଣେ ପାଷାଣ ଦେଲା
ନିନ୍ଦା କରଣ ବାରେ
କାହିଁ ତୋ ଅଭିମାନ ମୋଠାରେ
ନାଗରବର ଦୟା କର ମୋରେ । ୧୦ ।

ଟାଣି ଗୁଣ ସାର     ମାରୁଅଛି ବାଣ
ଶୁଣରେ ବୀଣାବଚନା
ଟାଣେ ତୋ ନୟନ     ପ୍ରାନ୍ତ କୁନ୍ତମାର
ରଖ ବାରେ ମୁଁ ତୋ କଣା
ଟାଣି ମଦନ ଶର
ଟିକି ଟିକି କରୁଛି ଶରୀର
ଟେକ ରଖ ତୋ କୁଚ ମଧ୍ୟର । ୧୧ ।

ଠିକ ସୁନ୍ଦରୀ     ଠିକ ଶ୍ରେଣୀ ମଣ୍ଡଳ
ମୁଖ ଦେଖି ଚନ୍ଦ୍ରଯୋନି
ଠକାଉ କରି     ନିନ୍ଦାକଲା ସଜନୀ
ରବିରଥ ନିଶାମଣି
ଠିକ କହିବି କେତେ
ଠାବେ ଠାବେ ତୋ ସୁନ୍ଦର ଯେତେ
ଠୁଳେ ଛାଡ଼ି ନ ପାରଇ ତୋତେ । ୧୨ ।

ଡର ଡମ୍ବର ଶୁକ    ଦନ୍ତେ ଶରଣ
ଡା ପାଇଁ ନେମ ଧାଉ ମାନ
ଡମ୍ବରୁଧର ମଦନ-    ମେନ ଦାମ ନେସ
ଡୋର ମଧ୍ୟେ ପ୍ରସର
ଡର ଗୁଞ୍ଜ ଅନଙ୍ଗ
ଡ଼ାକ କହୁଛି ବରହ୍ମ ଅଙ୍ଗ
ଡରେ ଶିବ ସେବେ ଉମା ଅଙ୍ଗ । ୧୩ ।

ଡୋକଲି ମୁଁ ଡ଼ାକିଲ    ମଦନ ଗରଳେ
ଡଳି ପଡ଼ୁଛି ଅବଶ
ଡ଼ାଳଲେଡୋ ନୟନ    ସୁଧାରସ ଦେଇ
ରଖ ବାରେ ରାମାମଣି
ଡେମ ନ କର ଆଜ
ଡଳି ଗୁହାଁ ସେ ଶୀବନ ରହୁ
ଡଳେ ନଦ୍ଧ'ପୁ ନ କର ଆଜ୍ଞ । ୧୪ ।

ନାଗ କୁମ୍ଭ ଦମ୍ଭ    ହର ପୟୋଧର
ସମ ହେବ ବୋଲି ଡୋର
ନଳିନ ପ୍ରିୟା    ସେବା କର ବନ୍ଧିରେ
ଝାସ ଦେଲ ଘଠବର
ନାଭି ଭଡ଼ି ଉଦର
କରେ ନ ବୋଲନ୍ତି ପୟୋଧର
ନଚେତ୍ ସଙ୍ଗତି ନାଗଙ୍କ ଖର । ୧୫ ।

—O—

ଅସମ୍ପୂର୍ଣ୍ଣ

# ମାଲ୍ୟବନ୍ତ ଚଉତିଶା

## ରାଗ-କୌଶିକ

କୁଧର ଉତ୍ତମ ମାଲ୍ୟବନ୍ତ ନାମ ଗିରିରେ ଥାଇ ରଘୁବର
କାଳରୂପ ଆସି ନବ ଘନ ଚାହିଁ ମନରେ କରନ୍ତି ବିଚାର
କହୁ କହୁ ଏକା ଜଳଦ କାଳ ପ୍ରବେଶ
କଲାଏ ଆସି ଦୁଷ୍ଟଗଣ ଆରମ୍ଭ ଆହୁଁ ଘୋଡ଼ାଉଛନ୍ତି ଆକାଶ । ୧ ।

ଖାଇ ଦେଉଛନ୍ତି······ପ୍ରସନ୍ନେ କଙ୍କୁଳମାନ ବୋଲୁଅଛି
ଖମଣ୍ଡଳେ ଖଣ୍ଡ ଖଣ୍ଡ ହୁଣ୍ଡ ହୋଇ ଜଗତଯାକ ଆଚ୍ଛାଦୁଛି
ଖେଦ କରାଉଅଛି କଳକଣ୍ଠ କଣ୍ଠକୁ
ଖରେ କ୍ଷଣେ କ୍ଷଣେ ପ୍ରବଳ କରାଉ ଅଛି କ୍ଷୁଦ୍ର ନୀଳକଣ୍ଠକୁ । ୨ ।

ଗିରିଶିଖେ ଆସି ଆଶ୍ରମ କରଏ କଲାଣି ବିପୁଳ ଗର୍ଜନ
ଗଳାରେ ମାଳାକରି ଘନ ବଳ୍ଲୀମାନଙ୍କୁ ହୋଇଲା ମଣ୍ଡନ
ଗର୍ଜି କଲା ଏ ହଳପ୍ରିୟ ତରୁନବହ
ଗୁରୁରବ ମନ୍ତ୍ରେ ହଠେ ପ୍ରସଭ ସେ କରାଇଲା କେତେ ସନ୍ଦେହ । ୩ ।

ଘୋର ଗରଜନ ଘନଘନ ରିପୁ ପୁଣ ପୁଣ କଲା ପ୍ରକାଶ
ଘୋଟିଲା ନିମେଷ ପଡ଼ିବା ମାତ୍ରକେ ଲେଶ ନ ଦିଶିଲା ଆକାଶ
ଘନ ବାହନ ଘଟଣ ଧନୁରେ ମଣ୍ଡିତ
ଘଟଣ ଦିବସ ପରକାଶ ନାଶ ଘନପୁଷ୍ପ ବୃଷ୍ଟି ପଣ୍ଡିତ । ୪ ।

ଙର୍ମଳ ଅଙ୍କେ ନୀଳକଣ୍ଠ ନାଚିଲେ ସୁସ୍ୱର ରବ ଗୀତ ଗାଇ
ଙରାଶ ହୋଇ କାଦମ୍ବ ପଳାଇଲେ କଦମ୍ବ ପବନ ନସନ୍ତ୍ର
ନୃତ୍ୟ ଆରମ୍ଭ କଲେ ମଣ୍ଡୂକ କଣ୍ଠମାନେ
ନୂତନ ମାଳତୀ କଦମ୍ବ କେତକ ବାସ ଆଘ୍ରାଣିଲେ ପବନେ । ୫ ।

ଚନ୍ଦ୍ର ସୂର୍ଯ୍ୟ ଏକ ଆସନ ହୋଇଲେ ହେଉଥିଲା ସୂର୍ଯ୍ୟ ଗ୍ରହଣ
ଚମତ୍କାର ଦେଖ ଭଣେଅଛନ୍ତି ଦିବାକର ନିଶା ରମଣ
ଚାରିଆଡ଼ରେ ଏ ଘୋର ଘନଘଟା ରାହୁ
ଚନ୍ଦ୍ର ସୂର୍ଯ୍ୟଙ୍କୁ ନିଶିଦିବା ଯାକରେ ସଂଗ୍ରାସ କଲା ଚାହୁଁ ଚାହୁଁ । ୬ ।

କ୍ଷଣକ ଭିତରେ ସମସ୍ତ ଦିଗକୁ କଲା ନିବିଡ଼ ଅନ୍ଧକାର
ଛଡ଼ାଇ ପ୍ରସନ୍ନ ବେଗେ ଘେନିଯାଇ ଅନ୍ଧକାର କଲ୍ଲ ବାସର
କ୍ଷିତି ମଣ୍ଡଳ ହୋଇଲ୍ଲ ଗଗନ ସମାନ
କ୍ଷାଳିତ ମରନ୍ଦ କୁଟଜ କଦଳୀ ପୃଷ୍ଟ ହୋଇଲେ ତାଗ୍ରମାନ । ୭ ।

ଜଳନ୍ତା କୃଷ୍ଣ ବର୍ଷା ପ୍ରାପ୍ତେ ହୋଇଲେ କଳାଜଳଧର ତଡ଼ିତ
ଯେଣିକ ଗୃହିଁବ ତେଣେ ଦିଶୁଅଛି ଯଥା ଅବନ୍ତ ବଳବନ୍ତ
ଜଳପ୍ରବଳ ଦାନେ ବଳ ସଙ୍ଗେ ଅଭେଦ
ଯେଣୁ ଶିଳୀନ୍ଧ୍ର ଛତା ଯେସନ ମଣ୍ଡୂକ କାମକ ପଡ଼େ ଧ୍ୱନିବେଦ । ୮ ।

ଝାଳ ପବନରେ ଝଳଝଳ ଝଡ଼ ମହାବୃଷ୍ଟି ବେଗ ପ୍ରବେଶ
ରମଝମ ହୋଇ ନୀର ପଢେ ପଡ଼ ଶବଦ ପୂରିଲ୍ଲ ଆକାଶ
ଝଞ୍ଜା ଅନଳ ବହୁ ବହୁ ହେଲେ ଶୀତଳ
ଝଡ଼ ପଡ଼ିଲେ କୁସୁମ ମହୀତଳେ ମହାତରୁ ଡାଳ ଚଞ୍ଚଳ । ୯ ।

ନୂତନ ହୋଇ ଏ ଗିରି ପାଷାଣରେ ବହିଲେ ଜଳଧାରମାନେ
ନଛୁଡିଲେ ବୃଷ୍ଟି ନୀରଗିରିଶିର ସୁନ୍ଦର ଦିଶିଲେ ଦୁର୍ଦ୍ଦିନେ
ନାହିଁ ମୋହର ନିକଟେ ଜନକ ନନ୍ଦିନୀ
ନୀରଧର ଗୃହିଁ ଟେରଧା ବଳାଇ କେ ଶୁଣିବ ଏ ଘୋର ଧ୍ୱନି । ୧୦ ।

ଟାଣ ନିଶା ସମୟରେ ଅଜାଗରେ ଶୁଣି ଏ ଘୋର ରଡ଼ି
ଟେକ ଆଲିଙ୍ଗନ ବ୍ୟାଜରେ କରଇ ଚିରକାଳ ଯାଏ ନଛୁଡ଼ି
ଠିକାଏ ପାଶୁ ଆଡ଼ ହୋଇ ନଯାଇ
ଟେକ ଘୋର ଜଳଧିକୁ ଅନାଇ କି କରୁଥିବ କାହିଁ ଥାଇ । ୧୧ ।

ଠିକ ଜଳ ... ... ... ... ... ... ... ... ...
ଠାଠିକ ଗମନ ପଥଯାକ ଚୂନ୍ଧି ପହଣ୍ଡ ମାହ ନଛୁଣ୍ଡିଲା
ଠିକେ ଛୁଡ଼ିଲା ଏକା ଜାନକୀ ଯିବା ବାଟ,
ଠିକ କାର୍ଯ୍ୟ କରି ଟେଜି ହେଉଅଛି ଏ ଘନ ଘଟା ଘଟେ ଘଟେ । ୧୨ ।

ଡକା ହୋଇ ନାହିଁ ଜାନକୀ ହଜିବ ନୋହିଲ୍ଲ ଶତ୍ରୁ ସଙ୍ଗେ ଭେଟ,
ଡ଼ାଳମ୍ବି ବୀଜ ଦଶମୀକ ଦେଖିବା ଶତ୍ରୁକୁ ଦେଇ ଯମବାଟ,
ଡମ୍ବରୁ ଧରି ହେ ଏମନ୍ତ କରିବେ
ଢେଳାଇ ଧନୁ ଜନକ ନନ୍ଦିନୀକି ଆଣିବା ମାନ ଘେନିବେ । ୧୩ ।

ତ଼ମ ହୋଡ଼ିଛ ଦେଖିଣ ସନ୍ଧ୍ୟାକାଳୁ ତଡ଼ିତ ଏ ଜଳଦ ପ୍ରବଳ।
ଛାଡ଼ିବି ନଧଁ କଲେ ନିଜ ଲଙ୍ଘିବା ନୋହିଲା ମହାବେଗ ଗତି ଚଞ୍ଚଳ।
ଏଣୁ ଜଳଦର ଦେହାକ ଅଛନ୍ତି ନୋଧ ଅନ୍ଧ
ତେଜ ଉପରେ ତେଜମାନେ ପଡ଼ନ୍ତି କେଳ କରନ୍ତିକ ଜବନ୍ଧ ?। ୧୪ ।

ଏଣୀ ନୟନା ଏ ମାନ ଅନାଇ ଯେ ଅତି ଅପୂର୍ବ ମଣୁଥାଇ
ଅଣୁ ଏ ବରଷା ଉଦ୍ଧବାର ଜାଣି କୃଷ୍ଣୀ ଗର୍ଭରେ ନଉଦଇ
ଆଣୁ ଥାଇ ଯେ ହାଥ ବଡ଼ାଇ ପୁଷ୍ପମାନ
ଅନୁପ ଯୋଗ୍ୟଫଳ ମାନଙ୍କୁ ଧରି ଆନନ୍ଦ କରୁଥାଇ ମନ । ୧୫ ।

ତାମରସ କରୋଦରେ ଯେନି ତେଲେ ବନ୍ଧୁର ମାଦରେ ଯେନାଇ
ତହିଁ ସକାଶୁଁ କଛୁ କାର୍ଯ୍ୟ ନଥିଲେ ତେଜିବାକୁ ମନ ନୁହଇ
ତାର ବସ୍ତ୍ରେ ତାମ ଜନମ ଏ ହୋଇଲେ
ତେବେଣ ଆଉ······ଯେନଣ ଗୃହିଁବା ମାବରେ ଦଲ୍ଲେ । ୧୬ ।

ଥିବକ ଜୀବନ କାହାର ଭବନେ ଦୁଃଖ କ ସୁଖ ପାଉଥିଲେ,
ଥିଲେ ହେଁ ଦୁଃଖ ପାଇଲେ ମନେଥିବ ନଥିଲେ ମନେଥିଲେ ଭଲେ
ଆଉ ଆମ୍ଭର ଲୋଡ଼ା ପ୍ରାଣ ଯେନ ଥିବାର
ଥୋଇଣ ତେବେହେଁ ସିନା ଅମଳନ ଯଶ ପ୍ରାଣ ଯେନ ଶରୀର । ୧୭ ।

ଦଣ୍ଡେ ହେ ଯେ ପ୍ରାଣ ଗୁଡ଼ି ନପାରଇ ସେ ପାଶ ଗୁଡ଼ି ପ୍ରାଣେ ଥିବ,
ଦାରୁଣ ମୋହର ବୁଦ୍ଧି ବିନା ଆଉ କାହା ମନକୁ ଏ ଆସିବ,
ଦୁଃଖ ପାଇଲୁ ସୁଖୀ ରାଜ ଋଷି ନନ୍ଦନୀ
ଦେଖିବା ପାଇଁ ମୋ ବଦନ ଅବଶ୍ୟ ଥିବ ସୁକେଶୀ ପ୍ରାଣ ଯେନି । ୧୮ ।

ଧରଣୀ ତନୁଜା ଶୋକ ଲୋତକରେ ଝର ନଦୀମାନ ବହିଲୁ
ଧାରାସ୍ଥେ ଶୋକ ଝାଳ ଜାତହୋଇ ଏ ଶରୀର କର୍ଦ୍ଦମ ହୋଇଲୁ
ଧୀର ହୋଇଛୁ ଏହା ଦେଖି ପ୍ରାଣ ଆମ୍ଭର
ଧାଇଁ ଗୃଣ୍ଡେ ଯିବା ଜାନକୀ ଦେଖିବା କର ନାହିଁତ ଏ ବପୁର । ୧୯ ।

ନ ଦେଲେ ଯେ ଦେଖା ହବା ନଶାକର ହୋଇଲୁ ବଡ଼ ଉପକାର
ନଦେଖି ହୋଇଲୁ କୁଳଗୁରୁ ମୁଖ ମିଥ ଜାନକୀ ଆନନର
ନାଶ କରନ୍ତା ଅବା ଲଜ ସହ ଭାବନା
ନାଶ ନୁହଇ ବପତ୍ତିଗ୍ରସ୍ତ ଲୋକ ଲଭଇ ଅନେକ ବେଦନା । ୨୦ ।

ପ୍ଲବଗ ଗତିର ପ୍ରାଣ ଯେନାଲକ ପାଇବା ପାଇଁ ପ୍ରିୟତମା
ପାପୀ ପ୍ରାଣୀଙ୍କ ପ୍ରାପତ ହେବ ନାହିଁ ସେ ପୁଣ୍ୟରାଜ ରାଜଯେମା
ପାଟକେ ଏମନ୍ତ କରିଥିଲା କସ ଦଇବ
ପୃଥ୍ୱୀପତି ପଣ, ପ୍ରିୟାପାଶ ଛୁଡ଼ି ··ଛୁଡ଼ି ବନ ଯିବ । ୨୧

ଫାଟି ନ ଯାଉ ହୃତ ହୋଇ କମ୍ପାଇଁ ଏ ବ୍ୟଥା ହୃଦୟେ ରହିଛି
ଫୁଲ୍ଲାରବିନ୍ଦ ବଦନୀ ଦରଶନ ପୁଣି ପାଇବା ବିଚୁରୁଛି
ଫୁଟି ପଡ଼ିଲି ପୁଷ୍ପ ନୁହଇ ଡାଳଗତ
ଫୁଟ ଏ କଥା ଆୟୁଷ ଶେଷ ହେବ ପୁଣିକ ପ୍ରାପତ ଜୀବତ । ୨୨ ।

ବସନ ଦଗଧ ହୋଇଲା ଉତ୍ତରୁ ଆକାର ଯେଧନ୍ନପରି ଥାଇ
ବହୁତ ପ୍ରକାରେ ସଂଗ୍ରହ କଲେକ ବାସ ଉପଯୋଗ୍ୟ ହୁଅଇ
ବିଗୁରିବାରେ ଝୀନ ବସନ ତନୁଦେଶ
ବର ବର୍ଣ୍ଣିନୀ ଜନକ ଯା ବିଚ୍ଛେଦ ପ୍ରବଳ ଜ୍ୱଳନ୍ତା ହୁତାଶ । ୨୩ ।

ଭିନ୍ନ ପ୍ରାଣ ଦେହ ଭୂରିତର ଶସ୍ତ୍ରଘାତକୁ କି ଭୟ କରଇ
ଭାଦ୍ରବ ଉପଦ୍ରବ ଘୋର ବରଷା ସହିବା ନାହିଁ ନାହିଁ ପାଇ
ଭଳି ଯାଇଛି ପଞ୍ଚପ୍ରାଣ ଭୂମି ବନ୍ଦନା
ଭରି ଏ ଦେହ ସେହି ଯେନ ସହୁଛି ସମସ୍ତ ପ୍ରକାର ବେଦନା । ୨୪ ।

ମହା ଭୟଙ୍କର ଧରି କନ୍ଦରିଏ ବନସେ ବଶଇ ଅନ୍ଧାର
ମୂଳ ଫଳମାନ ଆଣି ଦିବାକୁ ଯେ ଲକ୍ଷ୍ମଣ ହୋଇଲେ ବାହାର
ମହା ବେଦନା ପାଉଥାଇ ଏକା ଯିବାକୁ
ମୃଗନେତ୍ରା ବିନୁ ସେ ଆଶ୍ୱାସ ଏକ ଏବେ କରିଅଛି ଏହାକୁ । ୨୫ ।

ଯାବତ ଫଳ ମୂଳ ଆଣିଯେ ଯତନେ ଆଗରେ ଥୁଅଇ
ଜାଣିବା ପାଇଁ ସମସ୍ତ ଫଳମୂଳ ନାମ ଧରିଯେ ପଚାରଇ
ଯତ୍ନ କରି ସେ ପୁଣି ପତ୍ରରେ କେ କରସ
ଯତନୁ ଲକ୍ଷ୍ମଣ କହିଲା ତାଣ୍ଡବ ଶୁଣି ଭଜିଲା ଈଷଦ୍ଧାସ । ୨୬ ।

ରହିଛି ଯେଉଁ କାରଣେ ଏ ଜୀବନ ସ୍ମରଣ କରି ସେ ଆନନ
ରମ୍ୟ କଟାକ୍ଷ ଭଙ୍ଗୀ ଯେ ଦେଖାଇଲା ହାହା ସେ ମଦିର ନୟନ
ହୃଷ୍ଟ ବିପତ୍ତି ପଡ଼ିବା ଲୋକେ ଯହିଁଛନ୍ତି
ରହି ଜୀବନେ ରମଣୀ ପରନେବା ଏହା କେହି ସହି ନାହାନ୍ତି । ୨୭ ।

ଲଳିତ ଲବଙ୍ଗ ଲତା ଲାଗେ ବସି ଲମ୍ପଟ ଭ୍ରମରକୁ ଚୁମ୍ବି
ଲାବଣ୍ୟ ପୁତଳ କୋମଳ ବଙ୍କିମ ହାସ ଭାବଗର୍ଭ ମିଶାଇ
ଲଜ ଲଗାଇ ଅକ୍ଷରେ ଅକ୍ଷରେ ସୁକେଶୀ
ଲିଭାଏ ମନରୁ ଛୁଡ଼ ଯାଉନାହିଁ ଅଳପେ ଯାହା ଅଛି ଭାଷି । ୨୮ ।

ବାଟେ ଜଟାୟୁଷ ବାରତା କହିଲ ରାବଣ ଜନକଜା ନେଲା
ବହନେ କେମନ୍ତେ ବାରତା ପାଇବା ଯେଣେ ଯେ ଗଲା କିବା କଲା
ବାର୍ତ୍ତା ପାଇଲେ ପାପ ତାପ ଶାନ୍ତ ହୋଇବ
ବନଚର ମିତ୍ର ହୋଇଛ ଅଛଇ ନାନା ଉପଚାର ସମ୍ଭବ । ୨୯ ।

ଶର ଶରାସନ କରଗତେ ଥିବ ଶତ୍ରୁଙ୍କ ନୟନେ ପଡ଼ିବ
ଶମନ ସଦନେ ଶରଧା ବଳିବ ଜୀବନ ଶରଧା ଛୁଟିବ
ଶୁଭେ ଜୀବନ ମାନେ ଥିବ କି ଜନକଜା
ସମସ୍ତ ଶତ୍ରୁବର୍ଗ ମାନଙ୍କ ମୁଖେ ଭୁଜ ପାଇବ ମହାପୂଜା । ୩୦ ।

ସତେହେଁ ବିଧାତା ଏମନ୍ତ କରିବ ଆୟତାକ୍ଷୀ ମୁଖ ଚୁମ୍ବିବା
ସରସ ସ୍ନେହ ସହୃଦୟ ଔଦାର୍ଯ୍ୟ ମିଶାଇ ସେ କଥା କହିବା
ଶଶୀ ଆନନା ସସ୍ନେହ କରିକି ଚୁମ୍ବିବ
ସୁନ୍ଦରୀ ରତ୍ନ ସେନେହମାନ ଗୁଣି କେତେ ଦିନ ପ୍ରାଣ ସହିବ । ୩୧ ।

ସୀମନ୍ତ ସିନ୍ଦୂର ଧାର ଚଟୋଇଲେ ଘନ ଇନ୍ଦ୍ରଧନୁ ନଚୁମ୍ବି
ସୁନ୍ଦରୀ ଅଙ୍ଗ ଝଟକ ଚଟୋଇଲେ ତଡ଼ିତ ଅନାଇ ନୁହଇ
ସୁମନା କଲି ଖର ଭ୍ରମ ଚୁମ୍ବି ନ ହୁଏ
ସୁନ୍ଦର କେନ୍ଦୁ ପଲ୍ଲବ ପାଦ କାନ୍ତି ଦରଶନରେ ଚଉ ରହେ । ୩୨ ।

ହୋଇବ ଏମନ୍ତ ହରଷ ହୋଇ ଏ ଜଳଦକୁ ପୁଣି ଚୁମ୍ବିବ
ହଂସଗମନାଙ୍କ ଦେହରେ ଲଗାଇ ଘୋର ଯେ ସ୍ତନିତ ସହିବ
ହଂସ ବିପଦ ଜଳଧାର ସୁଖ କରିବେ
ହରଷ ଊଆନ୍ଧକ ବଂଶ କେକୀ ଭେକ ସମସ୍ତ ବେଦନା ହରିବେ । ୩୩ ।

କ୍ଷୀଣୋଦରୀ ଗୁଣ ସୁମରି ସୁମରି ମହାକ୍ଷୀଣ କ୍ଷୌଣୀ ଜାମାତା
କ୍ଷଣଦା ବାସର ନିମିଷ ନିମିଷ ଶତ ଶତ ଯୁଗ ସମତା
କ୍ଷୀର ସାଗର ସୁତା ପତି ପାଦ କମଳ
କ୍ଷୀଣ ବୁଦ୍ଧି ବିଷ୍ଣୁ ଦାସକୁ ନିଶି ଦିବସରେ ହେଉ ଅନୁକୂଳ । ୩୪ ।

—※—

# ସଙ୍ଗିନୀ ଚଉତିଶା

କେଉଁ ରସିକ ରସ— ନଧି ବଚନ
ଚରିଣ ମନରେ ଭାଳରେ
କଟିଷ୍ଠ କି କରିବ ଢଗେ ଢଗେ ନଶୁ—
ଅଛୁ ତ ମୋ ଗଳାମାଳରେ—
ସଙ୍ଗିମା !
କେହି ପାସୋରିବ ତୋତେ ରେ
କାମଦେବ ଇନ୍ଦ୍ର— ଜାଲି କଭୁଷି କ
ନରତେ ଦେଖାଇ ମୋତେତେ । ୧ ।

ଖେଳାଇ ଡୋଳା ଭାଳେ ଖୋଷି ଗୁହ୍ନିଁବା
ବଚନ ସିବ କି ମନୁରେ
ଖଟଣି ଦାସ ପରାପ୍ତେ ମୁଁ ଯେ ତୋତେ
ଚୁମ୍ବନ–ଧନ–ବର୍ଣ୍ଣନୁରେ
ସଙ୍ଗିମା !
ଖୋଜିଲେ ଆଉ ନ ପାଇରେ
ଖୁର୍ ଖୁରିକେ * ବ୍ରହ୍ମା ଇନ୍ଦ୍ର ପଦ ସ୍ୱାଁ
ପାଦ ତଳେ ନ ଯୋଗାଇ ରେ । ୨ ।

ଗେଲାଇ ଗେଲାଇ ଗୋଜ କରି ଓଷ୍ଠ
ଚୁମ୍ବନ ଯାଚଲି ହୋଉ ରେ
ଗଣ୍ଡ ସ୍ଥଳ ପାଶୁ ଲେଉଟାଇ ଲାଜ
ମାଡୁଛି ଯେ ବୋଲୁଥାଉ ରେ
ସଙ୍ଗିମା !
ଗୁଣି ହେଉଥାଇ ତାହାରେ
* ଗୁଆଁର ଗୁଣ— ଗ୍ରାହକ ହେଲି ପ୍ରାପ୍ତେ
ମୋତେ ପୁଣି କଲୁ ଏହାରେ । ୩ ।

---

ଖୁର୍ ଖୁରିକେ—କ୍ଷଣ କ୍ଷଣକେ
ଗୁଆଁର—ମୂର୍ଖ

* ଢୂମିତ କର          ନୟନ ଅନ୍ତର ଯେ
ନ ଚାହିଁଲ ଫେରି ଚାହୁଁ ଯେ
* ଘୋଣା ଫୁଲାଇ          ଅଧରେ ଦରହାସ
ରଖି ମନ ରଞ୍ଜୁ ଥାଉରେ
ସଙ୍ଗିମା !
ଘେନଲେ ଯେବେ ସେମାନରେ
ଘଡ଼ିଏ ନ ରହି          ଫାଟନ୍ତା ହୃଦୟ
ତୋ ସ୍ତନ ସଙ୍ଗ କଠିନରେ । ୪ ।

ନିଦ୍ରା ବଶରୁ          କ ଯୋଗରୁ ଅବା ମୁଁ
କରଥିଲି ତୋତେ ପିଠିରେ
ନୟନେ ନୀର ରଖି          କଥା ନ କହୁ
ଚୁଷିଣ ଫେରି ବିମ୍ବୋଷ୍ଠିରେ ।
ସଙ୍ଗିମା !
ନିଜ ସେବକ ମୁଁ କହୁରେ
ନାହିଁ ମୁଁ ଭୁମ୍ଭ          କୋଳକୁ ନ ଯୋଗାଇ
ବୋଲୁ ଯେ ଚୁଷିଲି ହୋଇରେ । ୫ ।

ଚନ୍ଦ୍ରମା କିରଣେ          ଚନ୍ଦ୍ର ପ୍ରାଙ୍ଗଣେ ଯେ
ବ୍ୟାକେ ଥିଲୁ ନିଦ୍ରା ଯାଇରେ
ଚାହିଁ ତୋ ସେ ଶୋଭା          ଚିତ୍ତ ହେଲା ଲୋଭା
ଚୁମ୍ବନ ରଞ୍ଜିଲି ନେଇରେ
ସଙ୍ଗିମା !
ଚେଷ୍ଟେ ଧରୁନି ବ ତୋର ରେ
ଚମକି ପଡ଼ି ଚେତର          ଧରି ପଡ଼ିଲି
ବୋଲି ନ ଛାଡ଼ିଲୁ କର ରେ । ୬ ।

ଛଳିଲି ତୋ ଫେରି ଭୁହି          ଜାଣିବାକୁ
ତିନି ଭୁବନେ କେ ନାହିଁରେ
ଛୁଇଁକି ଅନାଇ          ଠାରି ଦେଉଥାଉ
ଏପରି ଭୁମ୍ଭର ମୁହଁରେ
ସଙ୍ଗିମା !

---

ଢୂଣିତ — ଢୂମାଇଲା ପରି । ଘୋଣା — ନାକ ପୁଡ଼ା

ଗ୍ଲାନ ଟେକ ଅଙ୍ଗ ସମାନ ରେ
ଛତି ଟେକାଇଲ ଯୁବା ବୃନ୍ଦରେ ମୁଁ
ଏବେ କଲା ବନ୍ଧ ସ୍ଥାନରେ ।୭।

ଜଗତଯାକ ଲୋଡ଼ ମୋହ ପୀରତି
ଜାଣନ୍ତି ସେ ଲୋକ ଟେକ ରେ
ଜୀବନ ଥାଉ ବନ୍ଧ ଯାହା ବନ୍ଧିଲା
ହୋଉ ମୋ ପରାଣ ଧନରେ
ସଙ୍ଗିମା !
ଜୁଆରଙ୍କ ପରା କହରେ
ଜିଣିଲେ ହାରିଲେ ତୋ ସଙ୍ଗ ବିଚ୍ଛେଦୁଁ
ଆଉ ନିବର୍ତ୍ତି ନ ପାରିରେ ।୮।

ଝାଳ ଗଳାଲେ ମୋ ମୁଖରୁ ବସନ-
ପ୍ରାନ୍ତେ ପରା ପୋଛୁ ଦେଉରେ
ଝଉଗଲା ଏବେ ଶରୀର ମୋହର
ଆହା କେ ବୋଲିବ ଆଉରେ
ସଙ୍ଗିମା !
ଝରୁଅଛି ନେତ୍ରୁ ନୀର ରେ
ଝଟିବ ନାହିଁଟି ବୋଲି ସେ ମେଲଣି
ବେଳକୁ ଧରିଛୁ କର ରେ ।୯।

ନଖ ଦନ୍ତ ଘାତ କ୍ଷତ ହୋଇଥିଲେ
ଦେଖାଉ ଏ କସ କଣ୍ଠ ରେ
ନ ଆସିବ ଆଉ ସଖୀଙ୍କ ପାଶକୁ
ପରିହାସ ନସହଇ ରେ
ସଙ୍ଗିମା !
ନୂଆ ନୂଆ ଭଙ୍ଗି ଛୋର ରେ
ନାଗରପଣ ମୋ ତୋ ସଙ୍ଗରୁ ଶିକ୍ଷା
ନ ଜାଣିବେ ତା କି ନର ରେ ।୧୦।

ଟାହିରେ ଦିନେ ପ୍ରବଳ କନ୍ଦ ନାହିଁ
ଦାସ ବତ୍ସଳା କିଶୋରିରେ

ଟାଣ କର ମାନ ଥରେ କହୁ ଅଛୁ
ପୁରୁଷେ ଭ୍ରମର ଯତିରେ
ସଙ୍ଗିନୀ !
ଟଳିଟଳି ତେଜେ ସୁଖରେ
ଟଙ୍କ ଧର-ପର- ଶରକୁ ମୋ ହୃଦ
ହୋଉଅଛି ଏବେ ଲକ୍ଷରେ । ୧୧ ।

ଠିଆ ହୋଇଥିଲୁ ତ୍ରିଭଙ୍ଗିମା ହୋଇ
ଶୁକକୁ ପଢ଼ାଇ ବନେରେ
ଠକପଣେ ପଛୁ ଆଲିଙ୍ଗନ କଲି
ଚୁମ୍ବନ ଦେଲୁ ବଦନେ ରେ
ସଙ୍ଗିନୀ !
ଠୁଳେ କହୁଅଛୁ ଯାହାରେ
ଠିକେ ତ ସେ ବାଣୀ ପାଷାଣର ଗାର
କବସୂର୍ଯ୍ୟ ବ୍ରହ୍ମା ସ୍ୱପ୍ନାରେ । ୧୨ ।

ଡାକଲକୁ ବନେ ପାଶକୁ ବୋଇଲୁ
ମାଗିବ ପଗ ଚୁମ୍ବନ ରେ
ଡର ମାଡୁଅଛି କା ରୂପେ ଦେଖାଅ
କରିଛ କରଜ ମୂନରେ ।
ସଙ୍ଗିନୀ !
ଡୋଳା କଲୁ ଯେତେ ପରି ରେ
ଡମ୍ବରୁଧର ମହା- ଯୋଗ ତେଜବେ
ଦେଖି ତୋ ଭୂରୁ ଭଙ୍ଗୁରୀ ରେ । ୧୩ ।

ତମ କର ମୋହ ଚରିତକୁ ଗୀତ
କରି ଗାଉଥିଲୁ ବଦିରେ
ତାଳେ ମୁଁ ଗୁପତ- ସ୍ଥାନେ ଲୁଚି ବସି
ଆହା ବୋଲି ଦେଲି ହର୍ଷିରେ ।
ସଙ୍ଗିନୀ !
ତଳ ପଡ଼ିଲୁ ପଲଙ୍କରେ
ଢାଙ୍କି ବସନ ଯା ଶ୍ରୀମୁଖେ ରହିଲୁ
ଅଧୋମୁଖ ତନ ବାଙ୍କେରେ । ୧୪ ।

ଅନୁରାଗ ବଳ- ବାରୁ ମୁଁ ଯେ ଧନେ
ବାସରେ 'ମାଗିଲ ରଣ୍ଡରେ
ଆରେ ଏକ ଦଣ୍ଡ ବୋଲି ରସନାରେ
ଶୃପିଲୁ ଦଶନପନ୍ତିରେ
ସଙ୍ଗିନୀ !
ଅନୁମାନେ ଜଣା ନୋହିରେ
ଅନୁରାଗୀ ଅନୁ- ଭବୀ ବିନା ତାହା
ଚଣ୍ଡିତେ ଜାଣିବେ କାହିଁରେ । ୧୫ ।

ଭୁ ଯେ ଥିଲୁ ଧନେ ଗୁରୁଜନ ପାଶେ
ହୋଇଥିଲ ଅନ୍ଧକାରରେ
ଡରକରେ ନେଇ ଡନୁରେ ଚୋଇ ମୁଁ
ଧଅନ୍ତେ କରଜ ଗାରରେ
ସଙ୍ଗିନୀ !
ଭୁଜ କରି କର ଧରିରେ
ତଲେ ଯାଏ ଯା ହୃଦେ ନେଇ ରଖିଲୁ
ମରୁଛି ଏବେ ସ୍ମରିରେ । ୧୬ ।

ଥରେ ଯେ ବନ- ବିହାରେ ମୁଁ ଲୁଚଲି
ଜାଣିବାକୁ ଚୋହୋ ଚିତ୍ତରେ
ଅସ୍ତ ନୋହିଁ ହା ହା ପ୍ରାଣନାଥ ବୋଲି
ଡାଡ଼ିଲୁ ହୃଦରେ ହାଥରେ
ସଙ୍ଗିନୀ !
ଥିରେ ମିଳ ଧରୁ ପଦରେ
ଥାଉ ପାଏ ଭଙ୍ଗୀ କେ ଜାଣଇ ବୋଲି
ବହିଲୁ ଅଳପ ଖେଦରେ । ୧୭ ।

ଧନେ ବିବସନ କରି ଯେ ବସନ
ନ ଗୃହିଁଲୁ କସ ଭାଳରେ
ଦୁଃଖେ ବୋଇଲୁ ଦର୍ପଣରେ ନ ଦେଲେ
ଦେଖିବି ଏଥର ଗାଲରେ
ସଙ୍ଗିନୀ !

ଦୁଇ କର ବାସ କଲୁରେ
ଦେଖି ଦେଖି ବୋଲି ପାଶକୁ ଗଲି ମୁଁ
ଚରଣ ଦୁଇ ଧଇଲୁ ରେ । ୧୮ ।

ଧୀରେ ବଚନେ ମୋତେ ଡାକଲୁ ପାଶକୁ
କହୁବ କଥାଏ ମୂହିଁରେ
ଧରଣୀ ମଣ୍ଡନା ! ଗୃଳଲୁ ଉସନା
କର୍ଣ୍ଣରେ କହିଲୁ ଏକ୍ସରେ
ସଙ୍ଗିମା !
ଧବ ମଧ୍ୟରେ ତୁ ସାରରେ
ଧଡ଼ ତୋ ଚରଣ ବସିଥିଲେ ଆନ-
ନାଶଙ୍କ ରତ୍ତି ଇତର ରେ । ୧୯ ।

ନଖ ମାଜୁ ଥିଲୁ ଦେଖି ମୁଁ ବୋଇଲି
ଦେଖିବାଟି ଆଜ ନଡ଼ିରେ
ନାହିଁ ନ ପାରଇ ଏ ଭଙ୍ଗୀକ ବୋଲି
ଗୃହିଁଲୁ ଅଳପ ହସିରେ
ସଙ୍ଗିମା !
ନୟନ ମନରେ ମୋର ରେ
ନ ଯାଇ ସିନା ଘର କରି ରହୁଛି
ଏ ଭଙ୍ଗୀମାନ ତୋହୋର ରେ । ୨୦ ।

ପଗ୍ଭରିଲ ବଚନେ ମୋତହୁଁ ମାନସ
ଆନେ ବଳୁଥାଇ ପଗ୍ରରେ
ପୟୂରକୁ ତୋ ନେହାନ୍ତରେ ଠାଉନ୍ତେ
ପଳାଇଲୁ କାଡି ହାସ୍ତରେ
ସଙ୍ଗିମା !
ପ୍ରେମେ କଲୁ ଆଲିଙ୍ଗନ ରେ
ପୁରୁଷ ହୋଇ ପାଇ ତୋତେ ତେଜିଲେ
ହେଜିଲେ ପଶୁକୁ ହୀନରେ । ୨୧ ।

ଫଗୁ ଖେଳ ବନ ଆଳୀଙ୍କି କହିଲି
ମୋହୋ ପରିବେଷ କର ରେ

ଫନ୍ଦା ହୋଇ ଯିନା ଜୀବନ୍ତ ଭୁମ୍ବର
କଲ୍ଲ ଯେ ପ୍ରତି ଉତ୍ତର ରେ
ସଙ୍ଗିମା !
ଫୋଲଚଟୋପା ଆଦ୍ଧ କର ରେ ।
ଫାଇ ମନାଇ ମଣ୍ଡିଣ ହୋଇଥିଲ୍ଲ
ଅଇଲ୍ଲ କେ ଡ଼ୋର ଧର ରେ । ୨୨ ।

ବରୁରୁ ଥାଇ ମୋ ବନ୍ଧୁ ପରି ଜଣେ
ତିନ ଭୁବନେ କେ ନାହିଁ ରେ
ବଧିରେ ମୂହିଁ ଜାଣିବାକୁ ତୁ ଯିନା
ସୁରତି-ଶାସ୍ତ୍ର ଶିଖାଇ
ସଙ୍ଗିମା !
ବଧାଡା ଘଟଣା ନୋହି ରେ
ବଟେକ ହରଇ ଶରଣ ପଶନ୍ତା
ମୃତ୍ୟୁକୁ ପେଶନ୍ତା କାହିଁରେ । ୨୩ ।

ଭୂଷଣ ଭୂଷଣ ହେଲେ ତୋ ଅଙ୍ଗରେ
ବଶନ୍ତ ସେହୁ ସୁନ୍ଦର ରେ
ଭଲ ମାନ ଥାଇ କୁନ୍ଦନା-କାନ୍ତିକ
ରଙ୍ଗ ଧଡ଼ ମଳାମ୍ବରରେ
ସଙ୍ଗିମା !
ଭଙ୍ଗେ ଭଙ୍ଗେ ତୋର ଆଣି ରେ
ଭଣେ ସଦାଶିବ କବ ସୂର୍ଯ୍ୟ ବ୍ରହ୍ମା
ମୋ ମନ ରଖିଲୁ କଣି ରେ । ୨୪ ।

ମୋ ବସନେ ତୋ ପଣତ ଗଣ୍ଠି ଦେଇ-
ଥାଉ ଯେ ଶଯ୍ୟନ କାଳେ ରେ
ମୁଖକୁ ମୁଖ ନ ଲଗିଲେ ଆକୁଳ
ହୋଉ ମୋ କୋଳେ ସେ କାଳେ ରେ
ସଙ୍ଗିମା
ମୁରୁଳା ମୋ କର କଚ ରେ
ମିଶିଯାଇ ଥାଉ ଶିବା ଶିବ ଯେହ୍ନେ
ନୋହେ ଏକ ବେଳ ବାଶରେ । ୨୫ ।

ଜୁଡ଼ାକୁ ବେଣୀ ଶୋଭା ସିନା ବୋଲ ମୁଁ
ଫେଡ଼ନ୍ତେ ତୋହର କେଶରେ
ଜାଣିଲି ଜାଣିଲି ହସି ପଛ ଘୁଞ୍ଚା
ଗଲୁ ଯେ ପ୍ରଚଣ୍ଡ ଦଶରେ
ସଙ୍ଗିମା !
ଯହୁଁ ମୁଁ ବିନୟ କଲି ରେ
କ୍ଷାବକା ନରତେ ଏହି ସିନା ବୋଲି
ସ୍ତନେ ମୋତେ ଦେଲୁ ଫେଲି ରେ । ୨୬ ।

ରଖି ଅଠକ ସେ ସେ ଶୋଭା ଲୋଭରେ
ଉଲଗ୍ନ ରତରେ ଧନେ ରେ
ରୁଷିବଟି ଏକା ଗୁଡ଼ ବୋଲି ଅଙ୍ଗ-
ତରଙ୍ଗ କଲୁ କେସନରେ
ହଙ୍ଗିମା !
ରୋଦନ ବି କଲୁ ମିଛେ ରେ
ରାଜୀଶ ଗୃଲନ୍ତେ ଇଷି ଇଷି ଭାଷ୍
ହାସ ବାହାରିଲା ସ୍ବଚ୍ଛେ ରେ । ୨୭ ।

ଲାଭାଇବୁ ନାହିଁ ପ୍ରତାପ ପରାଣ
ବୋଲି ମୁଁ ଯେ ଗୃଷ୍ଟୁ କହୁରେ
ଲାଜ ମାଡ଼ଇ ବଡ଼ ବୋଲୁ ସେ କଥା
ଟେକ ବଦନ ନ ଗୃହୁଁ ରେ
ସଙ୍ଗିମା !
ଲକ୍ଷ୍ୟ ଦେବ କଷ୍ଟ କସରେ
ଲକ୍ଷଣବନ୍ତି ତୋ ପାଦ ଧରିଥିଲେ
ନୋହେ ମଦ୍ଧବା ବିଶେଷରେ । ୨୮ ।

ବିପରୀତ ଓଁକାର କପଟ ବ୍ୟଂଜେ
ମୁଖେ ତୁ ନ କହୁ କଥାରେ
ବୋଇଲୁ ପ୍ରଭୁ- ପଣକୁ ଏହି ନକ
ଉଚିତ ଅଟେ ସର୍ବଥା ରେ
ସଙ୍ଗିମା !

ବଟେଳ ଶୁଆଇଲ ହୃଦେ ରେ
ବାହୁବଲ୍ଲରୀ ଛନ୍ଦ          ବାଳ-କରଣୀ
ପ୍ରାପ୍ତେ ଝୁଲିଲୁ କି ମୁଦେ ରେ
ଶ୍ରୀମୁଖ ଶୁଖାଇ          ଉଭା ହୋଇଥିଲି
ମୋ ଆସିବା ବେଳ ଗୃହୁଁ ରେ
ଶିର ଛେଦ ଏଥୁଁ          ବର ମୋର ସ୍ଥିର
ଚରଣ ଚଳିଲା କେହ୍ନେ ରେ
ସଙ୍ଗିନୀ !
ଶୁଭୁଥିଲା ଏହୁ ବାଣୀରେ
ଶୁଭ କରନ୍ତୁ ପଥରେ          ରାଧାକାନ୍ତ
ବୋଲିବାରୁ ଆଳୀ ଶ୍ରେଣୀରେ । ୩୦ ।

ସବୁ ପ୍ରକାରେ ସୁଖ          ଭୋଗ ସମ୍ପଦ
ହୋଇଥିଲି ଅବା ଯାର ରେ
ସୁନ୍ଦରୀ ଅଙ୍ଗ ସଙ୍ଗ          ନାହିଁ ଯାହାର
ଧିକ ସେ ଜନ୍ମ ତାହାର ରେ
ସଙ୍ଗିନୀ !
ସର୍ବଦା ହୋଇ ବୈରାଗୀରେ
ସୁମନ ଶର ବେଦନା          ଯେ ପାଉଛି
ତା ତନୁଁ ନାହିଁ ଅଭାଗୀରେ । ୩୧ ।

× × × × । ୩୨ ।

ହେଲା କାଳ ଯା          ବିରହ ସାଗରକୁ
ଭେଳା ତ ବୁଡ଼ୁଛି ଏବେ ରେ
ହରି କରିବେ ପାରି          କୃପା-ନାବରେ
ଆର୍ତ୍ତତ୍ରାଣ ବାନା ଯେବେ ରେ
ସଙ୍ଗିନୀ !
ହେବ ସେବା—ଯୋଗ୍ୟ ପୁଣି ରେ
ହର ଗଉରୀ          ପରସ୍ପେ ମିଶିଥିବ
ସ୍ମର କି ପାରିବ ଜିଣି ରେ ? ୩୩ ।

ଖ୍ୟାତ ଅଛୁ ଏହା ଅନ୍ଧ ଯେହ୍ନେ ଯଷ୍ଟି
ହରାଏ ଧରି ନ ଜାଣି ରେ
କ୍ଷମା-ନିଧିକ କହିବୁ ଏବେ ତୁ ଯେ
ଚତୁରାକ୍ଷ କୁଶପାଣି ରେ
ସଙ୍ଗିମା !
କ୍ଷଣେ ବିଳମ୍ବ ନ ସହିବରେ
କ୍ଷୀଣ ସଦାଶିବ କବି-ସୂର୍ଯ୍ୟ ବ୍ରହ୍ମା
ପ୍ରେମ ଧାମ ନାମ ବହି ରେ । ୩୪ ।



# ରସାଳ ଚଉତିଶା

( ରାଗ—କେଦାର କାମୋଦୀ )

କଳାବନ୍ତି କେଶ ସମ କେ ଘନ କେଶକୁ
                    କର ଲୋକନ କେଉଁ ରାଗୀ ମନକୁ ।
କଲ୍ନି ନିମଗ୍ନ ଅନୁଭବ ରସରେ
                    କନ୍ଦେ ଉନ୍ମାଦ ହୋଇ କୁସୁମ ଶରେ ଯେ । ୧ ।

ଖସିଲା ତାର ଗୋଷ୍ଠ ଏ କାଳେ କୋଳେ
                    ଖେଳୁଥାଇ ବଜୁଳି ପରାଏ ହେଳେ ।
ଖଣ୍ଡ ଖଣ୍ଡ ପରଶୁ ପର ପ୍ରତାପ
                    ଖଣ୍ଡିକେ ଖଣ୍ଡିକେ ତା ଭଙ୍ଗୀ ଅମାପ ଯେ । ୨ ।

ଗୁଣୀ ତ ତା ସମାନେ ଜଗତେ ନାହିଁ,
                    ଗେଲଇ କହିବା ଭୁଲାଇବା କାହିଁ ?
ଗୁମାନ କରୁଥାଇ କାମ ଜୟୂରେ,
                    ଗଡ଼ାଇ ଦେଉଥାଇ ରସଲପୂରେ ଯେ । ୩ ।

ଘୂମାଇ ଥାଇ ଆଖି ଯେଉଁ ଭାବରେ,
                    ଘେନିବା ତହିଁ ଲାଭ ନାହିଁ ଲାଭରେ ।
ଘୂଞ୍ଚାଇ ଦେଉଥାଇ ଶାନ୍ତ କ୍ଷୋଭକୁ
                    ଘେନାଉ ଥାଇ ମନେ ରତି ଲୋଭକୁ ଯେ । ୪ ।

………………….ମନେ ଥାଇ ଯହିଁ
                    ନ ଯୋଗାଇବା କଥା କରଇ ସହି
ନୁହଇ ଜାଣି ତାର ପ୍ରସନ୍ନମାନ,
                    ନଷ୍ଟେ ଜାଣି ସେ ଆଣିବନ୍ତ ରାଜନ ଯେ । ୫ ।

ଚୁମ୍ବନ ନେବା ତିନି ପ୍ରକାର ରୀତି,
                    ଚନ୍ଦ୍ରାର୍ଦ୍ଧ ଶଶ ପ୍ଲୁତ ଚନ୍ଦ୍ର କ ଗତି ।
ଚଞ୍ଚୁଳ ରେଖ ଜାଣି ରୂଳ ………,
                    ………ଚତୁର ସୁଖ ଯେ । ୬ ।

ଛ ପ୍ରକାର ଛନ୍ଦଶ ଖଣ୍ଡି ମଣ୍ଡିତା,
ଛଇଲା ମୋର ଆଲିଙ୍ଗନ ପଣ୍ଡିତା ।
ଛୁଡଇ ନାହିଁ ଯାହା ସ୍ୱପ୍ନେ ମନରେ,
ଛୁଲି କରି ଥାଇ ତାହା ନିଧୁବନରେ ଯେ । ୭ ।

ଯେତେଢ଼େ ସେ ଶୋଭା ତେତେଢ଼େ ଜାଣଇ ରସ,
ଯେତେଢ଼େ ଜାଣଇ ତେତେଢ଼େ ହୁଏ ଆବେଶ ।
ଜଣେତ ତାହା ସମ ଦେଖିଲି ନାହିଁ,
ଯେବେ ଶୁଣିଲି ନାହିଁ ଦେଖିବା କାହିଁ ଯେ । ୮ ।

ଝଷକେତୁ ସମର ବରତ ସେହି,
ଝିଲୁଥାଇ ବ ପ୍ରିୟ ପରତେ ସହି
ଝାଳେ ଝଳ ସେ ଲୁଚି ଥାଇ ତ ଦେହ,
ଝଲକ ଦେଖି ତାର ପଲକ ରହେ ଯେ । ୯ ।

ନବୀନା ନବଭଙ୍ଗୀ କହିବ କେତେ,
ନାହିଁ ନୋହୁ ନୋହିବ କହଇ ଯେତେ ।
ନ କାର ଅଳଙ୍କାର କରି ମୁଖରେ,
ନ ମନ୍ଦାଉ ସେ ଥାଇ କେଉଁ ସୁଖରେ ଯେ । ୧୦ ।

ଟଳୁତ ନାହିଁ ତାର ଭଙ୍ଗୀ ନୟନୁ,
ଟିକିଏ ଅନ୍ତର ସେ ନୋହୁଛି ମନୁ ।
......÷.....ମନୁ ନ ଯିବ,
ଟେକ କହୁଛି ସେ ମୋ ଜୀବ ଅଜୀବ ଯେ । ୧୧ ।

ଠାରିବା ଭଙ୍ଗୀ ତାର ନୁହଇ ଲେଖି,
ଠାଠିକେ କେତେଢ଼େ ଠଣେ ଠାରଇ ଆଖି ।
ଠିଆ ହୋଇବା ଭଙ୍ଗୀ ନୁହେଁ ଭୁଲଇ,
ଠିକ କରି କହିବ କେତେ ମୂଲଇ ଯେ । ୧୨ ।

..........................,
ଡୋଳା ଯାକେ ପୂରିଥାଇ ମନ୍ଦ ହାସ ।
ଡାକୁ ଥାଇ ସେହି ଭଙ୍ଗୀରେ ପାଶକୁ ।
ଡକା ତା ହେଲି ଚନ୍ଦ୍ର ଗଳା ନାଶକୁ ଯେ । ୧୩ ।

ଠଗ ପଡ଼ିଲା ଭଙ୍ଗୀ ସେହି ଜାଣଇ,
ଡାଳି ନୟନ ରସ ପରିମାଣଇ ।
ଡ଼ିମ କହୁ ନାହିଁ ଯେ ଦେଖିଥିବ ତା,
ଡୋକୁ ନ ଡୋକୁ ସୁଧା ସେହି ଦେବତା ଯେ । ୧୪ ।

ଆଉଜି ଥାଇ ମୋ ଅଙ୍ଗ ଅପସରେ,
ଅବଶେ ଅନଙ୍ଗ ମାଦକ ବଶରେ ।
ଅଧେ ଅଧ କରି କହେ ଯେଉଁ ଭାଷା,
ଆଜ ହିଁ ମୋ କର୍ଣ୍ଣରେ କରିଛି ବସା ଯେ । ୧୫ ।

ତପ ଶୀତଳ ବେନ ବିଭାଗ କାଳ,
ତଳେ ପକାଇ ନାହିଁ ଦୁଃଖ ତା ମେଳ ।
ତପନ କର ତୁଷାର କର ଦୁହେଁ
ତେଡ଼େ ନୁହନ୍ତି ଲାଗିଥିଲେ ତା ଦେହ ଯେ । ୧୬ ।

ଥିଲି ସେ ଯେତେବେଳେ ମୋର ସଙ୍ଗରେ,
ଥପ୍ପେ ଅନଙ୍ଗ ନ ଥାଇ ତା ଅଙ୍ଗରେ ।
ଥରୁଥାଇ ଅଧର ଥୋଇ ଅଧରେ,
ଥରେ ଥରେ ଭିଡୁଥାଇ ପୟୋଧରେ ଯେ । ୧୭ ।

ଦୁର୍ଲଭ ଶୀତ୍କାର ଭାଷଇ ଇଷି,
ଦ୍ରବ ହୋଇ ଅଙ୍ଗେ ଯାଇ ଥାଇ ମିଶି ।
ଦେଖି ଯେ ଥିବ ତାର ରତି ଆରମ୍ଭ,
ଦେବତା ହୋଇଲେ ନ ରହିବ ଦମ୍ଭ ଯେ । ୧୮ ।

ଧରି କର ଅଙ୍ଗରୁ ଅଲଗା ହୋଇ,
ଧୀର କରି ନୟନେ ନୟନ ଦେଇ ।
ଧରି ନିଃଶ୍ୱାସ ଫୁଲ ଧରଇ କମ୍ପ,
ଧୀରେ କରଇ କର୍ଣ୍ଣେ ମନ୍ମନ ଜପ ଯେ । ୧୯ ।

ନତନୁ ନାଟ ସୂତ୍ରଧର ନାଗରୀ,
ନଟାଙ୍ଗୀ ହୁଏ ଯେବେ ନାଟୁଆ ପରି ।
ନଥିରେ ଆଦର ଲାଜ ବାସ ବେଶେ,
ନଥାଇ ତାର କେଉଁ ଶୋଭା ସାହସେ ଯେ । ୨୦ ।

ପ୍ରିୟା ପୀରତି ତ ନୁହେଁ ଏତେ ତେତେ
ପଗଭବ ବନ୍ଧ କାମ କରୁଛୁ ତେତେ ।
ପାସୋର ନ କ ହେବ ତେଙ୍କେ ସେନେହ ।
... ... ଦେହ । ୨୧ ।

ଫୁଟିଥିଲେ ନଡନୁ ନାଠ ଶରମେ
ଫିଟି ଲେଟଣି ନାଚୁ ଥାଇ ଚରମେ ।
ଫୁ ଫୁ କର ଫିଙ୍ଗି ଦେଉଥାଇ ଝାଳ
ଫୁଲାଇ ନାସା ହେଉ ଥାଇ ଢଲ୍ଲ ଯେ । ୨୨ ।

ବସୋଇ ରହ୍ବ ବସୋରବା ଚତୋଇ,
ବଗୁରବାରେ ବଣ୍ଣକେଲୁ ଡେଗାଇ ।
ବେଳକୁ ବେଳ ବଳ ବପସାତରେ,
ବ୍ରହ୍ମ ପଦବୀ ରଖୁ ଥାଇ ଇତରେ ଯେ । ୨୩ ।
ଭାଙ୍ଗିଲେ କାମ ନ ଭାଙ୍ଗଇ ସେ ଭାବ,

ଭାବବଶୀର ଏ ସତ ବଡ଼ ଲଭ ।
ଭଜଇ ଯେତେବେଳେ ଶାନ୍ତ ମନକୁ,
ଭଲ ଲଗାଇ ଭଡ଼ ଧରେ ସ୍ତନକୁ ଯେ । ୨୪ ।

ମହ୍ବଲା ମନ ନ ମଜ୍ଜାଇ କାମକୁ
ମେଲଣି କେବେ ହେଁ ନ ଦାଇ କାମକୁ ।
ମନମୋହ୍ବନୀ ମତେ ଅଧୀନ କର,
ମୁହୂର୍ତ୍ତିକେ ପୁଣି ହୁଏ ସେହ୍ବପର ଯେ । ୨୫ ।

ଯୁବତୀ ତାକ ଅତି ସେନେହେ କହେ,
... ରହେ ।
ଯୋଗ ଥିଲା ଏମନ୍ତ ହେଲା ବିଯୋଗ,
ଯାବତ ଯାତନା କଲା ଏ ଦେହ ଭୋଗ ଯେ । ୨୬ ।

ରଖିଥାଇ ଧାତା ଦୁଃଖ ସୁଖ କାହିଁ,
ରଚଇ ଯେତେବେଳେ ଜାଣି ତା ନୋହ୍ବ ।
ରାତି ଯେ ନଏ ଅନାରତ ରତରେ,
... .. ଅନ୍ତରେ ଯେ । ୨୭ ।

ଲଲାମ ମୋର ଲୀଳାବତୀ ସୁତନୁ,
ଲୋଡ଼ଇ ନାହିଁ ଆନ ମୋ ସଙ୍ଗ ବନୁ ।
ଲୁଗା ପରାଏ ଲାଗି ଥାଇ ତା ଦେହେ
ଲଳନା ମୋତେ ଯେନ ଥାଇ ସେନେହେ ଯେ । ୨୮ ।

ବକ ମୁଁ ହୋଇ ଥାଇ ତାକୁ ସ୍ୱଭାବେ,
ବାନ୍ଧବୀ ମୋତେ କଣି ଥାଇ କ ଲାଭେ ।
ବଚନେ ନାକ କହ୍ନ ହୁଅଇ ଏହା,
ବଧାତା ସିନା ସୁହାଉ ଅଛି ଏହା ଯେ । ୨୯ ।

ଶରୀର ସେ ମୋହର କହିଲ ସାର,
ଶପଥ କରୁଛି ଏ ଶରୀର ତାର ।
ଶଙ୍କି ସେ ଥାଇ ଯେତେ ଭାବରେ ମୋତେ,
ଶଙ୍କା ଲେଶ ମାତ୍ରକ ନ ଥାଇ ଚିତ୍ତେ ଯେ । ୩୦ ।

ଷୋଳ ଦୁଗୁଣ ଗୁଣବତୀ ପ୍ରାଣରେ,
ଷଡ଼ ଦୁଗୁଣ ମାସ ଲେଖା ମାସରେ ।
ଷଡ଼ ଋତୁ ସରଇ ଏକା ରସକେ,
ଷାଠିଏ ଦଣ୍ଡପାକ ଲେଖା ଦଣ୍ଡକେ ଯେ । ୩୧ ।

ସରୁ ନାହିଁ ଧନ ଅସର ଦୁଃଖରେ,
ସବୁ ସୁଖ ଇ ଅଛି ତାର ପାଖରେ ।
ସଂସାରପାକ ସମ ନ ଦେଖି ଯେଣୁ,
ସେହି ତାହାକୁ ସମ ବୋଲଇ ତେଣୁ ଯେ । ୩୨ ।

ହେଜ ନ ରଖି ମୁଁ ବୋଲଇ ତାର ଗୋରା,
ହେଜଲେ ତୁ ମୋ ନ ଜାଣିଲୁ ପର ।
ହସି ସେ ବୋଲୁଥାଇ ହେବ ମୁଁ ହାର,
ହା ବୋଲ ବୋଇଲ ମୁଁ କର ବାହାର ଯେ । ୩୩ ।

କ୍ଷୋଭ ଗୁଡ଼ କୃଷ୍ଣ ଜୀବ ଅନ୍ତେବାସୀ,
କ୍ଷମେ················
କ୍ଷମେ ରସାଳ ଚଉତିଶା ଏ ଗୀତ,
କ୍ଷମା ଗୀର୍ବାଣ ନାରାୟଣର ଚିତ୍ତ ଯେ । ୩୦ ।

—o—

# ଷଟ୍ ସାଗର ଚଉତିଶା

## ବିଷ୍ଣୁ ଦାସ

### ରାଗ—ବଙ୍ଗଳା ଶ୍ରୀ

କେବଣ ନାୟକ        ବିଦେଶରେ ରହି
    କଠିଣ ବେଦନା ପାଇ,
କେଉଁ ଭାଗ୍ୟରୁ        ବିଦେଶୁ ଆସି କଦେହ
    ପ୍ରିୟାକୁ କୋଳେ ବସାଇ ।
କୋମଳା ହୋଇ        କଠିଣ କାମ ଦଣ୍ଡ
    କି କେ ସହିଲୁ ସୁନ୍ଦରୀ ।
କଳାକର ଯେ        ଶରୀର ଦହୁଥିଲା
    ଗୃହିଁଲୁ କେମନ୍ତ କରି । ୧ ।

ଖେଳନ୍ତ ଖଞ୍ଜନ        ଚଞ୍ଚଳ ନୟନେ
    ଲୁବ୍ଧ ପାଇ ପରି ଗୋଷ୍ଠୀ ।
କ୍ଷଣ କ୍ଷଣକେ        ସୁଖଦ ଝଟ ଶେଯ
    ହୁଏ ପରି ବହ୍ନିଦଶ ।
ଖଣ୍ଡେ ଦୂରୁ ଆଉ        ଚନ୍ଦନ ଦେଖିଲେ
    ହୁଅଇ ପରି ଭୟଦ
କ୍ଷୀରୋଦଧି ବାସ        ଦିବସଯାକରେ
    ମଣ୍ଡନ ହୁଏ ବିଷାଦ । ୨ ।

ଗଜେନ୍ଦ୍ରଗମନା        ମନ୍ଦ ଗତି ବାତ
    ମଳୟାଚଳରୁ ଆସି ।
ଚଇତ୍ରିକ ଗୋଷ୍ଠୀ        ସୁନ୍ଦର ତନୁକୁ
    ଦହୁଥାଇ ଦିବା ନିଶି ।
ଗୁଣମଣି ମୋର        ଚରିତ ସନ୍ତତେ
    ଗୁଣି ଗୁଣି ଦିନା ସହୁ ।
ଗନ୍ଧର୍ବ ସନ୍ତତେ        ଏ ଗୁଣ ସୁମରି
    କ୍ଷଣେ ହେଁ ପ୍ରାଣ ନ ରହୁ । ୩ ।

ଘନ କଠିନ ବର୍ତ୍ତୁଳ ପୀନ କୁଚେ
ଦେଇଥାଇ ପଦ୍ମ ଜଳ ।
ଘେନିଲା କ୍ଷଣି ମଳିନ ହୋଇଯାଇ
ବାଧଇ ଯଥା ଅନଳ ।
ଘଣାକ୍ଷରେ ଯେଉଁ କୁଚେ ପତ୍ରାବଳୀ
ଲିଖନ ଥିଲା ସୁନ୍ଦର
ଘର୍ମ ଜଳରେ ଗର ଅନୁକ୍ଷଣେ
ସୁମଣ୍ଡନ ହୋଇଥାଇ । ୪ ।

ନୀଳ ଇନ୍ଦୀବର ସୁନ୍ଦର ନୟନେ
ନ ଥାଇ ପର କଜ୍ଜଳ
ନବ ବନ୍ଧୁଲି ପ୍ରବାଳ ବିମ୍ବାଧରେ
ନଥାଇ ପାନ ଉଜ୍ଜ୍ୱଳ
ନିଶାକର ଅର୍ଦ୍ଧ ନିଟିଲରେ ଅବା
ନଥାଇ ଚନ୍ଦ୍ର ତିଳକ
ନୋହୁଥାଇ ପର କୁରଳୀ ମଞ୍ଜୁଳ
ଏ ମନୋହର ଅଳକ । ୫ ।

ଚନ୍ଦ୍ର ମଣ୍ଡଳେ ବନ୍ଧ ବନ୍ଧ ପରସ୍ପେ
ନ ଥାଇ ଝିଲମିଲ ମାଳୀ
ଚାରୁ କପୋଳ ମୂଳଦେଶ ବନ୍ଧଣ
କରିଥାଉ ମଗବାଳୀ
ଚାପ ସର ଭର ସହି ନ ପାରୁ ଯେ
ଶୂନ୍ୟ କରିଥାଉ ଗଳା
ଚଞ୍ଚଳ ଏ ନେତ୍ର କନ୍ତୁ ନ ଜାଣଇ
ନ ଦେଖ ଚଞ୍ଚଳ ଲୀଳା । ୬ ।

ଚ୍ଛେଉ ପବନ ଅନୁକ୍ଷଣେ ପାଇଥାଇ
ପକାଇ ଥାଉ ନିଶ୍ୱାସ
କ୍ଷୀଣ ରଙ୍ଗ ଯେତ ପତ୍ର ଶ୍ୱାସ ଘାତେ
ମଳିନ ବସନ ବେସ
ଛାଡ଼ି ଥାଇ ପଳାଏ ଦନ୍ତ······ଉଚନ
ରସ ଭାବରୁ କର

ଛଇଳ ମଣିକେ ନିଦା ଯାଉ ଥିଲି
ଏ କଥା ମାନ ସୁମର ॥ ୭ ॥

ଯୋଡ଼ି ଧର ମୋତି ହାର ପରି ସ୍ତନ
ଉପରେ ହୋଇଲା ଚୂନ
ଜଳୁଥିଲା ଚକା ବିରହ ଅନଳ
ଜଳ ଦେଲା ଏ ନୟନ ।
ଯେତେବେଳେ ହେଁ ଦଣ୍ଡେ ହେଁ ଉଠି ବସୁ
ପଟ ପରି ବନ୍ଧ ଥାଉ
ଜଳରୁହ ଦଳ ସୁନ୍ଦର ନୟନ
ଲୋତକ ମରି ସୁରାଉ ॥ ୮ ॥

ଝଳ ପାଳମାର ଗଳ ପଡ଼ୁଥିଲା
ବାହାର ମରି ବଳୟ
ଝୁଲି ବସନକୁ ସଦା କରିଥିଲା
ପରାସ୍ତବ ସମୁଦୟ ।
ଝସ ବାସନ ଦଳ ମାନ ସତ୍ୟ ନ କରୁ
ଥାନ୍ତ ସିନା ପକ୍ଷୀ
ଝଳକ ଅନଳ ଗଣି ପ୍ରାପ୍ତେକ ମଣି
କମ୍ପୁରେ ପଙ୍କଜ ମୁଖୀ ॥ ୯ ॥

ନିର୍ମଳ ଗଣ୍ଡରେ ମକର୍ଣ୍ଣ ନଥାଇ
ମଣ୍ଡି ଥାଉ ଲୁହ ଧାରା
ନୀରସ କରି ପୃଥୁଳ ସ୍ତନ ଶୀତଳ
ଯାଇ ପଡୁଥିଲା ପରି
ନ ପାଇଲୁ କେଉଁ ଦୁଃଖ ପଦ୍ମହାସୀ
ତୃଷି ବସି ମୋହ ପାଇଁ
ନାହିଁ ଆନ କଥା ମୁଁ ଜାତ ହୋଇଲି
ତୋତେ ଦୁଃଖ ଦେବା ପାଇଁ ॥ ୧୦ ॥

ଟଳଥାଇ ଖରି ଏ କଦଳୀ ଖଣ୍ଡ
ପୁଷ୍ଟକ ବର ନ ଥାଇ
ଟେକ ଥାଇ ଆଶ ପୁଣି ଆସି କେଶ
ମୋର ବାନ୍ଧି ଦେବା ପାଇଁ

ଝଙ୍କ ବର କର    ବଇରି ବଇରି
ହୋଇ ଥାଇ ଥାଇ ମନେ
ଝିକାଏ କେମନ୍ତେ    ସୁଖକୁ ଲଭିବୁ
ମହ୍ନି ବେଦନା ବହ୍ନିନେ । ୧୧ ।

ଠିକେ ରତନ    କଙ୍କଣ ମଣିବନ୍ଧ
ଗଳା ପଡ଼ିବାର ଜାଣି
ଠଣ ଭୁଜ ମୂଳ    ଯାଏ ଟେକ ନେଇ
ରଖୁ ସିନାରେ ସୁବେଣୀ
ଠାଠିକ ଦାସୀ-    ମାନେ ସିନା ପ୍ରବୋଧ
ମାନକହେ ଥାନ୍ତି ଜଗି
ଠାକୁରାଣୀ ହୋଇ    ମହା ବେଦନାକୁ
ପାଇଲୁ ମୋ ପ୍ରୀତି ଲାଗି । ୧୨ ।

ଡାଳିମ୍ବ ବୀଜ    ଦଶମା ଝୀନବାସ
ବନ୍ଧିଲୁ କେମନ୍ତେ କରି
ଡମ୍ବରୁ ମଝାରେ    ଯେଣୁ ସେ ବସନ
ଥିବା ସହି ନ ପାରି
ଡୋଳା ପ୍ରତିମାରେ    ମଞ୍ଜୀର ଚରଣେ
କମ୍ପାଇ ଢେନବୁ ଅବା
ଡରାଉଥିଲା ମଦନ    ସେ ବେଦନା
ଇତର କେତେ ସହିବା । ୧୩ ।

ଢଳଲ ବାମି    ସରସିଜ ପରାଏ
ନୀରସ ଦଶୁଥିବ ମୁଖ
ଢାଙ୍କିଥିଲୁ ପାଣି    ପଲ୍ଲବ ଥୋକାଏ
ଢଳୁର ସମସ୍ତ ସୁଖ । ୧୪ ।

ତରସ୍ତ ହୋଇତ    ତରକରେ ନେଇ
ନବଡ଼ କର ବୁଜିଲୁ
ତଡ଼ିତ ନ ଗୁହାଁ    ଏମନ୍ତ ନ କଲେ
କେମନ୍ତ······ବଞ୍ଚିଲୁ । ୧୫ ।

ଥାଇ ଥାଇ ଗିରି ଶିର ଆରୋହଣ
ଡାକନ୍ତି ଯେ ବରହଣ
ସ୍ଥୂଳ ନିତମ୍ବାଏ କାଳେ ମହାକଷ୍ଟେ
ପୁହାଇଥିବୁ ପବଣ । ୧୬ ।

ଥିର ରଜନୀରେ ଥାଇ ବରଷାରେ
ମଦନ ଝଡରେ ପଶି
ଥୋଇଲୁ ଯେବେ କଷ୍ଟ ଦେଲ ସାଷ୍ଟମେ
ହା ହା କରି କୁଟୀଳ କେଶୀ । ୧୭ ।

ଦର୍ଦ୍ଦୁର ଦୁନ୍ଦ୍ରୁ ଦୁନ୍ଦ୍ରୁ ରବ ସେକାଳେ
ବରଷାକୁ ହୋଇ ସଙ୍ଗ
ଦଣ୍ଡ ଦଣ୍ଡ କେ ଚକାଇ ମାରଗଙ୍କ
ବକାରତ କରେ ଅଙ୍ଗ
ଦୁଗୁଣ ଶୁଭଇ ଶୀତ କଣ୍ଠ ଧ୍ୱନି
ନାଟିକା ଯେ ଚନ୍ଦ୍ର କଳା
ଦୁଃସହ ଏହୁ ସମସ୍ତ କେତେ ଦୁଃଖ
ସହିଲୁ ରେ ବାଳାଶୀଳା । ୧୮ ।

ଧାରାମାନଙ୍କୁ ତୁ ଅନାଇ ନ ଥିବୁ
କରୁଅଛୁ ଅନୁମାନ
ଧୀର ଗମନୀ ତୁ ଏମନ୍ତ ନବଲେ
ଧରି ନ ଥାନ୍ତୁ ଜୀବନ
ଧାଡ଼ି ଧାଡ଼ି ହୋଇ କଦମ୍ବ ଫୁଟିଲା
ଏହା ଯେ ଦେଖିଲୁ ନାହିଁ
ଧାତା ମୋହୋ ପ୍ରାଣ ଏତେକ ରଖିଲା
ମଦନ ମୁକୁର ମୁହିଁ । ୧୯ ।

ନୀରଦ କଳାବେଣୀ ବୟସ ଅନ୍ଧାର
ନ ବୁଝିଁଲୁ ଭଲ କାଲୁ
ନୀର ଜାରନ୍ତି ପାଇଲା ମୋତେ ତୁ
ଶମନ ସଦନୁ ଆଣିଲୁ ।

ନବ ବଦଳତ          କଦଳୀ ପବନ
  ଲାଗନ୍ତା ଯେବେ ତୋ ଦେହେ
ଲବଣୀ ପଲ୍ଲବ          ଶୟନ ତୋତେକ
  ଜାଅନ୍ତା ଅବା କ୍ଷଣେ ହେଁ । ୨୦ ।

ପାଇଲୁ ମହା          ପରମାଦ ବେଦନା
  ହା ହା ରେ ମିଳନ୍ଦ ନେଷା
ପ୍ରଚଣ୍ଡ ପବନ          କଦଳୀ କାଣ୍ଡକୁ
  ସୁଧା ସାତ କୁମ୍ଭ ପାନା
ପାଇବ ତୋର          ଦରଶନ ଜୀବନେ
  ମନରେ ଏତେ ନ ଥିଲ
ପରମେଶ୍ୱରଙ୍କ          ଦୟାରୁ ମହିମା
  ଏଠାରେ ବଡ ବଢିଲା । ୨୧ ।

ଫୁଟଇ ବୋଲି          ପଦ୍ମଣର ମାଳତୀ
  ଲତା ଉପାଡ଼ିଲେ ସଖୀ
ଫେଡ଼ି ନଇ ଦେଲେ          ପଞ୍ଜୁରୁ ଶୀତକଣ୍ଠୁ
  ଏଣୁଛନ୍ତି ତୋତେ ରଖି
ଫୁଲ୍ଲାରବିନ୍ଦ ବଦନୀ          ଦିନେ ହେଁ ତ
  ଦେଖି ନଥିବୁ ପ୍ରାଙ୍ଗଣ
ଗୁପ୍ତେ ରଖିବାକୁ          ପ୍ରାଣ ରଖିବାକୁ
  ହୋଇଲା ଏହା କାରଣ । ୨୨ ।

ବସନ୍ତ କୋକିଳ          ବଚନ ଦୁଃଖେ ଯେଁ
  କେତେ ପ୍ରକାର ସହିଲୁ
ବାଲୀଶ କାନ୍ତର          ସେନେହ ପଠନରୁ
  ଏତେ ଯାତନା ପାଇଲୁ,
ବିଧାତା ଲବଣୀ          ପ୍ରତିମାକୁ ଦେଲା
  ପ୍ରଚଣ୍ଡ ଚଣ୍ଡ କିରଣ
ବନ ଅନଳେ          ଆଗରେ ଉଭା କଲା
  ଶୁଖିଲାର କୁଶ ତୃଣ । ୨୩ ।

ଭୂରୂ ଚନ୍ଦୁଧର ସନମତ ବନ୍ଧ
ଭୁବନେ ପାଇଲୁ ତ୍ରାସ
ଭ୍ରୁବମ୍ପ ଏକ ଚନ୍ଦ୍ର କଲା ପ୍ରାପ୍ୟେକ
ଏବେହେଁ ହୋଇଲୁ କୃଶ
ଭ୍ରଜଲା ସବୁ କ ମୋ ମନରୁ ଧନ
ଅନାଇଁ ଶ୍ରୀମୁଖ ଇନ୍ଦୁ ।
ଭରଷା ହୋଇଲା ଆଜ ପାଶ ହେଲ
ମଦନ ବଦନ ସିନ୍ଧୁ । ୨୪ ।

ମୃଗ ମଦର ମୀନ ଖଞ୍ଜ ନେସା
ସୁନାର ଦାଢ଼ କନକ
ମହା ଉଜ୍ଜ୍ୱଳ ବଢ଼ଇ କର୍ମେ କର୍ମେ
ମୂଲ ବଢ଼ଇ ଅନେକ
ମହାମଣି ଯେହ୍ନେ ଶାଣେ ଶାର୍ଣ୍ଣ ହୁଏ
କାନ୍ତ ଅଧିକ ବଢଇ
ମୁକୁତା ଦଶମ୍ପ ଏ ମନ ହେଲେ କ
ସୁଷମା କାହିଁକ ଯାଇ । ୨୫ ।

ଜାଣୁ ମଣିନୁ ମୋହ ପ୍ରାଣ ପୁରୁଷ
କଣ୍ଠର ରତନ ମାଳା
ଯତନଟି ଲବ ଲଲାଟ ପଟରେ
ନୟନ ବେନ ପିତୁଳା
ଯେତେ ଝନେ ତୋହ ପାଶେ ଦାସ ହୋଇ
ଥିବ ଚକୋର ନୟନା
ଜାଣିଥିବୁ ମୋହ ପ୍ରାଣ ଚେତେଝନ
ଯାଏ ପ୍ରାଣରେ ଗଣନା । ୨୬ ।

ରଜମ୍ପ ଝନ ଏ ଲାବଣ୍ୟ ଲପନ
ନୟନରେ ଝଶୁଥାଇ
ରସ ନିଧି ଦୁଃଖେ ପାଇବା ଝରୁର
ଡଣ୍ଡେ ମନୁ ଗୁଡୁ ନାହିଁ

ରମଣୀ ରତନ ଚିବୁକରେ ଦେଇ
ଚନ୍ଦ୍ରମୁଖ ଟେକିବାର
ଗାଢେ ଅଧିକ ହୋଇ ମନେ ପଡଇ
କେମନ୍ତେ ଯିବ ପାସୋର । ୨୭ ।

ଲପନ ତୋହୋର ବିବର୍ଣ୍ଣ ହୋଇ ଯେ
ନୟନରେ ଦିଶୁଥାଇ
ଲଳିତ ଲପନା ତହିଁ କା ମନରେ
କେତେ ବିଗୁର ହୁଅଇ । ୨୮ ।

ବିଶେଷେ କୃଶ ଯେତେବେଳେ ହୁଅଇ
କେତେ ଛନ୍ନ ହୁଏ ମନ
ବନଜ ବଧମା ଏ ବାଣୀ ଶୁଣିଲୁ
.........ଚେଜିଲୁ ବଦନ । ୨୯ ।

ସୁଶୀଳା ନାୟକ ମୁଖ ଚନ୍ଦ୍ର ସୁଧା
ନେତ୍ର ଚକୋର ପିଇଲା
ସମ୍ଭାଳି ନ ପାରି କେବା ତୃଷ୍ଣା ହୋଇ
କବା ଉଦଗାର କଲା । ୩୦ ।

ସୁନ୍ଦରୀ ରତ୍ନ ସୁନ୍ଦର ନେତ୍ର ମାର
ପୋଛିବ ତାଳେ ପୁରୁଷ
ସଚକିତ ମୋହେ ଦୁଃଖିତ ମନରେ
ଦେଖିଲୁ ବୋଲି ହରଷ
ସରସୀ ରୁହ ନୟନ ସବୁ ଦୁଃଖ
ନ କହିଲେ ହେଁ କହିଲା
ସମଗ୍ର କରିବା ନୟନ ବେଦନା
କହିବାରୁ ତ ଜାଣିଲା । ୩୧ ।

ଶମନ ନନ୍ଦନ ମୁଖ୍ ଲେଉଟିବା
ଦାନବା ଦାନ ହିଁ କଲେ
ସନ୍ତୋଷ ହୋଇ ଦୁଇଜଣ ଦୁହିଁଙ୍କି
ଅଧର ପାନ ଭିଞ୍ଚିଲେ । ୩୨ ।

ସଜଳ ନୟନ ହୋଇବା ତେଜି ସେ
ସୁଖ ଆଲିଙ୍ଗନ କଲ୍ଲ
ସାଚ କୁମ୍ଭ କୁମ୍ଭ ଚୋ ସହ ବରଣକୁ
ସବତେ କାନ୍ତ ଧଇଲ୍ । ୩୩ ।

କ୍ଷୀଣ ଉଦରର ମନ୍ଦାକ୍ଷ ଭୂଷଣ
ଦେୂ ମାନ ଦକ୍ଷିଣା ଦେଲେ
କ୍ଷୟେୂ ହୋଇଲ ମନୁ ସବୁ ସନ୍ତାପ
ଆନନ୍ଦ ହୋଇ ରହିଲେ ।
କ୍ଷମାଶୀଳ ଜଗ- ନାଥ ପାଦେ ଭଜ
ବିଷ୍ଣୁ ଦାସ ରସ ଭଣେ
କ୍ଷେମ ଚଉତିଶା ସମ୍ପୂର୍ଣ୍ଣ ହୋଇଲ
ଦୁଃଖ ହିଁ ସୁଖ କାରଣେ । ୩୪ ।

— o —

# ଶଶିମୁଖୀ ଚଉତିଶା

( ରାଗ କାମୋଦୀ )

କ୍ରୀଡ଼ା କଗଣ୍ଡ ପରେ    କମଳମୁଖୀ ଯେନ
କଉତୁକେ କହନ୍ତି ହରି
କ୍ରୀଡ଼ା କନ୍ଦର୍ପ ଗନ୍ଧ    କୁନ୍ଦ ସୁନ୍ଦର ଦନ୍ତୀ
ଶୁଣରେ ପ୍ରାଣମନୋହାରୀ ।
ରେ ଶଶିମୁଖି !
କୁମାରୀ କାନ୍ତି ତୋହର ଦେଖି !
କେତେ ହୁଅଇ ମନ ସୁଖୀ
କହିବା ବଳୁଁରଲେ    ସତ୍ୟ ଜାଣିବ କାହିଁ
ଶୁଣରେ କଳାକରମୁଖି ।। ୧ ।।

ଖଞ୍ଜନନୟନା ତୋ    କୋଣେ ଖେଳିବା ଆଖି
କୋଳେ କୋମଳ ରଙ୍ଗ ଦିଶେ
କ୍ଷଣେ ନୟନ ପଡ଼ିଲେ    ନକ୍ଷଣ କ ଛୁଡ଼ଇ
ଚନ୍ଦ୍ରଲେ ବିବେକ ବିନାଶେ ।
ରେ ଶଶିମୁଖି !
ଖେଳାଇ ଖଞ୍ଜନ ନୟନ
ଖବର କରେ ବିଲୋକନ
ଖଣ୍ଡନେ ସୁଖାରଙ୍କୁ    ସେବା କରିବ ଫଳୁ
ସେ ଯେନ ତୋ ଏ ଦରଶନରେ ।। ୨ ।।

ଗୁଣମଣି ଗଉରୀ    ହର ଗଉରୀ ପ୍ରିୟା
ବହୁତ କାଳ ତୋତେ ସେବି
ଗଳାର ହାର ଗଣ୍ଠି    ରତନ ପ୍ରାଣ କରି
ତୋତେ ମୁଁ ପାଇଲି ସୁନ୍ଦରୀ ।
ରେ ଶଶିମୁଖି !
ଗନ୍ଧର୍ବ ସଞ୍ଜାତ ସୁକେଶୀ
ଗୁରୁତର କୋମଳ ରାଶି
ଗହନ ସମୀପକୁ    ଅନାଇ କହିବାକୁ
ସମ ନୋହେ ରମ୍ଭା ଉର୍ବଶୀରେ ।। ୩ ।।

ଘଟଣମୁଖୀ ହବେ ପୁର ଦ୍ୱାର ସୋପାନେ
ଏକାନ୍ତେ ଉଭା ହୋଇଥିଲୁ ,
ଘଷ୍ଟ ଅଙ୍ଗୁଳି ଛନ୍ଦ ଅଳସ ବଶେ ବେନି
ଭୁଜ ଉପରକୁ ଟେକିଲୁ
ରେ ଶଶିମୁଖି !
ଘଟଣ ହଶେ ବକ୍ଷ ସ୍ଥଳ
ଘନ ନିର୍ଲୋମ ସମାଂସଳ
ଘୋର ଚିକ୍‌କଣ ଗାତ୍ର ଭିନ୍ନ ଗୋଟି ସୁନ୍ଦର
କୋମଳ ମୃଦୁଳ ପୃଟୁଳରେ ।। ୪ ।।

ନଭେ ପଡ଼ିବା କ୍ଷଣେ ନତନୁ ବାଣ ଗଣେ
ହୃଦରେ କରେ କଣ କଣ
ନତନୁ ମନ୍ଦର ହିଁ ଏଣୁ ପ୍ରକାର ଶୋଭା
ଏ କଥା କଲେ ସ୍ମରଣ
ରେ ଶଶିମୁଖି !
ନ ଥିବ ଚୋହ ସମ୍ଭବେ
ନିଶ୍ଚେ ବିଶ୍ୱରୁ ଥିଲେ ପୂର୍ବେ
ନାଶ ନୋହିବ ଆଉ ସମସ୍ତ ଗୁଣେ ଶୋଭା
ଅନୁଭବେ ଜାଣିଲି ଏବେ ରେ ।। ୫ ।।

ଚନ୍ଦ୍ରବଦନା ଏହା ଶୁଣି ବେଳେ ହସିଲ
ସଙ୍କୋଚ ଜଳରେ ବୁଡ଼ିଲ
ଚଞ୍ଚଳ ନେତ୍ର କୋଣେ ଅଳପ ଅକାରଣେ
ଚନ୍ଦ୍ର ବଦନ ତଳ କଲ
ରେ ଶଶିମୁଖି !
ଚାରୁ ଲପନ ଟେକ ଚାହଁ
ଚଟୁଳ ମନ୍ଦ ହସି କହ
ଚନ୍ଦ୍ରବଦନ ଏତେ ମାତର ନୁଆଁଇବା
କେବେହେଁ ସହୁନାହିଁ ଦେହରେ ।। ୬ ।।

ଛିନ୍ନଉଦଗ ଚୋହୋ ଛିନ୍ନ ଏ କଟିତଟ
ପୃଥୁଳ ନିତମ୍ବ ସୁଶ୍ରେଣୀ

ଛତି ମଣ୍ଡଳେ ଆଉ ଠାପ୍ୟେ ନକ···ଥିବ
ଏମନ୍ତ କଳଣ ସୁଘଣି
ରେ ଶଶିମୁଖି !
ଗୁଡ଼ନ୍ତ ମନରୁ ବରସ
ଛେଛମେଲ ଫାଳି ଟଥାର ସଙ୍ଗ
ଛଇଳ ମୋହ୍ନମା କ ଅନବରତେ ଚିନ୍ତ
ଚ୍ଛିନ୍ନ କରୁ ଥାଇ ତା ଅଙ୍ଗରେ ।। ୭ ।।

ଯୁବା ମୋହ୍ନମା ଯୁବା ବପୁସେ ବଶା ଯାଇଁ
ଦ୍ୱନ ଦ୍ୱନକୁ ତୋ ପ୍ରଭିଷ୍ଟ,
ଟଯତେ ଯେତେ ପ୍ରକାରେ ଢ଼ଗ୍ଣର କହିଲେ ତା
ବର୍ଣ୍ଣିନା ନ ଯାଇ ତୋହର,
ରେ ଶଶୀମୁଖି !
ଜଗତ ମଣ୍ଡଳ ତୋ କୁଚ
କେଡ଼େ ବର୍ତ୍ତୁଳ କେଡ଼େ ଉଚ
ଯେମନ୍ତେ ଉଚ ସେନ୍ତ ସେନ୍ତ ପ୍ରକାରେ କଠିନକୁ
ବଳଇ······ଘଞ୍ଚରେ ।। ୮ ।।

ଝୁରୁ ଥାଇ ଯେ ବସି ଦିବସେ ବସି ବସି
ନୟନେ ନିଦ୍ରା ନ ମାଡ଼ଇ
ଝୀନବସନା ମତ ମନ୍ଥର ଗତି ଗୁଳ
ପୟୋଧରକୁ ଅନାଇଲେ
ରେ ଶଶିମୁଖି !
ଝଳ ଅଧର ମନ୍ଦ ହାସ
ଝରଇ ମଦନ ପୀୟୂଷ
ଝୈମତେ ଅନାଇଲେ କୋଟି ନିଧି ପ୍ରାପତ
ଜୀବନେ ଲଭଇ ହରଷ ।। ୯ ।।

ନ ଥାଇ ଦେହେ ପ୍ରାଣ ନିମିଷେ ନ ଦେଖିଲେ
ଦମ ଦମ ହୁଅଇ ହିଆ
ନାଗର ରତନ ମୁହିଁ ଅଧିକ କି କହିବ
ନୟନେ ହୋଇ ଥାଇ ଲିହା
ରେ ଶଶୀମୁଖି !

ନ ପାଇ ତୋତେ ଯେବେ ମୁହିଁ
ନିମିଷେ ହେଜ ଅନ୍ତ କାହିଁ
ନାଶ ମୋର ଦେଖିଲେ ଚାପ କରନ୍ତୁ ପରା
ଶରଦ ସୁଧାକରମୁହିଁ ॥ ୧୦ ॥

ଟେକ ଥାଇ ମୁଁ ତୋହ— ଠାରେ ମୋ ବଡ଼ ଆଶା
ତୁ ମାନମଣି ଥିଲୁ ସଖୀ ।
ଟେରା ଯେ ନେଇ ମୋହ ଘୃଣିଁଲେ ମୋହ ଯାଇ
ଏଡ଼େ ସ୍ଵଦୟା ଥିଲ ଦେଖି ।
ରେ ଶଶିମୁଖି !
ଟାଣ କଙ୍କୁଳ ଲାଞ୍ଜି ତୋର,
ଟାଳଇ ସବୁ ଦମ୍ଭ ମୋର ।
ଟିକାଏ ନ ଦେଖିଲେ ମଦନ ଜ୍ଵର ବଶେ
ହୃଦୟ ହୁଅଇ କାତର ରେ ॥ ୧୧ ॥

ଠାକୁର ଶ୍ରୀ ଚରଣେ ଏହା ଜଣାଇ ଥାଇ
ଘନସ୍ତନୀ କ ମୋତେ ଦେବ ।
ଠଣ ଦଶମୀ ବନ୍ଧୁ ଏ ଦେହରେ ଜୀବନ
କେବେହେଁ ଦଣ୍ଡେ ନ ରହିବ ।
ରେ ଶଶିମୁଖି !
ଠିକେ ଶ୍ରୀ ଜଗନ୍ନାଥ ତୋତେ,
ଠାଠିକ କରିଦେଲେ ମୋତେ ।
ଠାକୁରାଣୀ ମୁଁ ତୋତେ ଏତେ ଜଣାଇ ଅଛି
ସ୍ନେହ ନ ଛାଡ଼ିବୁଟି ମୋତେ ରେ ॥ ୧୨ ॥

## ( ରାଗ—କାଳୀ )

ଡାଳମ୍ବ ବୀଜ ଦଶନୀ ପ୍ରିୟା ବାରେ ଦେଖାଅ ମୁଖ ।
ଡଙ୍ଗର କାମ ନାନା ପ୍ରକାରେ କେତେ ଦେଉଛି ଦୁଃଖ ।
ଡୋଳା ପ୍ରଶମା କୁଞ୍ଜରଗାମୀ ତୋ ବିନୁ ଦହେ ଶଶୀ ।
ଡର ମାଡ଼ୁଛି ଦିବସ ଗଲେ ପୁଣ ହୋଇବ ନିଶି ॥ ୧୩ ॥

ଢାଳଚ୍ଛୁ ଶତ୍ରୁ ତୋ ତହ୍ନିଁ    ତୋହ ବହ୍ନିନେ ନାହିଁ ଆନ ।
ଢମକୁ କହୁନାହିଁ କରୁଛୁ    ଅନବରତେ ଧ୍ୟାନ ।
ଢାଳେ ମଦନ ବ୍ରାହ୍ମଣ ହାତେ    କରିବ ପ୍ରାଣ ଦାନ ।
ଢଳ ହଳ ମୁକୁତା ଦଶନୀ    କର ତୁ ଅବଧାନ ॥ ୧୪ ।

ଏ ଣନସ୍ତୁ କଏ ବାରତା    ଦୂତୀ ହାତରେ ଦେଲି ।
ଅଣୁ ଏ ପ୍ରତି ଉତ୍ତର ଆଉ    ଏଥକୁ ନ ପାଇଲି ।
ସେ କଞ୍ଜମୁଖୀ କାହିଁକି    ମୋତେ ଏତେ ନିର୍ଘଣ କଲୁ
ଅଣ ହେଲାରେ ପୁରୁଷ ବଧ    ମନରେ ନ ଘେନିଲୁ ॥ ୧୫ ।

ତୋ ବିନୁ ନିଜ ମୁଁ ପ୍ରାଣ    ରଖିଥିବରେ ପ୍ରାଣ ପ୍ରିୟା,
ତରଳତର ଲୋଚନୀ ତୋର    ଏତେ କଠିନ ହିଆ ।
ତରସ୍ତ ମୁଁ ଯେ ହେଉଛୁ    ଏବେ କୁଚକୁ ଗହିଁ ତୋର
ତେବେ କାତର ଏବେ    ହେଉନା ଲଜାଏ ନାହିଁ ମୋର ॥ ୧୬ ॥

ଥୋଇଥିବ ମୁଁ ତୁ    ଦର୍ପିତରେ ଆଖି ମଧ୍ୟରେ ଭରି ।
ଥିବ ତୋହର ମନରେ ମୁହିଁ    ଏତେ ମାଗଇ ଗୋଷ୍ଠ ।
ଥାଣୁ ପ୍ରସନ୍ନ ହୋଇବେ ମୋତେ    ଥିବୁ ତୁ ସ୍ନେହ କରି ।
ଥିବ ଏ କଥା ସମସ୍ତ ବଚନ    ଏହା କରିବେ ହରି ॥ ୧୭ ॥

ଦୟାନାଶିନୀ ମୋହର    ତୋହେ ବହ୍ନିନେ ଦୁଃଖ ଯେତେ ।
ଦଣ୍ଡ ଦଣ୍ଡକେ ଯେତେ    ଦୁଃଖଦ ତାହା କହିବ କେତେ ।
ଦୁଃଖନାଶିନୀ ଏ ଦୁଃଖ    ଘେନ ଯେବେ ହେ ଦୟାକର ।
ଦଶନ ଘାତ ଅଧରେ ଦେଇ    ମଦନ ଦୁଃଖ ହର ॥ ୧୮ ॥

ଧୀରଗମନୀ ଧରଣୀ ତଳ    ମଣ୍ଡଳ ବିମୋହନୀ ।
ଧଇଛୁ କର ହସି ଅନାଅ    ମୋତି ଫଳଦଶନୀ ।
ଧରନା ମୋତେ ଲାଜ ତୁ    ଥାଉ ଲାଜରେ ନାହିଁ କାର୍ଯ୍ୟ ।
ଧୃବ ଏ ନଷ୍ଟ ନାରୀମାନଙ୍କୁ    ବଜ୍ର ମଣ୍ଡଳ ଲାଜ ॥ ୧୯ ॥

ନାଟଶ୍ରମଣି ମୋହ ନିମିତ୍ତେ    ଦୁଃଖ ଯେ ଆଜ ପାଇ ।
ନେସ ପିତୁଳି ମୋହ ଠାରେ    ଯେ ମନ ବୃଦ୍ଧି ହରାଇ ।
ନିର୍ଘଣ କାମ ସାଜ—ନ ଦୁଃଖ    ଯେ ଦେଇଥିବ ତୋତେ ।
ନଷ୍ଟ ଏମନ୍ତ କଥା ପରତେ    ହେଉଁ ନାହିଁ ଯେ ମୋତେ ॥ ୨୦ ॥

ପଦ୍ମଲୋଚନୀ ପ୍ରସନ୍ନେ ବଚନେ　　ଦେଲୁ ତୁ ମୋତେ ଚାହିଁ ।
ପ୍ରଲମ୍ବ ତୋତେ କଲି ଯେ　　ପ୍ରିୟା ମନେ ଅଛି କି ନାହିଁ ।
ପୁରାଣ କଥା ଶୁଣି ସୁନ୍ଦରୀ　　ହସି ପୋତିଲୁ ମଥା ।
ପଲ୍ଲବ ଅଧରରେ ରଖିଲୁ　　କହି ଆଣିମା କଥା ।। ୨୧ ।।

ଫୁରୁଣା ହୋଇ ବୋଇଲ　　କହ କହରେ କୃଶୋଦରୀ ।
ଫୁଲ୍ଲେନ୍ଦୀବର ନୟନୀ　　ନବ ଚମ୍ପକ ଦାମ ଗୋରୀ ।
ଫାଇଁ କାଳରୁ କାହାକୁ　　ପୁଣି ଆଶ ବଢ଼ାଇ ଥାଇ ।
ଫଳିଲେ ଫଳ ବହୁତ　　ଫଶପାକେ ତାହାକୁ ପାଇ ।। ୨୨ ।।

ବଧୂବଦନୀ ତୁ ଯାହା　　ଗଣ୍ଡେ ଦେବୁରେ ଚୁମ୍ବ ଦାନ
ବିମଳ ଭୁବନମୋହିନୀ　　ବାରେ ଦେବୁ ଅଧର ପାନ ।
ବହୁ ଜନ୍ମର ତପର ଫଳ　　ଭୋଗ ହୋଇବ ତାର ।
ବସନ୍ତ ପିକ ବଚନୀ ଏହୁ　　ନାଅ ତନୁ ବିଗ୍ରହ ।। ୨୩ ।।

ଭାବିନୀ ତୋହ ମୁଖକୁ　　ଅନବରତେ ଥିବି ଚାହିଁ ।
ଭୋ ପ୍ରାଣ ସହି ! ଏ କଥା　　ବିନୁ ଆଗ ମାଖରୁ ନାହିଁ ।
ଭାଦରେ ଭଜି ଭୁଜରେ ଭିଡ଼ି　　ଭାଙ୍ଗ ମଦନ ଠାଣି ।
ଭ୍ରୂଲତା ଟେକିଲେ ହେଁ　　ଭାଙ୍ଗିବ ଦୁଷ୍ଟ କୁସୁମ ବାଣ ।। ୨୪ ।।

( ରାଗ—କଲ୍ୟାଣ ଆହାରୀ )

ମନ୍ଦ କରମ ବରଷି ମୋତିବର　　ଦଶନୀ ପ୍ରିୟା ଭୁଜଙ୍ଗସ୍ତନ ।
ମଣୁଛି ମନେ ହେମ ଗିରିବର　　ତୋ କୁଚକୁ ନୁହେ ସମାନ ।
ମହୀଳା ମାଡ଼ି ବସିଛି ଭୁଜମୂଳ ।
ସୁନାର ସୂତାକୁ ମଧ୍ୟ ଠାବ　　ନାହିଁ ଏମନ୍ତ ଗହନ ପୃଥୁଳ ।। ୨୫ ।।

ଜୀବନ ସଫଳ ହୋଇଲା ସଜନୀ;　　ଦେଖେହ ଲଗିଲା ଏହି ସ୍ତନ
ଯାବକ ଜୀବକୁ ଭୟ ପାସୋରିଲା　　ଏବେ କି କରିବ ମଦନ,
ଜଳଜନୟନୀ ଯାହାକୁ ପ୍ରସନ୍ନ
ଜୀବନ ଯିବାଯାଏ ଆଉ ଭୋଗିବାକୁ　　କରି କାରଣେ ଦେବ ମନ ।। ୨୬ ।।

ରମଣୀ ରତନ ଚୁମ୍ବ କରି    ତୋତେ କେଣେ କରିଥିବ ମଣ୍ଡନ,
ରତ୍ନମାଳ କରି କଣ୍ଠେ    ଖଞ୍ଜିଥିବ କରିଥିବ ହୃଦେ ଚନ୍ଦନ ।
ରଖିବ ତିଳକ କରି ଲଲାଟରେ,
ରଖିଥିବ କଥା ଦାସ ପ୍ରାପ୍ତ    ହୋଇ ସେବିଥିବ ତୋର ପାଶରେ ॥୨୭॥

ଲବଣ୍ୟ ଲପମା ଅଲପ    ହସିବାବେଳେ ଯେ ସୁନ୍ଦର ଅଧର,
ଲଳିତ ଅଙ୍ଗ ଯେ ଦିଶଇ    ଅନାଇ ଧଇର୍ଯ୍ୟଧରୁ କାହା ସ୍ଥିର ।
ଲୋଭ ଯେ ଦେଖିଲେ କରିବ ଅମର,
ଲଗି ଭେଳକ ମୂରୁଚ୍ଛି ନ    ପାରିବେ ନର ସ୍ଥିର କେତେ ମାତର ॥୨୮॥

ବିଧୁବଦନ ! ମୁଁ ଏତେ    ମାଗୁଅଛି ତୁ ନ ଚାହିଁବୁ ମନ୍ଦ ହସି,
ବିଧାତା ସଂସାରସାର ଶିଳ୍ପିକରି    ତୋତେ ଗଢ଼ିଲାରେ ସୁକେଶି ।
ବାଳାରେ ! ତୁ ଅବା ବାରେ ଅନାଇଁ
ବିଷମ ବିଶିଖ ସାଟକାଣ୍ଡ    ମୁଖୁଁ ଆଉ ତୁ ନ ପାରିବୁ ଜାଇ ॥ ୨୯ ॥

ସଘନ ଜଘନ ସୁନ୍ଦର ଦିଶଇ    ସରୁ ଶାଢ଼ୀ ବେଶ ବଶରେ
ସ୍ୱରୂପେ ଉପମା ଦେବାକୁ    ଏ ମୋର ବର୍ଣ୍ଣି ନୋହଇ ବଚନରେ ।
ସୁନ୍ଦରୀ ସରୁଶାଢ଼ୀରେ କ୍ଷୀଣ କଟି ।
ସଜାଡ଼ି ଭିଡ଼ି ବାନ୍ଧିବା    ଅନାଇଲେ କାମ ପକାଇ ଦିଅ କାଟି ॥୩୦॥

ସମକେ କରିବ ତୋ କୋଣ    ସୁଶ୍ରୋଣୀ ତୋ କାମ କୋଠୀ ଜାଣ,
ସୁମୁଖେ ଚାହିଁଲେ କୋଟି କୋଟି    ସୁଧା ବୃଷ୍ଟି କରିବ ସୁରଗଣ ।
ସୁନ୍ଦରୀ ସପତବାର ଦାହ ସୁନା ।
ସୁନ୍ଦର କାନ୍ତି ସମଅର୍ଥ ନିମିତ୍ତେ    ଧାତା ଯୋଡ଼ିଲା ବ୍ୟର୍ଥ ସିନା ॥ ୩୧ ॥

ସରୁବାସ ଅଙ୍ଗେ ଗୁରୁ ପୟୋଧର    .......... ବଡ଼ ଦିଶଇ
ସମ୍ମୁଖେ ଉପମା ଦେବାକୁ ସେ    ଶୋଭା ବଚନେ ବାହାର ନୁହଇ,
ସଖିରେ, ସାନ ଗୋଟି କେବା ତୋହର
ସମସ୍ତ ଅପମାନେ ଶୋଭା    ଦିଶିଲେ ସଂସାର ଭିତରୁ ବାହାର ॥୩୨॥

ହରିଣ ନୟନୀ କାନ୍ତ ଗୃଣ୍ଠୂ ଶୁଣି ହରି ସେ କଲ ଆଲିଙ୍ଗନ,
ହସ୍ତରେ ଚିବୁକ ଧରି ରସେ ମଣ୍ଡି ଅଧରେ ଦେଲକ ଚୁମ୍ବନ ।
ହରି କି ଗଉରୀ ଅଙ୍ଗରେ ଧଇଲେ ।
ହଜଇ ହୃଦୟୁ ସମସ୍ତ ଗିଆନ ଖାସା ଆଲିଙ୍ଗନ ଗାଇଲେ ।। ୩୩ ।।

କ୍ଷମେ ଏ ଚଉତିଶା ଗୀତ ଭଣିଲେ କବି ମୁକୁନ୍ଦ ଦିଶାକର,
କ୍ଷମାସୀନ ପୁରୁଷୋତ୍ତମ ମଙ୍ଗଳା ତା ପ୍ରିୟ ବକ୍ଷୀର କୁମାର,
କ୍ଷମେଣ ଗୋପାଳ ନାମେ ମହାକ୍ଷର୍ଣ୍ଣୀ
କ୍ଷୁଆ କାହ୍ନୁ କୁଅଁର ସ୍କୁରୁ ବଦନ୍ତି ସୁଖେ ଯେହ୍ନ ଗୀତ ଭଣନ୍ତି ।।୩୪।।



# ଭ୍ରମରବର ଚଉତିଶା

( ରାଗ - କାମୋଦୀ )

କିଶୋରୀ ଚନ୍ଦ୍ରମା ମୁଖୀ		କୋଟି ବ୍ରହ୍ମାଣ୍ଡେ ନ ଦେଖି
କେଉଁ ଭାଗ୍ୟରେ କର ନ ଧଇଲି		ଏକାନ୍ତ ଥାନରେ ଦେଖି
କି ବନ୍ଧୁ ଆରେ ॥ ୧ ॥

ଖାସି ଉଡୁଥିଲା ବାସ		ଖୋସି ହେଉଥିଲା କେଶ
ଖଣ୍ଡ ଉପଫଳେ ଦେଖି ନ ଦେଖିଲି କୁଚ କନକମସ୍ତୁ ସେ
କି ବନ୍ଧୁ ଆରେ ॥ ୨ ॥

ଗଲା ସେ ସମୟ କାହିଁ		ଗୁହାରି କରନ୍ତୁ ଯାଇ
ଗଙ୍ଗାଧର ଶପୁ ଲପୁ ହୋଇ ମୋତେ ଆଜ କେବା ଧରନ୍ତା କାହିଁ ।
କି ବନ୍ଧୁ ଆରେ ॥ ୩ ॥

ଘଟଣ କବରୀ ଭାର		ଘନ କୁନ୍ତଳ ତାହାର
ଘେନନ୍ତୁ ମାନଆ ଘଡ଼ ଫୁଲଗନ୍ଧ ତା ଲୁହିଁ ମୋହ ହେବେ ଘର
କି ବନ୍ଧୁ ଆରେ ॥ ୪ ॥

ନାଳ କୁଟିଳ ଅଳକା		ନନ୍ଦେ କି ଭ୍ରୂ ଧନୁରେଖା
ନିର୍ମଳ ଚନ୍ଦ୍ରବଦନେ ରଞ୍ଜନ ବା ଶିଶୁ ଚକୋର ପାଳକା
କି ବନ୍ଧୁ ଆରେ ॥ ୫ ॥

ଚତୁରୀ ନବ ବୟସୀ		ଚଞ୍ଚଳ ଖଞ୍ଜନ ଦୃଶୀ
ଚନ୍ଦ୍ରାର୍ଦ୍ଧ ଭାଲ ଲୋକ ଚିତ୍ତ ଘେନନ୍ତୁ ଲୁହିଁ ପ୍ରଚେତହୋଇ ଆସି
କି ବନ୍ଧୁ ଆରେ ॥ ୬ ॥

ଛଇଳମଣିକି ଦେଖି		ଚକ୍ଷଣେ ହେଲି ମହାସୁଖୀ
ଛୁଡ଼ାଯିବାକୁ ମୋ ମନ ବଦଳିଲା ମନକୁ ନୟନ ସାକ୍ଷୀ
କି ବନ୍ଧୁ ଆରେ ॥ ୭ ॥

ଯୁବତୀ କୁଳ ରତନ		ଜୀବନ ବନ୍ଧୁ ମୋ ଧନ
ଜବାଅଧରୀ ନୟନ କୋଣେ ଠାରି ସଙ୍ଗେ ସଙ୍ଗେ ତ ନେଲା ମନ
କି ବନ୍ଧୁ ଆରେ ॥ ୮ ॥

ଝମକ ବଳା ତା ପାଦେ ଝମକ ଝୁଣ୍ଟିଆ ବାଦେ
ଝସକେତନ ଏଣ୍ଡ୍ର ଧେନସିନା ନାଗିଥାଇ ମୋତେ ବାଜେ
କ ବନ୍ଧୁ ଆରେ ।। ୯ ।।

ଞୟନ ଭଙ୍ଗୀ ସମାନ କାହିଁ କାହିଁ ଆଉ ମୀନ
ନତନୁ ଞାଟମଧ୍ୟରେ କ ନାଚୁଥା ବେନି ଖଞ୍ଜନ
କ ବନ୍ଧୁ ଆରେ ।। ୧୦ ।।

ଟେକ ତପସ୍ୟା ପ୍ରାବଳେ ଟଙ୍କଧର ସେବା ଫଳେ
ଟାଣ ପୟୋଧରୀ ଅନୁରାଗ କରି ଅନାଇଲା ମାତେ ଟୋଳେ
କ ବନ୍ଧୁ ଆରେ ।। ୧୧ ।।

ଠାରକା ହଂସୀ କ ଅଛୁ ଠୁଳେ କୁହକ ମନ୍ତ୍ରି
ଠିକେ ନାଚ ଯେଉଁ ଚୁମ୍ବନ ଦେଲା ସେ କହ୍ନିବା ଭଙ୍ଗୀରେ କଛି
କ ବନ୍ଧୁ ଆରେ ।। ୧୨ ।।

ଡୋଳା ବାଲୁତ କୁରଙ୍ଗୀ ଡମ୍ବରୁ ମଧ୍ୟମା ଭଙ୍ଗୀ
ଡର ମାଡୁଅଛି କୁଚଭାର ଯେହ୍ନେ କ୍ଷୀଣ କଟି ଯିବ ଭାଙ୍ଗି
କ ବନ୍ଧୁ ଆରେ ।। ୧୩ ।।

ଢାଳେ ସେ ଯୁବତୀ ବର ଢଳଢଳ ନେତ୍ର ତାର
ଢମକୁ କାହିଁ ଢାଳ ଲୁହାଁଲେ ସେ ଢଳପଡ଼ନ୍ତେ ଶଙ୍କର
କ ବନ୍ଧୁ ଆରେ ।। ୧୪ ।।

ଅତୁଳ ଚନ୍ଦ୍ରବଦନୀ ଅତ୍ତଟପ୍ତୁ କୁଟେନ ଯେନ
ଅମ୍ବୁଜ ନୟନୀ ନୟନରେ ଦିନେ ନ ଦେଖିଥିବ ମେଦନୀ
କ ବନ୍ଧୁ ଆରେ ।। ୧୫ ।।

ତରୁଣୀ ନବ ବୟସୀ ତାଳସ୍ତନୀ ମଦାଳସୀ
ଭୁଶତ୍ତେ ମୋ ମନମୀନକୁ ନେଲା ସେ ଲଗାଇ ପ୍ରେମ ବଡ଼ଶୀ
କ ବନ୍ଧୁ ଆରେ ।। ୧୬ ।।

ଥାଉ ତା ନିତମ୍ବ'ଛବି ଥିଲା ବାନ୍ଧି କେଉଁ ମାଳ
ଥାଣୁ ସତେ ମତେ ଜରନେବ ଯେତେ ଥରେ ମୋ କରେ ଫେଡ଼ିବ
କ ବନ୍ଧୁ ଆରେ ।। ୧୭ ।।

ଦେହ ତ ଶିରୀଷ ଫୁଲ        କଳାମେଘୀ ପିନ୍ଧିଥିଲ
ଦେହକ ହାଟକ ପରିପ୍ରେକ ତାର ଦିଶୁଥିଲା ମହା ଡୋଗ ।
କ ବନ୍ଧୁ ଆରେ ॥ ୧୮ ॥

ଧୀର ଗମନା ଅବଳା        ଧୃତ ନାଶିନା ସୁଶୀଳା
ଧଗ୍ର ମଣ୍ଡନା ···        ··· ପୁଷ୍ପମାଳା
କ ବନ୍ଧୁ ଆରେ ॥ ୧୯ ॥

ନୁହଇ ଆନସୁବତୀ        ନଷ୍ଟେ ଜାଣିଲ ସେ ରତି
ନୋହିଲେ କାହିଁକି ଶୁଣିଲେ ତାହାକୁ ମାରୁଅଛି ରତିପତି
କ ବନ୍ଧୁ ଆରେ ॥ ୨୦ ॥

× × × ×

ଫଳେ ମୋ ଭାଗ୍ୟ ଭଣିବ        ଫୁଲ ଧନୁ ନ ହସିବ
ଫୁଲ ଧନୁଧର ଫୁଲହୋଇ ବିଧାତା ସେବେ ନାଶିବ ।
କ ବନ୍ଧୁ ଆରେ ॥ ୨୨ ॥

ବାଣୀ କଟୀ ଏଣୀ ଦୃଶୀ        ବନ୍ଧକର ନେଲ ହସି
ବକୁଳ ବଦନୀ ବଜ୍ରୀ ପ୍ରବେଶେ ସଦନରେ ଗଲ ପଶି ।
କ ବନ୍ଧୁ ଆରେ ॥ ୨୩ ॥

ଭାଗ୍ୟ ମୋହର ଯେ କାହିଁ        ଭେଟ ହେବ ତାର କାହିଁ
ଭାଗ୍ୟ ହିଁ କେମନ୍ତେ ନୁହଇ କୃତାର୍ଥ ହୋଇଲେ ମନ ନାଚଇ
କ ବନ୍ଧୁ ଆରେ ॥ ୨୪ ॥

ମନ୍ଦିରେ ବଚନ ରଥ        ମଣ୍ଡି ଆସୁଥିଲ ପଥ
ମହାଦେବ ସଙ୍ଗେ ମହାରଣ କରି ମହାରଥ ମନମଥ
କ ବନ୍ଧୁ ଆରେ ॥ ୨୫ ॥

ଯାହା ମୋ ମନରେ ଥିଲ        ଜାଣି ବିଧାତା କ କଲ
ଯତନ କରି ସେ ଜଗତମୋହିନୀ ମୋତେ କାହିଁକି ନ ଦେଲ
କ ବନ୍ଧୁ ଆରେ ॥ ୨୬ ॥

ରଖୁ ନାହିଁ ରତିପତି        ରହିବି କେମନ୍ତେ କ୍ଷିତି
ରମଣୀ ମଣିକୁ ପାଇବା ଯାଏ ମୁଁ ରତି ନ କରିବି ରତି
କ ବନ୍ଧୁ ଆରେ ॥ ୨୭ ॥

ଲେଖିଥିଲା ଧାତା ଭଳେ ଲାଗିବ ରତି ତା ଭୁଲେ
ଲୋଭ କରଅଛୁ ପାଇବା ଯାଏ ମୁଁ ପାଇବାକୁ ଯୋଗଥିଲେ ।
କ ବନ୍ଧୁ ଆରେ ॥ ୨୮ ॥

ବଡ଼ ବୋଲନ୍ତି ଯୁବତି ବଡ଼ କି ଇନ୍ଦ୍ର ସମ୍ପତ୍ତି
ବଡ଼ ଏ ଜଗତେ କାମ ଶ୍ରୀମନ୍ତ ସେ ରସିକା ଯୁବତି ରତି
କ ବନ୍ଧୁ ଆରେ ॥ ୨୯ ॥

ସ୍ୱୟମ୍ଭୂ ଯେବେ ହୋଇବ ସ୍ୱସଖୀ ଦେଖି ହୋଇବ
ସରସୀ ମଣ୍ଡନୀ ଆନନ୍ଦ ମୋଠାରେ ସ୍ୱୟମ୍ଭୂ ଯେବେ ହୋଇବ ।
କ ବନ୍ଧୁ ଆରେ ॥ ୩୦ ॥

ସତେ କି ଧନ ଆସିବ ସତ୍ୱରେ ଶୃଙ୍ଗେ ବସିବ
ସାଙ୍ଗୋପେ ଜାଳ କି ଦଣ୍ଡେ କରିବ ଧନ ମୋ କୋଳେ ବସିବ ।
କ ବନ୍ଧୁ ଆରେ ॥ ୩୨ ॥

× × × ×

ମୋ ଦୁଃଖ ବହିବ,
ହେଲେ ତୋତେ ଏକ କହିବୁ ଏତିକ ତୋହର ଯଶ ରହିବ !
କ ବନ୍ଧୁ ଆରେ ॥ ୩୩ ॥

କ୍ଷୋଭ କଲେ ଆଉ କାହିଁ କ୍ଷିତି ମଣ୍ଡନୀ କି ପାଇ
କ୍ଷେମେ ନୃସିଂହ ଭ୍ରମରବର ବୋଲେ କ୍ଷଣେହେଁ ଛାଡ଼ିବ କାହିଁ
କ ବନ୍ଧୁ ଆରେ ॥ ୩୪ ॥



# ପଂଡିତବୋଧ ଚଉତିଶା

( ରାଗ—ଶ୍ରୈଖୀ )

କାଞ୍ଜ ଲୋଚନା ଅଗ୍ରତେ          କହେ କାନ୍ତ ଗୃଷ୍ଟବାଣୀ
କି କାରଣେ ମୋରେ ମାନ କରିଛୁ ରାମା

କୁରଙ୍ଗଧର ବିପକ୍ଷ          କରିବ ମୋ ତନୁ ନାଶ
କମଳସୁତ ବଦନୀ କର ତୁ କ୍ଷମା
କାଳ କାଳ କାଳ ଏ ଘନ
କେସନେ ତୋ ସଙ୍ଗବିନୁ ଥିବ ଜୀବନ ॥ ୧ ॥

ଖଞ୍ଜନଲୋଚନ ବାଳୀ          ଖେଦଭରେ ଅରୁଣୀତ
ଖଟାଙ୍ଗଧର ରିପୁର ଶର ସୋଦର

ଖଣ୍ଡି ଛି ବିରହୀ ତନୁ          ଅରୁଣ ଲୁଟିଲା ତେଣୁ
କ୍ଷୀଣ କରୁଅଛି ଦେଖି ମୋର ଶରୀର
ଖଗପତି ସ୍ୱଚର ଖଗ
କ୍ଷଣକେ ଦେବ ସେ ମୋତେ ଚତୁର୍ଥଭାଗ ॥ ୨ ॥

ଗୋଧର ସୁତ ଗମନୀ          ଗିରିଜା ନାଥ ମୋହିନୀ
ଗୋକର୍ଣ୍ଣ ଭକ୍ଷ ଅନଳ ତୋ ବିନୁ ହେବ,

ଗୋପତି ଧର ଗୋ ମୋର          କରିବ ତନୁ ବିଧୁର
ଗାଢ଼େ ଆଲିଙ୍ଗନ ଦେଇ ରଖ ଜୀବନ
ଗରବ ମୁଁ କରଇ ତେବେ,
ଗୁଣମଣି ମୋର କୋଳେ ଥାଉ ତୁ ଯେବେ ॥ ୩ ॥

ଘେନ ମୋହର ବିନୟ          ଘାରିହେଉଛି ହୃଦୟ
ଘାତ କରୁଅଛି ମର୍ମେ ମଦନ ଅସ୍ତ୍ର

ଘନସାର ଗନ୍ଧସାର          ସୁଗନ୍ଧ ମଳୟାନିଳ
ତୋର ବିନୁ ଏହୁ ସୁଖ ନ ହୁଏ କେହି
ଘନ କୁସୁମଜ ନୟନୀ
ଘୋର କାମ କବଳରୁଁ ତାର ସଜନୀ ॥ ୪ ॥

କନ୍ଦ୍ରଚନ୍ଦ୍ର ସୁବଦନୀ ସମ୍ପୂର୍ଣ୍ଣ ଚନ୍ଦ୍ରବଦନୀ
ମୃଦୁଳ ଚନ୍ଦ୍ରଭାମିନୀ ବରବର୍ଣ୍ଣିନୀ

ନତନୂ ଚନ୍ଦ୍ରଦାମରୁ ବାରେ ଉଦ୍ଧତ ରମ୍ଭୋରୁ
ମନମତ ପିକବାଣୀ କହ ଶ୍ରବଣ
ନୀରଜ ନନ୍ଦନ ନନ୍ଦନ
ନରଚେ କରୁଛି ଜନକକୁ ଉଛନ୍ନ ॥ ୫ ॥

ଗୃହିଁ ନୟନ କୋଣରେ ଶତ୍ରେ ଦୟାବନ୍ଧ ମୋରେ
ଚୁମ୍ବନ ଦାନ ଦେଇଣ କର ତୁ ରକ୍ଷା

ଚନ୍ଦ୍ରବଦନକୁ ତୋର ପାଳ ସ୍ୱଇଚ୍ଛା
ରୂପ ଶର ଗୟୁ ସ୍ୱଷ୍ଟରେ
ଚଞ୍ଚଳନୟନୀ ଦେଲୁ କେଉଁ ଦୋଷରେ ॥ ୬ ॥

କ୍ଷୀଣ ତୋର ଗୃରୁକଟି ଛଞ୍ଚମେ ଧାତା ସୃଜଟି
କ୍ଷୀଣୋଦଗ୍ର ତୋ ଭ୍ରୂଲତା ··· କଲା

ଛଟକେ ଦ୍ୱାଦଶେ ବନ୍ଧ ଲୋଚନ ତା ଅଛି ବନ୍ଧ
ଛଳେ ପୁଣି ଏକାଦଶ ସ୍ତନ ବନ୍ଧିଲା
ଛଇଳ ତୁ ଷଷ୍ଠ ରତନ
କ୍ଷିତିରେ ତୋର ସପ୍ତମ କାହିଁରେ ପ୍ରାଣ ॥ ୭ ॥

ଜଳଦ ସଜ ଲପନୀ ଦଶମେ ଶାନ୍ତିତ ପୁଣି
ଯତନେ ଆଠ ସମାନ କଟେଛି ଘାଟ

ଯେବେ ତୁ ତୃଷ୍ଣାୟୁ ଭାବେ ନ ଭଜବୁ ମୋର ପ୍ରିୟା
ଯୁଗତେ କାନନ୍ଦ ଆଦ୍ୟ ଦ୍ୱିତୀୟ ମତ
ଜଳଜଭକ୍ଷୀ ତୋ ବନୁ ଜାଣ
ଜଳହୀନ ଗୃଷ୍ପ୍ରାୟେ ହେବ ମୋ ପ୍ରାଣ ॥ ୮ ॥

ଝାଉପକି ଶପୁ ନେହୀ ଝଟକ ଦାମିନୀ ଗାହୀ
ଝସକେତନ ମୋହନୀ ଲାବଣ୍ୟ ପାହୀ ।

ଝଳ ପଥମ ଅଧର ଦ୍ୱିତୀୟ ଗୃହ ବଦନ
ଝାଉଁଳାରେ ହୁଅ ମୋତେ ତୃତୀୟ ମୂର୍ତ୍ତି ।
ଝଟତ ତୁ ନ କର ମୋତେ
ଝାମ୍ପି ତୁ ଅନଙ୍ଗ ଏଗା ଅଷ୍ଟମ ସମରେ ।। ୯ ।।

ନୂଆ ତୁ ସପ୍ତମ ମତ୍ତ ତୁ ମୋର ଜୀବ ଯୁବତୀ
ନଚତେ ତୁ ବାମା ବର ଚତୁର୍ଥ ମତ୍ତ
ନବୀନ ପଞ୍ଚମ ସଖୀ ଅନଙ୍ଗ ଜୟ ନବମ
ନୂତନ କେତକୀ ନନ୍ଦେ ତୋ ତନୁ କାନ୍ତି
ନେବ ପ୍ରିୟେ ଜୀବ ମୋହର
ନରେ ଷଷ୍ଠ ଶୀର୍ଷ ଶତ୍ରୁ ଶତ୍ରୁର ଶର ।। ୧୦ ।।

ଟେକ ଗୁହାଁ ଚନ୍ଦ୍ରମୁଖ ଟାଳ ମୋ ଅନଙ୍ଗ ଦୁଃଖ
ଟଙ୍କାଚନ୍ଦ୍ରି କର୍ଣ୍ଣତଟେ ଟେକ କମାଣ
ଟେକ ତୋ ଯୌବନ କୁମ୍ଭ ଟେଳି ମୋତେ କର ଦମ୍ଭ
ଟାଳମେ ମଦନରାଜା ଦ୍ୱିତୀୟ ବାଣ
ଟଙ୍କଧର ଶତ୍ରୁ ଶତ୍ରୁର
ଟାଣ ତା ଶତ୍ରୁ ପୁତ୍ରର ମଣ୍ଡନୀ ବର ।। ୧୧ ।।

ଠାର ଯେ ନୟନେ ମୋତେ ହନେ ହସି କହୁଅଛୁ
ଠିକେ ତା ଚେଳିଲୁ କା କେ ରମଣୀମଣି ।
ଠାଠିକେ ଦଶନ ଛଦ ଦଶନେ ଧରି ଭୁରତ
ଠୁଳେ ତୋ ଅମିୟ ଜୁରିକଲ ରମଣୀ
ଠଣସୁମା ହାରଙ୍ଗ ପତ୍ତ
ଠାଠିକେ ହରୁଛୁ ମୋର ଶାନ୍ତ ସ୍ନେହୀ ।। ୧୨ ।।

ଡମ୍ବରୁ ମୋହିନୀ ଡଙ୍କ ହେମ ସୁବଦନୀ
ଦ୍ୱିତୀୟମୁଖ ମୁଖୀ ତୁ ପ୍ରଥମ ଗନ୍ଧନୀ

ଡହୁଛୁ କାମ ତୃତୀୟ ସମାନ ହୋଇ ନର୍ଦ୍ଧେୟ
ତୋ କୁଚ ଚତୁର୍ଥ କେଶ ରଖୁ ଭ୍ରମଣୀ
ଡୋଳେ ଦେଖ ତୋର ସ୍ୱଜନ ।
ଡ଼ଙ୍ଗରେ ସାରଙ୍ଗଶାଖା ଦେଲୁ କଷଣ ।। ୧୩ ।।

ତମାଳ ନୁହେ ମୋ ବାଣୀ ତଳବ ଗ୍ରୀବ ମିଳଣୀ
ତାଲେ ମୋରେ ଅଷ୍ଟସମ ସପ୍ତମ ସ୍ୱରୂପ

ଡ଼ମେ ପଞ୍ଚମ ତୃଷ୍ଣାପ୍ତ ହୋଇ ଦହୁଛି ମୋ ଦେହ
ଶର ଧାରି ଋତୁପତି ତୁ ମୋହ କୂପ
ତାଲେ ମୁଁ ତୋ ପଦେ ଶରଣ
ତେଉ ମୃଗଜଳ ସମ କେଉଁ କାରଣ ।। ୧୪ ।।

ଅମ୍ବୁଜ ଶୁକ ··· ··· ବାହାନ ଅଥିର ମୋର
ଅନୁକ୍ଷଣେ ଭ୍ରମୁଅଛି କବ ଧଟେଷ୍ଟ

ଅତନୁ ଷଷ୍ଠ ସ୍ୱରୂପ ମୋ ଜନ ଲବଣୀ ରୂପ
ତୃଷ୍ଣାପୁରେ ପକାଇଣ ଦେଲା ବିପତ୍ତି
ଅମ୍ବୁସୁତ ବନ୍ଦେ ଅବଶ
ଅମ୍ବୁଜ ନନ୍ଦନ ସୁତା ଜାଲ ମନ୍ଦୃଶ ।। ୧୫ ।।

ତୁ ଗଉଷ କୋମଳାଙ୍ଗୀ ଧୁର ··· ··· ଟାଙ୍ଗୀ
··· ··· ··· ··· ଘରୁ ଅନଳା

ତୁ ଚ କୁବଳୟ ମତି ଧପନ ନୋହୁ ସୁଗତି
ସମ୍ପୂର୍ଣ୍ଣ କଳା ବଦନୀ ତୁ ମୋର ବାଳା
ନିଲୋଚନ ଶପଥ ପକ୍ଷ
କେତାହର ହେବାର ସମା ନୋହିଲ ଲକ୍ଷ ।। ୧୬ ।।

ସ୍ଥୂଳ ତୋ ଗୁରୁ ନିତମ୍ବ ହରଇ ଶମ୍ଭୁର ଦମ୍ଭ
ଥାନକଲ୍ ତଥିପରେ ସିନ୍ଦୂର ଚର

ଥକାଇଲୁ ତୁ ତା ଜାଣି ଥିଲ ଏଣୁ ନୋହେ ଏଣୀ
ସାରଙ୍ଗ ପାଶରେ ଥାଇନ ତେଜେ ଦର
ଥୂଳ ସ୍ତନୀ ବାଟରେ ଜଗର
ଥିତ ଜୀବ ନାଟେଶ ମୋର କେଳତବର ।। ୧୭ ।।

ଦନ୍ତ ହାଟକ ବରନୀ ସ୍ୱୟମ୍ଭୂ ମନବନ୍ଧନୀ
ନିଜ ପୃଥୁଳ ଉରୁଙ୍କ ସୁରୁରୁ ସ୍ତମ୍ଭ ।

ଦନ୍ତୁଷ୍ଟି ଶିବ ତିଳକ          ସମାନ କାମ ସାୟକ
ଦର ଦର ଝଷୁ ଧ୍ୱଜ ଲୋଚନା ଜାଣି
ଦିଅ ମୋରେ ଦୃଢ଼ ଆଶ୍ୱାସ
ଦୟାନିଧି ରଖ ମୁଁ ତୋ ଦାସର ଦାସ ।। ୧୮ ।।

ଧନ୍ୟ ଧନ୍ୟ ଧନମଣି          ଧୂର୍ଜଟୀ ତପ ନାଶିନୀ
ଧରଣୀଧର ବକ୍ଷ ସ୍ୱରମଣ୍ଡନୀ
ଧରନା ମୋତେ ନିର୍ଦ୍ଦୟ          ଧ୍ୱଂସି ହେଉଛି ହୃଦୟ
ସାରଙ୍ଗ ଧାରଙ୍ଗ ଧର ଧୁନନ୍ତି ପୁଣି
ଧ୍ୱଂସୁଛି ବିତାପ ସମୂହ
ଧରାବଳୟ ମଣ୍ଡନୀ ହୁଅ ସଦୟ ।। ୧୯ ।।

ନେବ ପରାଣ ନିତାନ୍ତ          ହେଲା ସୂତ କି ନ ଜାଣୁ
ନାହିଁ ତୋର ବିନୁ ମୋର ଆନଶରଣ
ନକର ଦମ୍ଭୋଳି ନିଆ          ତୁ ମୋହର ପ୍ରାଣପ୍ରିୟା
ତାପଜନେ ଏ ଉଚିତ ନୋହେ ତୁ ଜାଣ
ନିଳକ୍ଷ ଏ ମୋର ଜୀବନ
ନ ଯାଇ କମ୍ପାଇ ଦେଖି ତୋର ବମନ ।। ୨୦ ।।

ପଞ୍ଚଶର ପଞ୍ଚଶର          ପଞ୍ଚପ୍ରାଣ ହରେ ମୋର
ପ୍ରସନ୍ନ ବଦନ ଟେକ ବାରେକ ଗୁହଁ
ପଞ୍ଚାନନ ଈଶ ସେବକ          ପରମାନନ୍ଦଙ୍କୁ ଭାବ
ପଶିଛି ଶରଣବନ୍ଧ ନିର୍ଦ୍ଦୟ ନୁହ,
ପକ୍ୱ ବିମ୍ବାଧରୁ ତୋ ସୁଧା
ପ୍ରସନ୍ନ ବଦନେ ଦିଅ ଅଟୁ ତୁ ବୁଧା ।। ୨୧ ।।

ଫାଇ ହେଉଛି ବିରସ          ନୁହ ତୁ ବିରସ ରସ
ଫୁଟୁଅଛି ହୃଦ ମୋର କୁସୁମଶରେ ।
ଫାନ୍ଦ ତୋ ନୟନ ବେନି          ମୋ ମନ ଏଥି ହରିଣୀ
କରି ବାନ୍ଧିଲୁ ମଦନକେଳି ଶରରେ ।
ଫୁଲଶର ସୁତ ଭାବନା
ଫୁଟେ ଦେଖି ଦୟା ମୋରେ କର ସଜନୀ ।। ୨୨ ।।

ବିଶ୍ୱକେତୁ ବିଶ୍ୱଯୋନି    ଶମ୍ଭୁ ବିଶ୍ୱଜ ମୋହିନୀ
ବିଶେଷେ ତୁ ଅଟୁ କଳକଣ୍ଠ ଗମନୀ ।
ବିଧୁକ ସ୍ୱରୁ ଅଧିକ    ବାଣୀ କୋକିଳ ମାଧୁରୀ
ବିଷମ ବିଶିଖ ବିଶଦର ହାସିନୀ
ବିପତ୍ତି ପତିର ଖବନୀ
ବିଶେଷେ ତୁ ରତିକଳା କଳା ଧାରିଣୀ ॥ ୨୩ ॥

ଭ୍ରୁବ ଭ୍ରୁବ ଭ୍ରୂମଣ୍ଡନୀ    ସୁଭ୍ରମ କୁଚ କୁମ୍ଭିନୀ
ଭୃତ୍ୟଜନଠାରେ ତୁ ନିରାଶ ନ କର
ଭ୍ରମ ବିପକ୍ଷ ଖଞ୍ଜନା    ଭୂକ୍ଷେଶ ତପ ଖଣ୍ଡନା
ଭକତି ତୋ ପାଦେ ହୋଇ ଜନ୍ମକୋଟିର
ଭ୍ରମେ ଭ୍ରମ ବହ୍ନି ମୁଁ ତୋର
ଭିନ୍ନ କରିବା ହୃଦୟୁ ନୁହେଁ ବେଭାର ॥ ୨୪ ॥

ମହୀମଣ୍ଡଳ ମଣ୍ଡନୀ    ମାଧବ ସଖା ବଦନୀ
ହିଂସୁ ତୋ ବାଣୀ ବୋଲି ଭଜିଲି ତୋତେ,
ମହତ ତୁ ପ୍ରଥମରେ    ଆଶ୍ଲେଷ ତୁ ଦଅବାରେ
ମଞ୍ଜୁମ ସମସ୍ତ ନ ଲଗାଇ ହୃଦରେ
ମୋହିନୀ ତୁ ଅଟୁ ଷଷ୍ଠୁର
ମୋତେ ନାଶୁଅଛି କାମ ବାରେ ଉଦ୍ଧର ॥ ୨୫ ॥

ଯୋଗେନ୍ଦ୍ର ଯୋଗ ଭଙ୍ଗିନୀ    ଚତୁର୍ଥ ଗ୍ରହ ବଦନୀ
ସପ୍ତମ ସଦୃଶ ତୋରବିନ୍ଦୁ ରଜନୀ
ଜୈବାତୃକ ମୋତେ ଜାଣ    ତୃଷ୍ଣାୟୁ ସମାନ ପୁଣ
ଜାଳୁଛି ମୋ ତନୁ ତନୁ କର ଖବନୀ
ଯୁବାମଣି ତୁ ମୋର ହାର
ଜାଣ ଏ ତୋ ବିନୁ ବିଶ୍ୱ ମଣିଳକାର ॥ ୨୬ ।

ରମଣୀ ରତନ ମୂର୍ଦ୍ଧ୍ନି    ତୋର ଅନୁ .... ...
ପ୍ରଥମ ସମ୍ମତି ମୋର ମନେ ଅବଳା,

ରୁହାଇ ଛିଡ଼ିରେ ଘଣ ମୁଁ ତୋହର ନଜ ଦାସ
ଦୃଢ଼ ଅଚନୁଜ ଶର ଅତି ପ୍ରବଳା
ରମ୍ଭୋରୁରେ ସପ୍ତମ ଦୁତ
ରମଣୀ ମୋହରେ ମୋ ମତି ନୁହେଁ ଯୁଗତ ॥ ୨୭ ॥

ଲଳନା ତୁ ଯେ ମୋହର ନବମ ହେବା ବେଗର
ମୋହୋରେ ଦଶମ ମତ ହୁଅ ଅବଳା,
ଲଭିଲ ବୟସ୍କୁ ତୋର ହୋଇ ମୁଁ ଅଛି କୋପୂର
ଏକାଦଶବର ତପ ଧ୍ୱଂସିମା ବାଲା ।
ଭାବିନୀ ତୋ ଲଳିତ ବାଣୀ ।
ଲବେ ଦେଇ କର କାମଶର ବାରେଣି ॥ ୨୮ ॥

ବସି ବସନ୍ତ ଋତୁରେ ବସ୍ତୁକୁ ଧରି ହସ୍ତରେ
ବସୁମୁଖୀ ହରସ ଯେ କରି ବୋଇଲୁ
ବାସନ୍ତୀ ମଣ୍ଡପେ କେଳି ବସିଣ ମୋ କୋଳେ ବାଳୀ
ବସରବ ନାହିଁ ବୋଲି ବସୁ ଗୁଡ଼ିଲୁ ,
ବିମ୍ବାଧରୁ ଦେଇ ଲେପନ
ବସୁଦେଇ ହୃଦେ ମୋର ଭିଡ଼ିଲୁ ଧନ ॥ ୨୯ ॥

ସାରଙ୍ଗ ପକ୍ଷ ବପକ୍ଷ ପୁର ମଣ୍ଡନୀ ତୁ ଦକ୍ଷ
ସାରଙ୍ଗ ସେବାରୁ ତୋତେ ଲଭିଛି ରାମା ।
ସାରଙ୍ଗ ରୁଚି ବଦନ କ କେ କରୁଛୁ ମଳନ
ସାରଙ୍ଗ ସାରଙ୍ଗେ ଖ୍ୟାତି ଦେଖିଲୁ ବାମା ।
ଶୁଣି ମୁହିଁ ସାରଙ୍ଗ ଧ୍ୱନ
ସାରଙ୍ଗ ଦହୁଛି ତନୁ ରଖ କାମିନୀ ॥ ୩୦ ॥

ଶମ୍ଭୁ ସ୍ୱୟମ୍ଭୁ ସେବାରୁ କେତେକ ଜନ୍ମ ତପରୁ
ହରପୁର ମଣ୍ଡନୀରେ ଲଭିଲି ତୋତେ ।
ଶତେକ ବାର ସିନ୍ଧୁର ଝାସି ହର ହର ତୋର
ଲଭିଥିଲି ନରଣ ତୁ କରୁଛୁ ମୋତେ ।
ଶଶାଙ୍କ କରଣେ ସଦନେ
ସଲଜ୍ଜିତ ହୋଇ ଚୁମ୍ବିଦେଲୁ ସେବଦନେ ॥ ୩୧ ॥

ସେ କଥା ତୋର ସୁମର ଶେଷ ନୋହୁଛି ଶର୍ବରୀ
ସିନ୍ଧୁ ଧୂତ ସୁତ ସୁତ କରେ ଉଛନ୍ନ ।
ସାରଙ୍ଗେ ତୋର କଳ୍ପିବା ହସି ବଦନ ମଳିବା
ଶେଷ ସେ ସମୟୁ ସୁଖ ଜାତ ମଦନ
ସିନ୍ଧୁସୁତ ତପକ ସ୍ଥିତି
ସ୍ୱାମୀ ସେବ ଲଭିଅଛୁ ଏ ତୋର ରତି ।। ୩୨ ।।

ହୁଅ ତୁ ହରଷ ପ୍ରିୟା ହୃଦରୁ ତେଜ ନିର୍ଦ୍ଦୟା
ହର ହର ରିପୁତାପ ହରିଣଦୃଶୀ ।
ହେଉ ଏକ ତନୁ ତନୁ ହରଷ ଭଜ ସୁତନୁ
ହୁଅ ତୁ କାମଦାୟିନୀ କୁଟିଳକେଶୀ ।
ହର ତୁ ଅତନୁ ମଉନ
ହୃଦୟମଣ୍ଡି ତୁ କୁଚ ଯୁଗେ ଗୋ ଧନ ।। ୩୩ ।।

କ୍ଷିତି ବକ୍ତ୍ରୟୁ ମଣ୍ଡନୀ କାନ୍ତ ଅନୁନୟ ଘେନ
ଗୁଣ୍ଠିଲ ହୃଦରୁ ମାନ ରମଣୀମଣି
କ୍ଷୀର ସିନ୍ଧୁସୁତ ମୁଖୀ କାନ୍ତରେ ହୋଇଣ ସୁଖୀ
ଛଟକେ ଛନ୍ଦିଲ ଗଳେ ସୁବାହୁ ବେନ
କ୍ଷୀରଜା ପତିର ଚରଣ
କ୍ଷମେ ନୃପ ଧନଞ୍ଜୟ ପଶେ ଶରଣ ।। ୩୪ ।।



# ବଡ ଉଦ୍ଧବ ଚଉତିଶା

କୃଷ୍ଣ ଦୂତଙ୍କୁ ଦେଖି ଗୋପନଗରେ ସକଳ ବରଜ ତରୁଣୀ,
କାମେ ହୋଇମତ୍ତ ଚିତ୍ତରେ ଦୁଃଖିତ କହନ୍ତି କଥା ପୁଣି ପୁଣି ।
ହେ ଉଦ୍ଧବ, କାହିଁ ପାଇବା ନନ୍ଦସୁତ,
କୋଟି ଚନ୍ଦ୍ରକଳା ଲାବଣ୍ୟ ଶ୍ରୀମୁଖ ବଞ୍ଚେ ଢକଲା କଂସଦୂତ ହେ

କାହା ସଙ୍ଗେ ଆଉ କେତେରଙ୍ଗ କରିବା ବିଧାତା କଲା ଭିନ୍ନ ଭିନ୍ନ ।
କୁରଙ୍ଗୀ ନୟନୀ ମଦନେ ଲୋଡ଼ିବାଭାବେ ଭଣିଲେ ଦୀନାହୀନ ।। ୧ ।।

ଖେଳୁଁ ହସୁ ଯେଣେ ଥିବୁ ଥାଉ କୃଷ୍ଣ ...,
... ... ... ... ... ... ... ... ।
ହେ ଉଦ୍ଧବ, କ୍ଷଣକେ ଗଲା ଏତେ ସୁଖ,
ଖଟାଇଥିଲୁ ତା ପଦ୍ମପାଦେ ସବୁ ଖଣ୍ଡିତାଧାତା ଦେଲା ଦୁଃଖ ହେ ।

କ୍ଷୀରସିନ୍ଧୁ ମନ୍ଥି ମୁକୁତା ଯେସନେ ଶ୍ରୀମୁଖକୁ ବାହାର ହୋଇଲା,
ଖୋଜ ନେଇ ତାହା ହେଜିଥା କଲେ ହୀନ ଦନାଭାବେ ଭଣିଲା ହେ ।। ୨ ।।

ଗଜମୁକୁତା ନାସାକୁ ସୁନ୍ଦରଗଣ୍ଡ ଯେହ୍ନେ ମତ୍ତମତଙ୍ଗ,
ଗେଲେ ଆସୁଥାନ୍ତି ଗୋପସୁତ ସଙ୍ଗେ ଗୋଧୂଳି ପଡ଼ୁଥାଇ ଅଙ୍ଗ ।
ହେ ଉଦ୍ଧବ, ଗୁଣନିଧି ଗୋପୀ ମୋହନ,
ଗତକଥା ମାନେ ଯେତେ କରିଛନ୍ତି ଶୁଣାଥିବ କି ଜୀବନ ହେ,

ଗହନ ବନସ୍ତ ଭିତରେଣ ପଶି ଯେତେ କଲେ ଜଗଜ୍ଜୀବନ ।
ଗୋପ ଯୁବତୀଙ୍କ ମଦନେ ଲୋଡ଼ିବ ଭାବେ ଭଣିଲେ ଦୀନାହୀନ ହେ ।। ୩ ।।

ଘଟନାମଧରି ଘୋରବନେ ହେରି ଯେତେବେଳେ ନନ୍ଦନନ୍ଦନ,
ଘୋଳବକା ଆଦି ସବୁ ପାସୋରିଲୁ ଦିନ ଶେଷେ ଆସେ ସଦନ,
ହେ ଉଦ୍ଧବ, ଘେନାଇ ଗଲେ କଂସରାଯେ,
ଘାରି ହେଉଅଛୁ ହୃଦୟେ ଆମ୍ଭର ନ ଦିଶଇ ବୁଦ୍ଧି ଉପାୟେ ହେ,

ଘର ସୁତପତି କିଛିହିଁ ନ ଜାଣୁ ଏକା ଜାଣୁ ଜଗଜ୍ଜୀବନ,
ଘଟଣ ଯୁବତୀଙ୍କ ମଦନେ ଲୋଡ଼ିବାଭାବେ ଭଣିଲା ଦୀନାହୀନ ।। ୪ ।।

ନାନା ସୁଖ ଆମ୍ଭର କୃଷ୍ଣ ସଙ୍ଗେ ଗଲା ନ ଯାଇ ରହିଲା ଜୀବନ,
ନିର୍ମଳ ଯମୁନା ନଈଁ ଯେତେକେ ତାପ ପଲ୍ଲବ ନାହିଁ ତରୁମାନ
ହେ ଉଦ୍ଧବ, ନ ସରଇ ଦିବାରଜନୀ,
ନିମିଷ ଯୁଗଳ ଏ ଗୋପନଗର ଗୋବିନ୍ଦ ନାମ ଗୁଣି ଗୁଣି ହେ,

ନବଘନ ଶ୍ୟାମ ରୁଚିର କଳେବର ନାନାକୁସୁମେ ଶୋଭିବନ,
ନାଗରୀ ଗୋପୀଙ୍କ ମଦନେ ଲୋଡ଼ିବାଭାବେ ଭଣିଲେ ଦୀନା ହୀନ ।। ୫ ।।

ଚଉର୍ଯ୍ୟ ... ... ... ... ଏଥକୁ ଆସିବ,
ଚୋରଇ ନେଇଛି ସବୁକର ଚିତପାଇଲେ କେତାକୁ ଛାଡ଼ିବ ।
ହେ ଉଦ୍ଧବ, ଚୁଟକ ଆମ୍ଭେ ସର୍ବଗୋପୀ,
ଚଉର୍ଯ୍ୟ ମେଘ ... ... ... ... କଲା ଚୋପଚୋପି ହେ,

ଚାଲିବା ଚାହିଁବା ହସିବା ଖେଳିବା ସବୁ ତା ଗୀତକଥାମାନ ।
ଚତୁରୀ ଗୋପୀଙ୍କ ମଦନେ ଲୋଭିବାଭାବେ ଭଣିଲା ଦୀନା ହୀନ ।। ୬ ।।

ଛୁଆସିଂହ ଗୋପନଗ୍ରେ ରହିଥିଲା ଆମ୍ଭେ ଯେତେ ତାର ଦାସ,
ଛନ୍ଦ ନ ଜାଣିଲୁ ଛଟକେ ଅକ୍ରୂର ଛଳାଇ ନେଲା ଏତେ ମୁହାଁସ ।
ହେ ଉଦ୍ଧବ, ଛାଡ଼ିଗଲେ ଜଗଜ୍ଜୀବନ,
ଛାଡ଼ି ନ ଯାଇ ରହିଛି ଜୀବନ ବଜ୍ରହୁଁ ଅତି କଠିଣ ହେ,

ଛଇଳମାନଙ୍କ ଉପରେ ନାଗର ସେ ରସିକଜନ ଶିରୋମଣି,
ଛନାଳିଆ ଗୋପୀଙ୍କ ମଦନେ ଲୋଡ଼ିବା ହୀନ ଦୀନାଭାବେ ଭଣି ।। ୭ ।।

ଜାଣୁଛି ଉଦ୍ଧବ ଏହି ଗୋପପୁର ଏତେ ଦିଶିଲା ଦିତଶିଷା,
ଯଶୋଦା ନନ୍ଦନ ଯେତେଦିନ ଥିଲେ ସ୍ୱର୍ଗହିଁ ନୁହେଁ ସମସର
ହେ ଉଦ୍ଧବ, ଜୀବନ ଆମ୍ଭ ନନ୍ଦସୁତ,
ଯେତେ ଗୋପୀ ଆମ୍ଭେ ଗୋପପୁରେ ଅଛୁ କୃଷ୍ଣବିନୁ ଆମ୍ଭେ ଅନାଥ ହେ ।

ଯାହା ଲାଗି ଗୃହ ସୁତ ସୁତା ପତିଭୟେ ଆଦି ଦୂର ହୋଇଲା
ଜଗତମୋହିନୀ ମଦନେ ଲୋଡ଼ିବା ହୀନ ଦୀନାଭାବେ ଭଣିଲା ।। ୮ ।।

ଝାସିଲୁ ଦୁଃଖସାଗରେ ଗୋପୀ ଆମ୍ଭେ ଝିଞ୍ଜିକା ମଣିଲୁ ଯେମନ୍ତ,
ଝରୁଥାଇ ନୀର ନୟନୁ ଆମ୍ଭର ଝରଝର ହୋଇ ସତତ,
ହେ ଉଦ୍ଧବ, ଝିମିଣ୍ଟେ ମନରୁ ନ ଯାଇ,
ଝରଇ ନୀର ନୟନରୁ ଆମ୍ଭର ଲାବଣ୍ୟ ମୁଖବନୋଇ ହେ

ଝାଡ଼ କୁସୁମ ...
ଝଞ୍ଜିକା ଛୁନାଇଗଲେ ଗୋପୀନାଥ ହୀନ ଦନାଭାବେ ଭଣଇ ॥ ୯ ॥

ନଧି ହରାଇ ଲୋଡ଼ି କମ୍ପାଇ ଯାହା ହାତେ ପଡ଼ଇ ତାହାର,
ନପତ ହୋଇଲେ ... ପର କି ହୋଇ ଆପଣାର ।
ହେ ଉଦ୍ଧବ, ନ ଯୋଗାଇ ପୁଣି ଏମନ୍ତ,
ନୁହ ଆମ୍ଭେ ତାହାଙ୍କ ଭଗାର ସ୍ନେହ ବଢ଼ାଇଲେ କେମନ୍ତ ହେ

ନନ୍ଦନନ୍ଦନ ... ଆମ୍ଭ ମନେ ତାଙ୍କ କଷ ହୋଇଲା
ନବଯୁବତୀଙ୍କ ମଦନେ ଲୋଡ଼ିବା ହୀନ ଦନାଭାବେ ଭଣିଲା ॥ ୧୦ ॥

ଟୋକା ଗୋଟି କୃଷ୍ଣ ଅପତିଆ ହୋଇ ତାଙ୍କୁ ଉଡ଼ାଇନେଲା ତୃଣାସୁର,
ଟାଣ ହୁଁ ଏତେ ଆସୁ ପକାଇଲା ପଡ଼ି ପାଷାଣ ଗଲା ଚୂର୍,
ହେ ଉଦ୍ଧବ, ଟାଣ ଦେଖିଲୁ ଯେ ସେମାନ,
ଟିକାଏ ଭାବ ଯେ ତାହାର ପାଇବ ମୂ ବୁଝୁ ହୁଏ କି ତା ଗୁଣ ହେ ?

ଟାକଥିଲୁ ଆମ୍ଭ ଅମୂଲ୍ୟଧନକୁ ଟେସ୍କରହାତେ ପଡ଼ିଲା ।
ଟମାଳ ଗୋପୀଙ୍କ ମଦନେ ଲୋଡ଼ିବା ହୀନଦନାଭାବେ ଭଣିଲା ॥ ୧୧ ॥

ଠିକେ ମନ୍ଦର ରସିକ ଶିରୋମଣି କି ଘେନ ହରଷ ମଣିଲେ,
ଠିକେ ଆମ୍ଭଙ୍କୁ ଆସିବେ ବୋଲି ଗଲେ ଠାବ ଭଲ ଜାଣି ରହିଲେ,
ହେ ଉଦ୍ଧବ, ଠୁଳ ନଧିକ ହରାଇଲୁ,
କି ଯେତେକ ସବୁ ଗୋପପୁର ରହିଲୁ ହେ ।

ଠିକକଥାମାନ ଯେତେକ ଥିଲେ ସବୁ ତାଙ୍କ ମିଛ ହୋଇଲା,
ଠିକକର ଆମ୍ଭେ ଭେଟି ନ ପାଇଲୁ ହୀନଦନାଭାବେ ଭଣିଲା ॥ ୧୨ ॥

ଡେଇଁ କାଳନ୍ଦୀରେ ଯେ ବନ୍ଧୁ ପଡ଼ୁଛି ଡ଼ରିଲୁ ଆମ୍ଭେ ସମସ୍ତେ,
ଡ଼ଙ୍କିଲା ଅଙ୍ଗ କାଳିଆ ସର୍ପ ତାର ଦେଖି ହୋଇଲୁ ସ୍ତମ୍ଭୀଭୂତେ ।
ହେ ଉଦ୍ଧବ, ଡରିଲାନାହିଁ ନନ୍ଦସୁତ,
... ... ନର୍ତ୍ତୁପଣ ତାର ଫେଣା ଉପରେ କଲା ନାଟ ହେ

ଡ଼ରଭୟେ କାହାକୁ ନକର ଆମ୍ଭଙ୍କୁ ଆବୋରିଲା ନନ୍ଦସୁତ,
ଡ଼ାଳେ କି ତାକୁ ମୁ ବୁଝୁ ହୁଏ ହୀନଦନା ଭଣିଲା ଏହୁ ଗୀତ ॥ ୧୩ ॥

ଢ଼ମ ଯେ ଆଗେ କହିଲେ ନ ସରଇ କୃଷ୍ଣଙ୍କୁ ପୁଚ୍ଛିବୁ ତୁହି କି,
ଢ଼ାଙ୍କି ଅମୃତ ଅଧରୁ ଦେଇଥିଲୁ ସେକଥା ମନରେ ଥାଏ କି,

ହେ ଉଦ୍ଧବ, ଜଗପତିଙ୍କ ପ୍ରାପ୍ତେ କଲ,
ତାଳେ ହେ ଏତେ ମୁ ଛୁଟିବ ବୋଲି ଆମ୍ଭମନରେ ଏହା ନ ଥିଲ ହେ ।

ତେଜ ଯେସନେ ମୃଗଜଳେ ମାରଇ କୃଷ୍ଣ ମାରନ୍ତି ସେହି ମତ,
ତମାଳ ଗୋପୀଙ୍କ ମଦନେ ଲୋଡିବା ସ୍ୱାନଦନାଭ୍ରବେ ଭଣିତ ।। ୧୪ ।।

ଆଣିନେଇ ଯହିଁପାଇ ଉଲଦ୍ରବ୍ୟ ଯାକୁ ଯେବଣ ଅଛିବ,
ଅଣଉପକାଣ୍ଡ ନୋହୁ ନା ତୁମ୍ଭଙ୍କୁ ଆମ୍ଭେ କହିଲେ କି ହୋଇବ ।
ହେ ଉଦ୍ଧବ, ଅଣି କେ ଦେବ ନନ୍ଦବାଳ,
ଆଣିପାରିଲେ ତା ଦାସୀ ହୋଇଥିବୁ ଜୀବନ ଥିବ ଯେତେକାଳ ହେ

ଅଣଆପୃତ୍ତ କଲେ ଜଗଜ୍ଜୀବନ ଜାଣିଲୁ କୃଷ୍ଣକାର୍ଯ୍ୟ ଘେନ,
ଅଣଅପରାଧେ କି ଦୋଷେ ତେଜିଲେ ଗୃବେଭଣିଲେ ଦନା ପୁଣି ।। ୧୫ ।।

ତ୍ରୈଲୋକ୍ୟ ଠାକୁର ଯେ ପ୍ରଭୁ ଈଶ୍ୱର ତାହା କି ଆମ୍ଭେ ନ ଜାଣିଲୁ,
ସ୍ତ୍ରୀଗଣ ମିନା ବେଭାରେ ସ୍ୱକୃତ ମାୟାରେ ପଡ଼ି ମୋହିଗଲୁ,
ହେ ଉଦ୍ଧବ, ତାହାର ଜାଣୁ ସବୁକଥା,
ତାହାକୁ ବୋଇଲେ ଆଉ କିସ ହୋଇବ ମନଭିତରେ ଯେତେ ବ୍ୟଥା ହେ ।

ତୁ କି ହୋଇଲେ ଯଶୋଦା ଶୁଣିଲେ ଦେବକୀ ଯାର ନାମେ ବଣା ।
ତ୍ରୈଲୋକ୍ୟମୋହନ ମଦନେ ଲୋଡିବା ସ୍ୱାନଦନାଭ୍ରବେ ଉଣା ।। ୧୬ ।।

ଥୋକାଏ ଦିନେ କି ଆସିବେ କେଶବ ସେବେ ତୁ କହନ ରାଧାର,
ଥାନଗୁଡ଼ ତାର ଆଶା ଛିନାଇବୁ ଆଉ କଥା ପଛେ ବହୁର ।
ହେ ଉଦ୍ଧବ, ଅପ୍ସେ ନ ଜାଣିଲୁ ତାହାର,
ଥିଲ ମାଣିକ୍ୟ ଶବରୀ ହାଥେଣ ପଡ଼ିଛି ହେଲ ଯାହାର ହେ,

ଥିରବୁଦ୍ଧି ଆମ୍ଭର ଦଣ୍ଡେହେଁ ନ ରାଇ ସେ ନନ୍ଦନନ୍ଦନ ଗୁଣେଗୁଣି,
ଥିଲ ପ୍ରାପ୍ତେ ସବନ୍ଧନ ମଣିଥିଲୁ ସ୍ୱାନଦନାଭ୍ରବେ ଭଣି ।। ୧୭ ।।

ଦରିଦ୍ର ଯେସନ ସ୍ୱପନେ ନିଧି ପାଇ ସେ ଯେତେହେଁ ହୁଅଇ ଉଷତ,
ଦେବଙ୍କୁ ଦୁର୍ଲ୍ଲଭ ଯାହାର ମହିମା ସେ କାହିଁ ଆମ୍ଭଙ୍କୁ ପ୍ରାପତ ।
ହେ ଉଦ୍ଧବ, ଦୁଃଖ ଅମ୍ଭର ଘୋରତର,
ଦୁଃଖସାଗରେ ବୁଡିଲୁ ଗୋପୀ ଆମ୍ଭେ ସେ ଦୟାଳୁ ଭଲ କଲେ ପୁଣ ହେ ।

ଦଗଧପଟଳ ପ୍ରାପ୍ତେ ଗୋପୀ ଆମ୍ଭେ ହୋଇଥାଉ ସିନା କେମନ,
ଦୁଃଖୀ ଲୋକଙ୍କର ମଦନେ ଲୋଡିବାଭ୍ରବେ ଭଣିଲ ଦନା ହୀନ ।। ୧୮ ।।

ଧନ୍ୟ ଜୀବନ ସେ ମଥୁରା ଯୁବତୀ ଧରାଇନେଲେ ବନମାଳୀ,
ଧାଇଁଅଛୁ ନବ ତରୁଣୀଙ୍କ ସଙ୍ଗେ କରିବ ବୋଲି ରତିକେଳି ।
ହେ ଉଦ୍ଧବ, ଧର୍ମେ ଧରିଥିଲୁ ତାହାକୁ,
ଧନଯଉବନ ବିଫଳ ହୋଇଲା ଏହା ସମର୍ପିବା କାହାକୁ ହେ ।
ଧିକ ହେଉକିନା ଜୀବନ ଆମ୍ଭର କୃଷ୍ଣ ସଙ୍ଗେ କମ୍ପା ଏ ନଗଲା,
ଧଇର୍ଯ୍ୟ ଗୋପୀଙ୍କ ମଦନେ ଲୋଡ଼ିବା ହୀନ ଦନା ଭାବେ ଭଣିଲା ॥ ୧୯ ॥

ନିର୍ମଳ ଶରଦ ଚନ୍ଦ୍ର ଦେଖି ବନେ ନିଶାକାଳେ ବେଣୁ ବାଇଲା,
ନବପଲ୍ଲବ ବୃନ୍ଦାବନ ଭିତରେ ଯେତେ ଯେ ରଙ୍ଗ ଭିଆଇଲା ।
ହେ ଉଦ୍ଧବ, ନ ଯାଇ ସେକଥା ମନରୁ,
ନାହିଁ ହେକଶୋଷ ଗୃହପତି ଆଶ ନିଷ୍ଟଯୁ ଝୁରି ଝୁରି ମରୁ ହେ ।
ନନ୍ଦସୂତ ବୋଲି ତାଙ୍କୁ ନ ଜାଣୁ ନିଷ୍ଟେ ଜାଣୁ ଆମ୍ଭ ଜୀବନ,
... ... ଭାବେ ଭଣିଲେ ଦନା ହୀନ ॥ ୨୦ ॥

ପାଇବା କାହିଁ ଏଡ଼େବଡ଼ ନାଗର ବିଧାତା ଆମ୍ଭଙ୍କୁ ଗୁଡ଼ିଲା,
ପୀରତି ଏଡ଼େ ଅଟଇ ଗୋପୀନାଥ ପିନ୍ଧିବା ବସନ ବହିଲା ।
ହେ ଉଦ୍ଧବ, ପାସୋରି ନ ପାରୁ ତାହାକୁ,
ପୃଥ୍ୱୀ ଭିତରେ ଏଡ କାହିଁଛୁ ପଟାନ୍ତର ଦେବା କାହାକୁ ହେ ।
ପୁଣ୍ୟ କରିଥିଲେ ମଥୁରା ଯୁବତୀ ପାପୀ ଆମ୍ଭେ ବ୍ରଜ ତରୁଣୀ,
ପ୍ରାପତ ସୁଧାନିଧିକି ହେନଗଲେ ହୀନ ଦନା ଭାବେ ଭଣି ॥ ୨୧ ॥

ଫୁଲ ଗୁଞ୍ଜମାଳ ଫିଟିପଡ଼ୁଥାଇ ଫୁଲ ଅଟଇ ଗୋପୀନାଥ,
ଫାଇଦନ ଗୋପପୁରେ ଥିବ ବୋଲି ସ୍ନେହ ବଢ଼ାଇଲୁ ବହୁତ ।
ହେ ଉଦ୍ଧବ, ଫେଡ଼ି କହିଲୁ ତୋ ଆଗର,
ଫାନ୍ଦେ ମଦନ ଆମ୍ଭ ବନ୍ଦୀ କରିଛି ରସିକ କାଳିଆ ନାଗର ହେ ।
ଫୁଲଫୁଲ ଯାହାକୁ ହେନ ହେଉଥିଲୁ ଫୁରୁଣା ଆମ୍ଭର ଭାଜିଲା,
ଫାଇ ଗୋପୀଙ୍କର ମଦନେ ଲୋଡ଼ିବା ହୀନ ଦନା ଭାବେ ଭଣିଲା ॥ ୨୨ ॥

ବରଜ ଉତ୍ସବ ଯେଉଁଦିନ ଭାଙ୍ଗିଲା ବାହୁଅଇଲା ସୁନାସୀର,
ବଳହିଁ ଯେତେ ବାମକରେ ତାହାର ଛତ୍ରପ୍ରାୟେ କଲେ ମନ୍ଦର ।
ହେ ଉଦ୍ଧବ, ବଳ ତା ପ୍ରତ୍ୟକ୍ଷେ ଦେଖିଲୁ,
ବଜ୍ରସରୀ ଆଦ୍ଧ ପଥର ବରଷା କଅଁତ ପ୍ରାୟେ ତା ମଣିଲୁ ହେ ।

ବିଷମ ସଙ୍କଟ ପଡ଼ିଲେ ରଖିଇ ବିଧାତା ଏ ରଙ୍ଗ ନାଶିଲା,
ବଜ୍ର ସେହ୍ଲା ଆମ୍ଭର ମଥୁରା ରହିଲେ ହୀନ ଦନା ଭାବେ ଭଣିଲା ।। ୨୩ ।।

ଭଲ ଭୁଲାଇ ସେ ଆମ୍ଭଠାରୁ ନେଲା ଭେଳକ ନ ପାଇ ଆମ୍ଭଙ୍କୁ,
ଭେଳହୋଇ ଆମ୍ଭେ ଜାଣି ନ ପାରିଲୁ ଗୁଡ଼ ଦେଇଛୁ ତାହାଙ୍କୁ ।
ହେ ଉଦ୍ଧବ, ଭଗାତ ଆମ୍ଭର ଅକ୍ରୂର,
ଭେଟ ତା ପାଇଲେ ଯେତେ ବେଷ ସାରନ୍ତୁ ରକ୍ଷ ଆସି ତାର ଠାକୁର ହେ ।
ଭାବପାଇ ଏକା ଭଜକୁ ତାହାଙ୍କୁ ଭଣ୍ଡିଗଲେ ଜଗଜ୍ଜୀବନ,
ଭଗତ ଗୋପୀଙ୍କ ମଦନେ ଲୋଡ଼ିବାଭାବେ ଭଣିଲେ ଦନା ହୀନ ।। ୨୪ ।।

ମହିମା ତାହାଙ୍କ କେତେକ କହିବା ଦେବ ମାନବେ ଅଗୋଚର,
ମାଟି ଖାଉ ମାତ୍ରେ ପ୍ରତ୍ୟକ୍ଷେ ଦେଖିଲେ କୋଟିବ୍ରହ୍ମାଣ୍ଡ ତା ଉଦର ।
ହେ ଉଦ୍ଧବ, ମନରୁ କାହିଁ ପାସୋରିବା,
ମହୁରି ଖାଇଣ ସମସ୍ତେ ମରିବା ମଲେ ମନଥିର କରିବା ହେ ।

ମହା ସଙ୍କଟରୁ ସେହୁ ସେ ରଖାଇ ମନୁଷ୍ୟମାନ ଙ୍କ ତେମନ୍ତ,
ମହାପ୍ରଭୁଙ୍କୁ ମନାଇ ନ ପାରିଲୁ ହୀନ ଦନା ଭାବେ ଭଣିତ ।। ୨୫ ।।

ଯାଇ ରହିବେ ବୋଲି ଯେବେ ଜାଣନ୍ତୁ ଯାଆନ୍ତେ କାହିଁ ସେ ଗୋପରୁ,
ଯିବେ ଆସିବେ ବୋଲି କହୁଥିଲେ ସେ ଯିବାପ୍ରାଏ ମାତ୍ର ଏଠାରୁ ।
ହେ ଉଦ୍ଧବ, ଯେମନ୍ତ ଆମ୍ଭର କରମ,
ଯାହାଙ୍କୁ ଦଇବ ଏ ଦୁଃଖ ଥୋଇବ ଜାଣୁ ଜାଣୁ ହେଲୁ ଭରମ ହେ ।

ଜଳୁଥାଇ ଦେହ ନଇଲେ ଆମ୍ଭର ଜଳଶୁଖି ମୀନ ଯେସନ,
ଯେ ଏହା କଲା ଦଇବ ତାକୁ ଦଣ୍ଡୁ ଭାବେ ଭଣିଲା ଦନାହୀନ ।।୨୬।।

ରସିବାକୁ ଅବା କେ ନାହିଁ ତାହାକୁ ସଗ ତ ଦେହେ କରୁ ନାହିଁ,
ରୁଷି ବସିଲେ ଗୃହ କହୁ ଥାଆନ୍ତି ରାଜୀବଲୋଚନ କହ୍ନାଇ ।
ହେ ଉଦ୍ଧବ, ରାମହିଁ କୋହେ ତେତେ ଭଙ୍ଗୀ,
ରହିଣଥାଆନ୍ତି ସେ ବଟ ତଳେଣ ରାଜୀବଲୋଚନ ତ୍ରିଭଙ୍ଗୀ ହେ ।

ରାସବିଳାସ ତାହାଙ୍କ କଥାମାନ ଦଣ୍ଡେ ହେ ମନରୁ ନ ଯାଇ,
ରମଣୀ ଗୋପୀଙ୍କ ମଦନେ ଲୋଡ଼ିବା ହୀନ ଦନା ଭାବେ ଭଣଇ ।।୨୭।।
ଲୁଗୁଡ଼ ହରନେ ଆମ୍ଭର ପିନ୍ଧିବା ବସନ ସ୍ନାନ ଠାବରୁ ଘେନିଗଲା,
ଲମ୍ବାଇ କଦମ୍ବେ ଡୋଳକରି ବସି ଥୋକେ ବୃକ୍ଷରେ ଉଡ଼ାଇଲା ।

ହେ ଉଦ୍ଧବ, ନୂଆ ଚମ୍ପକ ଯେସନ,
ଲେଖାଲେଖି ନୋହୁ ସମସ୍ତେ ମାନତ ଲାଜ ଛଡ଼ାଇଲୁ ସେଦିନ ହେ ।
ଲୋଭୁ ଆମ୍ଭର ଏମନ୍ତ ଯେ ତାହାଙ୍କୁ ଲାଗିଅଛୁ ଲଗ ଲଗାଇ,
ଲମ୍ଭାଇଥିଲୁ ହୃଦରେ ନିରନ୍ତରେ ହୀନ ଦନା ଭାବେ ଭଣଇ ।। ୨୮ ।।

ବନପୋଡ଼ି ଆମ୍ଭେ ସମସ୍ତେ ମରନ୍ତୁ ବୋଇଲୁ ରଖ ବନମାଳୀ,
ବେନି ଆଖିବୁଜ ସମସ୍ତେ, ବୋଇଲେ ତେଡ଼େ ବହ୍ନିକି ଦେଲେଗିଳି ।
ହେ ଉଦ୍ଧବ, ବିଶେଷି କହିବୁ କେତେ ଗୁଣ,
ବୋଇଲେ କହନ୍ତି ପ୍ରତେହେଁ ନ ଯିବ ବ୍ରହ୍ମାଦି ନୋହେ ଗୁଣ ହେ ।
ବିଷାଇଲା ବାଣପ୍ରାପ୍ତେ ହୋଇଥାଇ ବାଣେ ପଡ଼ଇ ହରିଣୀ,
ବନମାଳୀ ଗୁଣ ବାଇ କରାଇଛି ହୀନ ଦନା ଭାବେଭଣି ।। ୨୯ ।।

ଶ୍ରୀବନ୍ତ ହୋଇଲେ ଗୋପନବରେ ସେ ସବୁ ଗୁଣ ଆମ୍ଭ ଗଲା,
ଶ୍ରୀକୃଷ୍ଣ ଯେ ଦିନୁ ଗୋପପୁର ଗଲେ ସବୁକର ଶିଖ ସରିଲା ।
ହେ ଉଦ୍ଧବ, ଶ୍ରୀବନ୍ତ ପୁରୁଷ ମାଧୋଇ,
ଶ୍ରୀ ଯା ନିରନ୍ତରେ ଖଟିଣ ଅଛଇ ସେ ଯହିଁଥାଇ ପୂଜା ପାଇ ହେ ।
ଶ୍ରୀକଲା ସିନା ହେ ବିଧାତା ପୁରୁଷ ଜଗତ ଦେହେ ଦୁଃଖ ପଡ଼ିଲା,
ଶ୍ରୀବନ୍ତ ଗୋପୀଙ୍କ ମଦନେ ଲୋଡ଼ିବାଭାବେ ହୀନ ଦନା ଭଣିଲା ।।୩୦।

ସିଂହ ଆସିଥିଲା ଶୃଗାଳ ଘରକୁ ତହିଁ କି ନାମ ନ ରହିବ,
ସୁନ୍ଦର ଯୁବତୀମାନଙ୍କୁ ପାଇଲେ ସୁନ୍ଦରୀ ସୁନ୍ଦର ମୋହିବ ।
ହେ ଉଦ୍ଧବ, ସ୍ୱଭାବେ ଆମ୍ଭେ ଗଉଡ଼ୁଣୀ,
ସୁନାର ହାତେ ନାକ ସରୂପା ପଡ଼ିଲା ଗୋପେ କି କାର୍ଯ୍ୟଅଛି ପୁଣି ହେ
ସମୁଦ୍ର ପରିଏ ଆଶା କରିଥିଲୁ ଆଶା ଆମ୍ଭର କେ ଛିନାଇଲା,
ସୁବୁଦ୍ଧି ଗୋପୀଙ୍କ ମଦନେ ଲୋଡ଼ିବା ହୀନ ଦନା ଭାବେ ଭଣିଲା ।।୩୧।।

ସ୍ୱରୂପ ତୋ ଆଗେ କହିଲୁ ଉଦ୍ଧବ ଶ୍ରୀକୃଷ୍ଣେ କହିବ ଏମନ୍ତ,
ସ୍ନାନକର ପାଣି ଆଞ୍ଜୁଳି ଦିଅନ୍ତୁ ମଲୁ ବୋଲି ଆମ୍ଭେ ସମସ୍ତ ।
ହେ ଉଦ୍ଧବ, ସେଦିନ କଥା କାହିଁଅଛି,
ସାନ ଗୋଠି କାଳେ ନନ୍ଦପୁଅ କାହ୍ନୁ ଏବେ ସେ ଠାକୁର ଶ୍ରୀବନ୍ତି ହେ
ସାନ ଲୋକ ସଙ୍ଗେ ପ୍ରୀତିକଲେ ସେ ଯେ ସେ ହିତ ପାଇଁ ବୁଡ଼ାଇଲା,
ସାନନ୍ଦେ ଗୋପୀଙ୍କ ମଦନେ ଲୋଡ଼ିବା ହୀନ ଦନା ଭାବେ ଭଣିଲା ।।୩୨।।

ହରିଣୀ ନୟନା ସମସ୍ତ ବୋଲନ୍ତି ଶୁଣ ହେ ଉଦ୍ଧବ ବଚନ,
ହିରଣ୍ୟ ଗର୍ଭୟେ ଏ ଦୁଃଖ ବହିଲେ ଗୋପୀ ହୋଇଲେ ମାନହୀନ ।
ହେ ଉଦ୍ଧବ, ହରି ହରିଲେ ଆମ୍ଭ ବୁଦ୍ଧି,
ହରିଭଜନ ନିଧି ପାଇବା କେମନ୍ତେ ସମ୍ପାଦ ଥିଲା ଏହା ବିଧି ହେ ।
ହରଷ ହୋଇଣ କହନ୍ତି ଉଦ୍ଧବ ହଂସଗମନୀଙ୍କ ମଣାଇଁ,
ହରି ନାମ ଧରି ନିରନ୍ତରେ ଭାବ ହୀନ ଦନା ଭାବେ ଭଣିଲା ॥ ୩୩ ॥

କ୍ଷମାସାଗର କରୁଣାନିଧି ଆଗେ ଉଦ୍ଧବ କହିବୁ ନିଶ୍ଚୟେ,
କ୍ଷେମେଣ ଥାନ୍ତୁ ସେ କୁବୁଜାଙ୍କ ଘେନି କେବଳ କରୁଥିବେ ସଦୟେ ।
ହେ ଉଦ୍ଧବ, କ୍ଷୁଡ଼ିବୁ ନିଶ୍ଚୟେ ଜୀବନ,
କ୍ଷୀରମାନ୍ଥ ଆମ୍ଭେ ପରିବାରି ସିନା ଭକ୍ତ ଘେନିବେ ଭଗବାନ ହେ ।
କ୍ଷିତି ଉତରେଣ କଥା ରହିଥାଉ କୃଷ୍ଣ ଲାଗି ମରୁ ଅବଳା,
କ୍ଷୋଭ ନ କରି ଚଳିଯାଅ ଉଦ୍ଧବ ହୀନ ଦନା ଭାବେ ଭଣଇ ॥ ୩୦ ॥



# ଗୁରୁମଂଡଳ ଚଉତିଶା

( ରାଗ - କଉଶିକ )

କଳନ୍ଦୀ ଅଳି ତମାଳପତ୍ର ତମ କୃଷ୍ଣ ଘନମାଳ ଗୁମର,
କୋମଳେନ୍ତ ସମହେବେ ରାଧା କେଶକୁ କାଳେ ଏମାନେ ଦୋଷପାର ।
କର୍ଣ୍ଣଦେଇଣ ଶୁଣ ଚତୁରବରରମଣୀ,
କାଦମ୍ବିନୀ କାଳେ ଆଦ୍ୟ ଉପମାରେ ଗେରୁବର୍ଣ୍ଣ ହୁଏ ସେ ପାଣି ॥ ୧ ॥

ଖରାଂଶୁ ତାପ ଖଣ୍ଡନ୍ତ ଗ୍ରୀଷ୍ମାନ୍ତେ ଖଟିଥାନ୍ତି ଛଟେ ବାଟପୀ,
ଖଳ ସେବୁତେ ହେଲେ ମୂଳ ମୋକ୍ଷ କର ଉପାଡ଼ି ଖଣ୍ଡଇ ତଥାପି ।
ଖୋଜିଲେ ଅବଗୁଣ ଅଛି ଅପାର,
ଖଣ୍ଡ ଖଣ୍ଡ ଫେନ ଭାଙ୍ଗୁ ଭୟଙ୍କର ଭ୍ରାଥ ଯାହାର ଦଣ୍ଡଧର ॥ ୨ ॥

ଗୁରୁ ସୁବାସୀ କମଳମା ଧୂଳିରେ ଗାଢ଼ ଧୂସର ଭୃଙ୍ଗଅଙ୍ଗ,
ଗଳିତ କୁସୁମ ମଧୁପାନେ ମତ୍ତ ଗେଲେ ବାସଙ୍ଗ ଫୁଲ୍ଲ ସଙ୍ଗ ।
ଗୁଣନିଧାନ ଗୁରୁ ଚମ୍ପକକୁ ତେଜଇ,
ଗନ୍ଧ ରସ ହୀନ କଣ୍ଟକେ ସଘନ ବାର୍ଦ୍ଧିକ କୁସୁମେ ରମଇ ॥ ୩ ॥

ଘର୍ମକରକରେ ହବସେ ଶୁଖଇ ଘନଦାରୁ ଦେହୁ ଉତ୍ପତ୍ତି,
ଘୋଟି ପଶୁମାନେ ଦଶନ ଲସନାଘାତେ ଅଙ୍ଗ କ୍ଷତ କରନ୍ତି ।
ଘଟଣ ମାଳତୀ ଯାଇ ମରଣତେ,
ଘଟିବ କାହୁଁ ସେ ଗୁରୁପଦ ସିନା ଝଡ଼ ଉଡ଼ି ପଡ଼େ ମରୁତେ ॥ ୪ ॥

ଙୁହେଁ ଭୁଲ ତେଣୁ ତା ପିଞ୍ଛ ପଳାଶ ଙନ୍ଧିତ ଚତୁର୍ଥ ଉପମା,
ଙଶାକର କଞ୍ଜ ବନ୍ଧୁ ବଇରୀ ସେ ଙଜ ମୂର୍ତ୍ତିରେ ଉପୁ ସୀମା ।
ମାଟଜାତି ସେବ ଖ୍ୟାତ ଏ ତିନିଭୁବନେ,
ନପୁନେ ଯାହାକୁ ଉପରାଗେ ଦେଖି ବୁଡ଼ି ଗମ୍ଭୀର ସିନ୍ଧୁବନେ ॥ ୫ ॥

ଚଟୁଳ କେନ୍ଦ୍ର ଭବନ ଗୁଡ଼ି ଯଦ୍ଧ ଚଳି ନ ଥାଇ ଜନ୍ମକାଳେ,
ଗୁରୁ ସୁଦଶ ଦୁହିତା ସୁତ ପ୍ରାଣ ଚପଳେ ନାଶେ ରିଷ୍ଟ ବଳେ ।
ଚନ୍ଦ୍ର ବଳ ହେଲେ ନୋହିଲେ ଏମନ୍ତ କରଇ,
ଚଟୁଳ ଚରମ ଦେଶେ କର୍ଣ୍ଣତଟେ ହେଲେ କୁବ୍‌ଜଭାବ ହୁଅଇ ॥ ୬ ॥

ଛୁଡ଼ି ତୁ ଅମ୍ବୁଧର ନୀଳବର୍ଣ୍ଣିମା ଛଳ ସେ କ୍ଷଣକରେ ଯାଇ,
ଛୁଡ଼ୁ ଆଜଠାରୁ ଜଳଦ ସୁଦଶା ଛିନ୍ନହେଉ ତାର ବଢ଼ାଇ ।
ଛିନ୍ନ କରାଇ ଘୋର ଘଡ଼ଘଡ଼ି ଘୋଷଘାତେ,
ଛଇଳ ବରସ୍ତ୍ରୀ ଜୀବହତ ହେତୁ ଏକାକାଳେ ଶୋଭା ଜଗତେ ॥ ୭ ॥

ଜାଣିଲି କବିମାନେ ଏବେ ତୁମ୍ଭଙ୍କୁ ଜନ ସମ୍ମୁଖେ ଲାଜ ନାହିଁ,
ଜାଣୁ ଜାଣୁ ସେ ଚମରୀ ପଶୁ ପୁଚ୍ଛ ଯୋଖି ସମାନକର ତହିଁ ।
ଯେହୁ ତାହାର ଚରଣତଳେ ଲମ୍ବି ଥାଇ,
ଜଗତ୍ରି ତଳେ ପାତାଳେ ସ୍ୱର୍ଗପୁରେ ଯା କୁନ୍ତଳତୁଲ୍ୟ ନ ପାଇ ॥ ୮ ॥

ଝସକେତୁ ରାଜା ବରଞ୍ଚ ବଡୌଜା ଝାମପିବେ ଦେଖି ଯା ବେଣୀ,
ଝଲଝଲ ମୋତି ଜାଲି ତଥିପରେ ଝୁଲନ୍ତି ଗୁନ୍ଥି ଚକ୍ରପାଣି ।
ଝମଣ୍ଟକେ ସେ ଯେଣୁ ତ୍ରିଭୁବନ ଜିଣିଲା,
ଝଟକବରନା କେଶନଭେ ତେଣୁ ଯଶ ଭାବମୀକ ଉଇଁଲା ॥ ୯ ॥

ନଶିରମଣ ଅର୍ଦ୍ଧ ନଭେ ଲଲାଟ ନୀଳ ଅଳକାରେ ବେଷ୍ଟିତ,
ନାଗରୀତଥି ମୃଗମଦତିଳକ ନକ୍ଷକରେ କଲା ରଚିତ ।
ନଷ୍ଟେ ଏମନ୍ତ ଆଶଙ୍କା କରଇ ମୋ ମନ,
ନବୀନରଥେ ଶମ୍ଭୁ ଜିଣିବ ବୋଲି ଛୁରୀ ତେଜୁଛି କି ମଦନ ॥ ୧୦ ॥

ଟଳବ ଚନ୍ଦ୍ରିକାଠାରୁ ଶୀତମନ ଟିକାଏ ତା ମୁଖ ଦେଖିଲେ,
ଟାଣତେଜ ଅଙ୍ଗେ ରତିରମ୍ଭା ରହେ ଟାକଶରୀ ସନ୍ଧ୍ୟା ଗମିଲେ ।
ଟାଙ୍କିଭଜନ ଯେଣୁ ସେ ରାଧାର ହୋଇଲେ,
ଟେକଭାବ ଦେଖି ପୁରନ୍ଦର ପୁରେ ବ୍ରହ୍ମଲୋକେ ଦୁହେଁ ରହିଲେ ॥ ୧୧ ॥

ଠାକୁରାଣୀ ମୁଖ ଦେଖି ପୂର୍ଣ୍ଣଶଶୀ ଠୁଳ ଲାଜମନେ ଯେଘନଲା,
ଠଣଅଙ୍ଗରୁ ପ୍ରଥମ ତିଥିଠାରୁ ଠିକେ କଳାମାନ ତେଜିଲା ।
ଠାବକଲେଟି ସେହିନୁ ଶବଂଶ,
ଠିଆହେବାକୁ ଦିଗନ୍ତରେ ନ ପାରି ସେ ତ ମନପୂରେ ବିହରି ॥ ୧୨ ॥

ଡମ୍ବରୁ ପାଣିବଇରି ଦର୍ପ ତାକୁ ଡ଼ଙ୍ଗର କବି ସମକରେ,
ଡୋଳାରେ ଦେଖି କମଳ ଦିନେଶ ଡ଼ରଇତ ପାରେ କାସାରେ ।
ଡୋଳୁଥାଇ ସେ ବାଢ଼େ କୋକନଦ ତ ନରେ,
ଡ଼ାକକରି କହେ ସମମୁଁ ନୁହଁଇ କଳହଂସନାଦ କଣ୍ଠରେ ॥ ୧୩ ॥

ତଳବ ପ୍ରକୃତି ପୁରୁଷ ହୋଇଲେ ତାଳେ ଯେବେ ଦୃଷ୍ଟି ପଡ଼ିବ,
ତାଙ୍କିହେବେ କାମଜାଲେ ମୁନିମାନେ ତମଜ୍ଞାନ କାହିଁ ରହିବ ।
ତାଳେ ଉଡ଼ିବ ଧଇର୍ଯ୍ୟ ଧୂଳି କାମବାତେ,
ତଳଦଳ ପଦ୍ମପତ୍ର ଜଳପ୍ରାୟେ ହୋଇବ ବ୍ରହ୍ମ ଚିନ୍ତା ଚିତ୍ତେ ।। ୧୪ ।।

ଏଣୁକରି ବୃଷଭାନୁ ନନ୍ଦିନୀର ଅଣଉପମାୟେ ଆନନ,
ଅଣୁଶୋଭା ଏହା ତହୁଁ କଳ୍ପାନ୍ତରେ ଆଣିଥିଲି ପଦ୍ମ ଆସନ ।
ଏଣୀ ନୟନୀ ଦେବବଧୂଙ୍କର ବଦନ,
ଅଣଯତନେ ନିର୍ମାଣ କଲି ଏଣୁ ଧ୍ରୁବ କହିଲି ସ୍ୱେ ବଚନ ।। ୧୫ ।।

ତ୍ରିପୁରାରି ଅରିଧନୁ କି ଚଞ୍ଚଳ ଚୋର ବାଳକାଙ୍କ ଅଳକ,
ତରୁଣୀଙ୍କ ଗଣ୍ଡସ୍ଥଳ କର୍ଣ୍ଣିସ୍ଥ କି ତରଳତର ଭ୍ରୂବଲ୍ଲିକ ।
ତାର ଲାବଣ୍ୟରାଶି ସମୁଦ୍ର ଗମ୍ଭୀରତା,
ତପସ୍ୟାକରି ଗଣେଶମୂର୍ତ୍ତି ଧରି ବର୍ଣ୍ଣି ନ ପାରିବେ ପଣ୍ଡିତା ।। ୧୬ ।।

ଥକିତ ହଦନେଶ ଲାଜେ ସେ ସଫରୀ ସ୍ଥାନକଲେ ଜଳ ଭିତରେ,
ଥରେ ଗୃହିଣ ଚମସ୍ତ ଚମୂସାର ଥାଇଁ ନ ପାରିଲେ ନଗରେ ।
ଥାନ କଲେ ସେ ଗୀତ ଗହନ ଗହନରେ,
ଥିବ କି ଉପମା ଦିବଭୂବତଳେ ସବୁ ଜିଣିଲା ଲୋଚନରେ ।। ୧୭ ।।

ଦେଖିବା ନା କି ସଂସାରେ ସୁନ୍ଦରୀର ଦିବ୍ୟ ନାସା ସମଉପମା,
ଦୃଷ୍ଟିହୀନ କବି ବୋଲି ତାକୁ ଜାଣ ଦ୍ୟନ୍ତ ଯେ ତିଳଫୁଲ ସମା ।
ଦିଗନ୍ତରେ ଏ କଥା ପ୍ରମାଣ ଯେଣୁ ତାର,
ଦକ୍ଷନୋହେ ତାକୁ ଅମଙ୍ଗଳ ନାମ ଉସମସ୍ତ ବୃକ୍ଷ ବାହାର ।। ୧୮ ।।

ଧନ୍ୟପଣ ଧିକ ହେଉ ସେ କବିର ଧୀଷଣା ଧିକ ଧିକ ହେଉ,
ଧୀର ବୁଦ୍ଧିରେ ତୂଣୀର ତୁଲ୍ୟକରେ ଧଇର୍ଯ୍ୟ ରସାତଳ ଯାଉ ।
ଧନୁଗୁଣରେ ଖସି ପ୍ରାଣୀ ପ୍ରାଣ ହରଇ
ଧର୍ମନନ୍ଦନ ସମାନ ଅଦୟାକୁ ଶରକୁଳକୁ ଯେ ବହଇ ।। ୧୯ ।।

ନିର୍ମଳରେ ମୁକୁତାମଣି ତଥି ନିଶିଦ୍ଧବସେ ବିସ୍ତଜଇ,
ନ ଜାଣି କବି କବି ସମ କରଇ ନିନ୍ଦିତନେଣ ସେ ବହଇ ।
ନୀରଜବନ୍ଧୁ କିରଣ ଅସ୍ତହୋଇଲେଣି
ନିଶାଚରୀ ଗୁରୁ ଅସମାନ ତେଣୁ ପ୍ରକାଶ ରବିକାନ୍ତେ ଯେ ପୁଣ ।। ୨୦ ।।

ପାନେ ନିଶ୍ୱାସ ସମହେବ ବୋଲି ପଦ୍ମାକରେ ପଡ଼ି ବହଇ,
ପାଇ ମଦଗନ୍ଧ ଶୀତ ଗୁଣତେଣୁ ସ୍ମରଣମାତ୍ରେ କ୍ଷଣେ ଥାଇ ।
ପୁଷ୍ପପରାଗ ପଡ଼ଣ ମାର୍ଗ ନ ଦିଶିଲା
ପରମ ମନ୍ଦଭାବ ତେଣୁ ଭଜିଲା ପୃଥ୍ୱୀ ତା ଗୁଣ ପାସୋରିଲା ॥ ୨୧ ॥

ସ୍ଫୁରିତ ସୁରୁଚୂତ ମୁକୁଳ କାଳେ ସ୍ଫୁଟ ଚନ୍ଦନବିନ୍ଦୁ ବହେ
ଫୁଟିଥାଇ ଯେଉଁ ବିରହୀ ହୃଦୟ ଫୁରୁଣା ହରିଅଙ୍ଗ ଦହେ,
ଫଣୀଅଶନ ଅଟଇ ଏହୁ ସର୍ବଦିନେ
ସ୍ଫୁରୁଅଛି ମୋତେ ବାରବାର ହୋଇ ପାଇ ତା ଅବଗୁଣମାନେ ॥ ୨୨ ॥

ବିରେଚକର ପ୍ରଚଣ୍ଡ ଘୂର୍ଣ୍ଣୀବାଜି ବିଷମତ ପତଅବନୀ
ବିପୁଳ ସୂର୍ଯ୍ୟକାନ୍ତମଣି ଜ୍ୱଳନେ ବଢ଼ଇ ବହୁ ବନଅଗ୍ନି
ବିଶେଷରେ ଯେ ଏହାଙ୍କ ତେଜ ସଙ୍ଗେ ନେଇ
ବହ୍ନି ନିଦାଘ ସମୟେ ସର୍ବଜନ ମାନସ ବିକଳ କରାଇ ॥ ୨୩ ॥

ଭସ୍ମପାଟଳ ପାଂଶୁ ଚୂର୍ଣ୍ଣଶର୍କରା ଭୂରିପାଷାଣ କଣାତୃଣ,
ଭମାଇଦେବେ ଆସଇ ବଜ୍ରଘାତେ ଭୟ ଭଜନ୍ତି ଚକ୍ଷୁଗଣ ।
ଭାଞ୍ଜିପକାଇ ତରୁପ୍ରାବଳ ବେଗଘାତେ
ଭ୍ରମଇ କୃକାସ ଯେନ ଶ୍ମଶାନରୁ ବିଶ୍ୟଘୂଣଯେ ବହୁମତେ ॥ ୨୪ ॥

ମନୋଜାମ୍ବୁଦ ଜାମ୍ବୁଦଳନ କାଳେ ମହତ ନୀପଗନ୍ଧ ଭାବେ,
ମୋହଇ ତରୁଣ କାମିନୀ କାମିନୀକରକୁ କଞ୍ଚିତ ସ୍ୱଭାବେ ।
ମୂଢ଼ମଣିଲି ଆଜ୍ଞ ମରୁତ ମରୁତକୁ,
ମନ୍ଦଗତି ଏତେଡ଼ କଳ୍ପନା କରଇ ଅତୁଲ୍ୟ ତୁଲ୍ୟ ହୋଇବାକୁ ॥ ୨୫ ॥

ଯଦି ସେ ଦିଶେ ଶେଫାଳିକା ସୁରଭି ଯତ୍ନେ ଯେନଚଳେ ଶରଦେ,
ଯୁବା ପ୍ରମଦା ପ୍ରମଦା ମୋଦଝଞ୍ଜେ ଯାଦବ କାଳଭେଦ ହୃଦେ ।
ଯଶ କଦମ୍ବ କଦମ୍ବ କୁସୁମର ମାଳେ,
ଜ୍ୟେଷ୍ଠ ଧରଣୀ ଧରଣୀ କି ଖଣ୍ଡିଲି ଗନ୍ଧବାହ ଯାପବନ୍ଧୁଳେ ॥ ୨୬ ॥

ରାଧାବାଧାର ଦୋଷଗଣ ଗଣନ୍ତେ ରହିଲା ସପ୍ତବର୍ଣ୍ଣ ପୁଣି
ରାଗଶାବନ ଶାବନକ ବନ୍ଧୂକ ସମସ୍ତ ହିମଦାନ ଜାଣ ।
ରାଜୀବରାଜି ବନ୍ଧୁଳର ଶୋଭାକାଳେ
ରେଖେ ବିଦୋଷିବ ଦୋଷୀଙ୍କି ଦହଇ ରାକାଚନ୍ଦ୍ରମସିତଳେ ॥ ୨୭ ॥

ଲକ୍ଷ ଲକ୍ଷ ଅଂଶେ ··· ··· ··· ସମ ନୋହିଲପ୍ୟେ ପାତକୀ
ଲାବଣ୍ୟ ବାସ ବାସ ମୃଦୁଅଙ୍ଗେ ସେ ଲାଗି ସେବେ ସଦା ମୋହକ
ଲଭି ଜନମ ଜନ ମନୋରଥ ଦାତା ସେ
ଲକ୍ଷ ନକର କବି କବିକ ଯେଣୁ ଅଷ୍ଟଅଇଶ୍ବର୍ଯ୍ୟ ଦାତା ସେ ।। ୨୮ ।।

ବ୍ରହ୍ମା ସୁରରାଜା ସୁର ରାଜା ଗୁରୁ ବର୍ଣ୍ଣନ୍ତି ଯାର ଗୁଣବୃନ୍ଦ
ବିଶେଷେ ତାରାଳ ତାରାଳ ନ ଚେଳ ବିଧିକରକୁ କଳା ମନ୍ଦ
ବଳଗମେ ସେ ତେଣୁ ତାର ଗମ୍ୟ ସ୍ଥଳକୁ
ବରସୁନ୍ଦର ତା ଦରତାକୁ ନନ୍ଦେ ବିଡମ୍ବ କେତା ବ୍ରତୁଲକୁ ।। ୨୯ ।।

ଶୁଦ୍ଧ ··· ··· ··· ··· ଶୁଭ ଲାବଣ୍ୟରେ ନିର୍ମାଣ
ଶିଶୁ ଅରୁଣ ଅରୁଣ ତା ଖଣ୍ଡଇ ସମ ସମ୍ପୂର୍ଣ୍ଣ ବହୁଗୁଣ ।
ଶ୍ୟାମା ଅଧର ମାଧୁର୍ଯ୍ୟ ମଧୁରସୁ ମୋହେ
ଶୀଳଭାବରେ ବର୍ଣ୍ଣି ବର୍ଣ୍ଣନଗୁଣ ଗୁଣେକେ ଧାତାଯୋଗ୍ୟ ନୁହେଁ ।। ୩୦ ।।

ସାରସରାଗ ସାରଧରାଗ ନେହା ସୁଘ୍ରାପ୍ତି ଘ୍ରାପ୍ତି ଦନ୍ତପନ୍ତି,
ସହଜ ଜ୍ୟୋତି ଦେଖି ସିନ୍ଧୂରେ ଲୁଚେ ସୁଜାତ ଜାତ ଜ୍ୟୋତିମୋତି ।
ସେ ସୁରମଣି ସୁରମଣି ମଣି ଦଶମା
ସୁବାଣୀରସେ ବାଣୀରସେ ବିରଞ୍ଚିବାଦ ମାଧୁର୍ଯ୍ୟର ମୋହିମା ।। ୩୧ ।।

ସୃଷ୍ଟି କୋଟିଜନ୍ମେ କବି କବି ହୋଇ ମନ୍ଦହାସ ଅବା ବର୍ଣ୍ଣିବ,
ଶଶୀ ଭବକ ଭବନ ଭବଲୀଳା ସେ ସନ୍ଧି ବର୍ଣ୍ଣି ନ ପାରିବ ।
ଶ୍ୟାମାକାନ୍ତର କାନ୍ତରତି ଲତାରମୂଳ
ସୁଖବାରିଧି ବାରିଧିକାର କରେ ଯେଣୁ ନିର୍ମାଣ ଭକ୍ତଆଳ ।। ୩୨ ।।

ହରି ସାରସେ ସରସେ ଗଣ୍ଡମଣ୍ଡେ ଭାନୁ ଭାନୁ ଭଜେ ତାଙ୍କ
ହତାକନ୍ଦର ନନ୍ଦନର ହେତୁ ହରିଶର୍ମଦାମା ଚିବୁକ ।
ଗ୍ରୀବାଦଶମା ସୁବର୍ଣ୍ଣ ବର୍ଣ୍ଣନା ନଗଲା
ହିମାଙ୍କଂ ନାସା ନିଶ୍ବାସ ମୋହଗୁଣ ଗୁଣନ ତାକୁ ବନ୍ଧୁକଲା ।। ୩୩ ।।

କ୍ଷୀରାବ୍ଧିସୁତା ପ୍ରଭୁ ପ୍ରଭୁତ କୃତ୍ୟ ଯଶକ୍ଷପେଶ ଗଙ୍ଗାଜଳେ,
କ୍ଷଣେ ମଜ୍ଜନେ ଜନେହେ କୋଟି କୋଟି କଲ୍ମଷ କ୍ଷୟକର ହେଲେ ।
କ୍ଷିତିର ତଳେ କର ପାଦଭରସା,
କ୍ଷମେ ବାଲ୍ମିକି କହେ ପ୍ରତି ଯମକ ସ୍ତୁତିମଣ୍ଡନ ଚଉତିଶା ।। ୩୪ ।।



# ଢିଶାମେଘ ଚଉତିଶା

( ଢଗ—କାଳୀ )

କହନ୍ତ କୃଷ୍ଣ ଦୂତୀ ଅଗ୍ରତେ କୋମଳ ମୃଦୁବାଣୀ,
କି ଦୋଷେ ରୋଷକରି ଅନ୍ତର କଲା ମୋ ପ୍ରାଣମଣି ।
କାହାର ଆଗେ କହିବି ଦୁଃଖ କେ ମୋର ଫେଡ଼ିବ ମାନ,
କମଳ ସମ୍ଭବ ମୋତେରେ ଦୟା ନ କଲା ଜୀବଧନ ।। ୧ ।।

ଖଟି ମୁଁ ଥିଲି ତାର ଚରଣେ ନଶୀ ଦିବସ ହୋଇ,
ଖି ... ... ... ... ବିଚ୍ଛେଦକଲା ଚନ୍ଦ୍ରମା ମୁହିଁ ।
ଖି ... ... ... ... ... ... ଏବେ କିସ,
ଖିନ୍ନମଣ୍ଡମା ବନୁବେଶ ... ... ବନ୍ଧୁଜନ କଲି ବଷ ।। ୨ ।।

ଗୁପତ ରତି ସମ୍ଭାରକାଳେ ଗଣ୍ଡେ ଚୁମ୍ବନ ଦେଲା,
ଗଳାରହାର ଖସି ମୋ ହୃଦେ ... ... ଖେଳୁଥିଲା ।
... ... ... ... ... ହାର ଗୁପତେ ରଖିଥିଲି,
ଗଳାରେ କେତେହିନ ଅନ୍ତରେ ପୁଣି ପିନ୍ଧାଇଦେଲି ।। ୩ ।।

ଘନଜଘନାର ଘେନାଘେନିର ସୁଖ କହିବି କେତେ,
ଘନ ବିଜୂଳି ପ୍ରାୟେ ହୋଇଣ ରହିଲି ମୋର ନେତେ ।
ଘେନ ସେ ଥିଲା ଯେତେ ପ୍ରକାରେ ପ୍ରାଣୁ ଅଧିକ କରି,
ଘେନିଲି ମନେ କି ରୋଷତାର ତେଜିଲା ଜୀବେଶ୍ୱରୀ ।। ୪ ।।

ଙଶା ଶପୂନେ ନାଚଣ ଅଙ୍କେ ଧୀରେ ପଡ଼ିଲା ଯାଇ,
ନାସାଫୁଲାଇ କୋପେ ବଚନ ବୋଇଲା ପଦ୍ମମୁହିଁ ।
ନେତ୍ର କଟାକ୍ଷେ ଚାହିଁଣ ମୋତେ କଲା ସେ ମାନହାନ,
ମାରଜମୁଖୀ ବଚନ ଶୁଣି ରୋଷେ ରହିଲି ଘେନ ।। ୫ ।।

ଚତୁରୀମଣି ଚିତ୍ତେ କାତର କି କପେ ବଗୁହିଲା,
ଚକୋର ଯେହ୍ନେ ଚନ୍ଦ୍ର ନ ପାଇ ତେସନେ ପରାହେଲା ।
ଚନ୍ଦ୍ରପାଶକୁ ଚାହିଁଣ ବା!ଳା ଚିତ୍ତେ କାତର ହୋଇ,
ଚରଣ ଧରି ଚାଟୁବଚନ ଭାଷିଲା ଚନ୍ଦମୁହିଁ ।। ୬ ।।

ଛୁଡ଼ୁ ଛୁ ତନୁ ଛୁଇଁଲ ହନୁ ତାଭାବ ଗୁଣି ଗୁଣି ॥
ଛୁର ଗୃଣ୍ଡାଳ ବୁଦ୍ଧି ଧଇଲ ବନ୍ଧୁରେ ହେଲେ ମ.ମା ।
ଛୁନ୍ତ ମନ୍ତ୍ରମା ଆଗରେ ଦୂଷ୍ଣ ଜଣାଅ ମୋର ଦୁଃଖ ।
ଛୁଦ୍ର ନୟୂନ ସଫଳ ହେବ ଲୁହିଁ ତୋ ହନୁ ସୁଖ ॥ ୭ ॥

ଜାଣୁକ ନାହିଁ ଯୁବତୀବର ଗବାକ୍ଷେ ନିଦ୍ରା ଗଲି ।
ଜଗି ବସିଲ ପାହାନ୍ତି ହୋଇ ଚନ୍ଦ୍ରମା ଉଦେ ହେଲି ।
ଯାମିନୀ ଅର୍ଦ୍ଧେ ତୋଳିଲ ଯାଇ ମୁହିଁ ପଙ୍କଜ ନେତ୍ରୀ ।
ଜନ ମନୁଷ ଚହଲ ନାହିଁ ଦୁଜ ପହର ରାତି ॥ ୮ ॥

ଝୀନବସନା କୁନ୍ଦଦଶନା ଝଗଡ଼ା ଯେତେ କଲି ।
ଝିମନ୍ତେ ସୁଖ ହରଙ୍ଗ କରଣ ଗବାକ୍ଷୁ ଓହ୍ଲାଇଲି ।
ଝାଣ୍ଟିକାରେଣ ହଜପୁ କରି ପଲଙ୍କେ ପହୁଡ଼ିଲି ।
ଝଳବରନୀ ତୃଷା ଆରତେ ଜଳ ମଣୋହି କଲି ॥ ୯ ॥

ନାଗସ୍ୱମଣି ମାନଙ୍କପରେ ବାନ୍ଧବ ଶିରୋମଣି ।
ନାଚୁ ଯେ ଥିଲି ରହାସ ଖେଳେ ସ୍ୱଧାରଜତ ଗୁଣି ।
ନିର୍ମଳ ଚନ୍ଦ୍ର ଆନନୀ ବେଶ କ ସେ ଦେବ ଉପମା ।
ନେତ୍ର ଅଞ୍ଜନ ଗୀବନ ମୋର ବଳକ କଲି ରମା ॥ ୧୦ ॥

ଟେକସ୍ତନୀକ ଆଣୁ ବଳାଇ ଟିକଏ ନାହିଁ ସୁଖ ।
ଟାଳ ଟୋପରେ ପକାଇ ମୋତେ ଦେଉଛୁ ଘୋର ଦୁଃଖ ।
ଟମାଳ ଭାବେ ଟାଣ ଭାଙ୍ଗିଲି ଜାଣିଲ ନାହିଁ ମୁହିଁ ।
ଟିକାଏ ଦୟା ନ ବଶେ ହିଆ ଏତେଡ଼ ସେ ନିଷ୍ଠୁର ଦେହି ॥ ୧୧ ॥

ଠଣ କଶୋଗ୍ୱ ମୋ ପ୍ରାଣେଶ୍ୱରୀ ଠାବେ କହିବ ତାକୁ ।
ଠିକ କରି ବସ୍ଥୁରୁଥିଲି ମୋ ଅଙ୍ଗ ଚଞ୍ଚାଇ ବାକୁ ।
ଠୁଲେ ଜାଣିଲ ମୋଠାରେ ତାର ଏତେଡ଼େ ସୁଦୟା ଚଉ ।
ଠିକରେ ହରିଦାସ ଭଜଇ ଧରି ତା ମାଳନ୍ତ ॥ ୧୨॥

(ଦେଶ—ମେଘ)

ଡ଼ାଳମ୍ବଦଶନୀକ ପାଇବ କାହିଁ
ଡୋଳାଇ ଗଲି ଏତେଡ଼େ ସ୍ନେହ ଲଗାଇଯେ ।

ତୋଳେ ପ୍ରତିମା ମୁଖ ଚନ୍ଦ୍ରମା ।
ତାକ କପୋଳ ପ୍ରାୟେ ହେଲଟି ବାମା ଯେ ।। ୧୩ ।।

ତମ ହୋଇଥିଲା ତା ଲାଗି ମୁହିଁ ।
ତାଳେ ନଦ୍ଧର୍ସ୍ଥା କଲା ପଙ୍କଜମୁହିଁ ।
ତକା ବାଜିଲା ଯେତେ ନାହିଁକ ମନେ
ତାଳେ ଜାଣିଲେ ଗୋପୀ ଗୋପର ଜନେ ।। ୧୪ ।।

ଆଣି ତାହାକୁ ଭେଟ କରାଅ ସହ୍ମୀ,
ଅଙ୍ଗ ସହ୍ବରେ ନଅ ଜୀବନ ଧ୍ୟାୟି ଯେ ।
ଅନେକ ଦିନୁ ଆଶ ମୁଁ କରିଅଛି,
ଅଣେ ଖେଉଟ ମୋତେ ଦିଅ ମୃଗାକ୍ଷି ରେ ।। ୧୫ ।।

ତରୁଣୀ-ମଣି ମୁଖ ଶରଦ ଶଶୀ,
ତଳୟେ କଲା ମୁହିଁ ପ୍ରାଙ୍ଗଣେ ବସି ରେ ।
ତୃଷା ଆରତେ ଜଳ ପ୍ରାୟେ ମଣିଲା,
ତାତୁଲ ଶଶୀ ଜୀବ ପ୍ରାୟେ ମଣିଲା ରେ ।। ୧୬ ।।

ଥରେ ନ କଲା କମ୍ପାଇ ପୀରତି ଗୁଣ,
ଥନ ଅଙ୍କରେ ମୋତେ ଧରନ୍ତା ପୁଣ ଯେ ।
ଥାଆନ୍ତି କୋଳ ମଧ୍ୟେ ସର୍ବଦା ମୁହିଁ,
ଥୁଲେ କହ ତା ନାମ ଶଶାଙ୍କମୁହିଁ ରେ ।। ୧୭ ।।

ଦଇନ କରୁଅଛି କେ ଦେବ ଆଣି,
ଦାସପଣେ ଖଟିବି ମୀନନୟନୀ ଯେ ।
ଦରିଦ୍ର ହାତେ ଧନ ଦଇବ ଦେଲା,
ଦାରୁଣ ବିଧି କମ୍ପା ବିଚ୍ଛେଦ କଲା ଯେ ।। ୧୮ ।।

ଧନ ଜୀବନେ କାହିଁ ନ କଲି ଆଶ,
ଧରଣ ତୋର ନାମ ରାସ ଦିବସ ଯେ ।
ଧଇର୍ଯ୍ୟ ଧ୍ୱଂସ ମୋର କଲାନି ସେହି,
ଧାସିବ ଶୋକ ଜଳେ ଯାଉ ମୋ ଦେହି ଯେ ।। ୧୯ ।।

ନୀଳ ନୟନେ ··· ··· ବଚନ ଆରତ
ନବ ପଲ୍ଲବାଙ୍କୁର ଦେଲା ସଙ୍କେତ ଯେ ।
ନାହିଁକି ତୋର ମନେ ସେ କଥାମାନ,
ନିରାଶ କଲା ଏବେ ମୋ ଜୀବଧନ ଯେ ॥ ୨୦ ॥

ପୁଷ୍ପ କେତକୀ ତଳ ଯେନ ଅବଳା,
ପ୍ରସନ୍ନ ହୋଇ ମୋତେ ବଢ଼ାଇ ଦେଲୁ ଯେ ।
ପାଇବ ଆଉ କାହିଁ ସେ ସୁଖ ଲୀଳା,
ପଦ୍ମନୟନା ମୋତେ ଏହା ସେ କଲୁ ଯେ ॥ ୨୧ ॥

ଫୁଟିବ ବଧୂ ମୁଖ ଝାଳେ ତୋହର,
ଫରୁଣାପଣ ନକ ଥିବ ତୋହର ଯେ ।
ଫେଡ଼ ସନ୍ଦେଶ କାହା ଆଗେ କହିବ,
ଫାନ୍ଦେ ପଡ଼ିଲୁ ପକ୍ଷୀ ପ୍ରାୟେ ହୋଇବ ଯେ ॥ ୨୨ ॥

ବୃଷଭାନୁ ନନ୍ଦନୀ ରାଜ କୁମାରୀ
ବଡ଼ିମା ପଣେ ଅଛୁ କେ ତାକୁ ସରି ଯେ ।
ବନଜନେତ୍ରୀ ବାଳୀ ଗୁଣ ଗଉରୀ,
ସାଧୁଛୁ କାମ କଳା ସମ୍ପୂର୍ଣ୍ଣ କରି ଯେ ॥ ୨୩ ॥

ଭାବରେ ବଶ କରି ଭେଲା ଭଣ୍ଡିଲା,
ଭରି ମହତ ଏହିଠାରେ ଢଳିଲା ।
ଭଲେ କି ଚକ୍ଷୁ ଭେଟ ପଡ଼ିବ ମୋର ।
ଭଜଇ କୃଷ୍ଣ ଦାସ ହରି ପୟରରେ ॥ ୨୪ ॥



# ପୁରବୀ ଚଉତିଶା

( ରାଗ—ପୁରବୀ )

କେଉଁ କାମୁକ ବରଦେ ରହେ, କାନ୍ତା ଚନ୍ଦ୍ରାକର ବାଧା ସହେ ।
କାମେ ଉନ୍ମାଦ ଦଶା ଲଭି ... ... ... ... ... ... ... ।
ରେ କାମଦୁହା, କଳାଗୋଷ୍ଠ କାମକେଳି କାମଦୁହା
କରି ଏକା ଛତେ କଲି ଲୁହା
କାମକାଣ୍ଡ ସୁହାସିନୀ ଯାଇ କୁହାରେ ॥ ୧ ॥

ଖମଣ୍ଡଳ ଏବ୍ହ ଘନ ଘୋଷେ, ଖେଳାଇ ବଜୁଳି ମନ ତୋଷେ,
ଖେଳୁଥାଇ ତୋତେ ଖେଳାଇ କୋଳରେ ଖେଳୁଅଛୁ ଏବେ ମାନରୋଷେ ।
ଆରେ ଖଣ୍ଡବାଣୀ, ଖଣ୍ଡରସେ ମିଶିଗଲା କ୍ଷାରପାଣି
ଖଣ୍ଡ ଖଣ୍ଡ ହୋଇଗଲା ସବୁ ଆଣି
ଖଣ୍ଡି ଦେଲା ସବୁ ସୁଖ କୁଶପାଣି ॥ ୨ ॥

ଗେଲାଇ ଗେଲାଇ କହୁଥାଉ, ଗୁମାନ ଯେମନେ କହୁଥାଉ ।
ଗିରିଗିଳ ମେଘ କବା ବସି ଖାଇଦେଉଛୁ ଦେଖାଇ ଦେଉଥାଉ ।
ଆରେ ଗୋଷ୍ଠବର, ଗେଲେ ବୋଲୁ ଯେ ଧଇଲେ ପୟୋଧର
ଗିଳୁଅଛୁନା ପୟୋଧର ଏ ଧର
ଗୁଣି ହୋଇ କେଉଁ ରସ ମନେଧର ॥ ୩ ॥

ଘନସ୍ତନ ଅଙ୍ଗେ ଘର ... ... । ... ... ... ... ...
ଘେନ ମନକୁ ବୋଲଇ ମନେଅଛୁ ପଶ ଘନରସ ବରଷିବା ।
ଆରେ ଘଟକୁମ୍ଭ, ଘେନ ମଥାପୋତି ଦେଉଅଛ ଘଣ୍ଟା
ଘେନା ନ ଯାଇ ସେକାଳ ଭବଲୁମ୍ଭ,
ଘର୍ମଘୃତ ପ୍ରାପ୍ୟେ ହୋଇଯାଉ ଲେମ୍ଭ ॥ ୪ ॥

ମରେ ... ... ... ... । ... ... ... ତୋ ସୁନ୍ଦରପଣେ ।
ମାରଜ ଚରଣ କନଷ୍ଟ ଅଙ୍ଗୁଳି କୋଣକାନ୍ତ କଣ ସମଜାଣେ ।
ଆରେ ନାଗଗତି, ନବନାଗସ୍ତ୍ରୀଗଣେ ତୁ ନରପତି ।
ନାନାଭଙ୍ଗୀ ତୋତେ ଅନୁସରିଛନ୍ତି ।
ନାକନର ନାଗେ ଏବ୍ହି ପରତିତି ॥ ୫ ॥

ଚଉଦଭୁବନ ଯାକେ କାହିଁ; ଚତୁରୀ ତୋର ଚତୁରୀ ନାହିଁ ।
ଚଳ ଚନ୍ଦ୍ରାଣୀ ହାସବେଷ ଅଛନ୍ତି ପରସ୍ପରେ ଜଗାଜଗି ହୋଇ ।
ରେ ଚଳାପାଙ୍ଗି, ଚଳି ଚଳିଲେ ଚଳଇ ସବୁଭଙ୍ଗୀ
ଚାହିଁଥାଇ ସେ ଆଶ ଚତୁର ଜଙ୍ଗ
ଚନ୍ଦ୍ର ନାସାପଲ୍ଲବ ତାର ସଙ୍ଗୀ ।। ୬ ।।

ଛୁଇଛୁ ଯେ ତୋର ଛୁଇ ଦଣ୍ଡେ, ଛୁଡ଼ ସେହୁ ଭାଗ୍ୟବନ୍ତ ମୁଣ୍ଡେ ।
ଛୁଇଲି ତୋ ସଙ୍ଗ ଛୁଡ଼ିଲ ଛୁକାର ଛୁଆଁଇଲ ଆଣି ମୋର ପିଣ୍ଡେ ।
ଆରେ ଛଟକାକ୍ଷି, ଛୁରି ମାରିବା ବେଦନା ହେଲି ଲକ୍ଷି ।
ଛୁଡିଗଲା ଯେହ୍ନେ ଡେଣାଛୁଡ଼ା ପକ୍ଷୀ
ଛାଡିଦେଲ ସୁଖ ଦୁଃଖ ଆଗେ ରଖି ।। ୭ ।।

ଜୀର୍ଣ୍ଣବସ୍ତ୍ର ଯୁବାଜବାଧସ୍ତ, ଜଡ଼ି ତା ସଙ୍ଗେ ଭାବଅବଧର ।
ଯିବାକୁ ମନ ହୋଇଛୁପର ବୋଲୁଥାଉ ଉଭଜରେ ଯାକାଧର
ଆରେ ଜୀବନେଶୀ, ଜଳଧର ପରିଣତ ଜମ୍ବୁକେଶୀ,
ଜପୁଅଛୁ ତୋର ନାମ ଅହର୍ନିଶି,
ଯୋଗୀ ପରାଏ ତୋ ନାମ ଘୋଷି ଘୋଷି ।। ୮ ।।

ଝଳଗୋସ୍ତ ହୋଇ ଅନାମ୍ବର, ଝୁଲି କହୁଥାଇ ଆଡ଼ମ୍ବର,
ଝଷକେତୁ ନିକେତନ ଭାଙ୍ଗିବାକୁ ଝଷନେତ୍ରୀ ହେଉ ଦିଗମ୍ବର ।
ଆରେ ଝୀନବାସୀ, ଝୁରି ଝୁରି ତୋତେ ଦୁଃଖେ ଗଲି ଭାସି
ଝଡ଼ିଗଲି ତନୁ ଝଡ଼ିଗଲା ଆସି
ଝାଙ୍କି ବନ୍ଧୁଛୁ ମଦନଶରରାଶି ।। ୯ ।।

ନ ଜାଣି ହୋଇ ନଦଯାଉ, ଞବ ଝୁଙ୍କିଦେଲେ ବନ୍ଧେଷ୍ଟହୁଁ ।
ନ ପାରଇ ଆଜ ବୋଲିବୋଲୁ ନଦଭାଙ୍ଗିବା ଭଙ୍ଗୀ ଶିଖିଛ କାହୁଁ ।
ଆରେ ନଟଅଙ୍ଗୀ, ନେସେ ନାଚୁଅଛୁ ତୋର ସବୁ ଭଙ୍ଗୀ
ନାହିଁ କଲେ ନ ପାରୁ ମୋ ବୋଲ ଭାଙ୍ଗି ।
ନାଗମଣି ଜାଣି କରୁଅଙ୍ଗେ ସଙ୍ଗୀ ।। ୧୦ ।।

ଟଳଟଳହୋଇ ମାରମଦେ, ଟେକ ରଦଛଦ ପୀଡ଼ିରଦେ
ଟିକିଏ ଟିକିଏ ରହି ରହି ପଦେ ପଦେ କହୁ ଅଧେ ଅଧେ ।
ଟେକସ୍ତନା, ଟଙ୍କଧର ପରଶର ବାର ମେହ୍ଲା
ଟୋପି ଚନ୍ଦନଲତା ଜୀବନଯେନା
ଟୋକାପର ତୋର ସବୁ ନବାଙ୍ଗନାରେ ।। ୧୧ ।।

ଠକାର ରସେ ଯେ କରୁ ମାନ, ଠିକେ ମୁଁ କରନ୍ତେ ରୁଷ୍ଟମାନ,
ଠେସିଦେଇ ଟେଣେ ଉରରେ ଉରଜ ଟିପିଦେଉ ଟେଣେ ନଖମୁନ
ଆରେ ଠଣମୁଖୀ, ଠାକୁରଙ୍କୁ ଧୂମରଇ ବୁଜଆଖି ।
ଠିକେ ମୁଟଖ ମୁଖଦେଇ କରୁ ସୁଖୀ

ଠୁଳେ ରାଜେନ୍ଦ୍ରଦେବଙ୍କୁ କଣିରଖି ॥ ୧୨ ॥
... ... ... ... ରସୁ, ଡେରିଦେଇ ପ୍ରେମ ମନ୍ଦେ ହସୁ ।
ଡ଼କାଇତ କାମ ଡ଼ାଂକୁଆ ଡ଼ାକଲା ବୋଲି କେଳିସଦନ ପଶୁ ।
ଆରେ ଡାକମନ୍ଥା, ଡାକ ଠାରିବା ଭଙ୍ଗୀ ନ ଯାଇ ବୁଝା
ଡୋଳା ଗୁଳିବା ଆଣି ଅନଙ୍ଗ ବୁଝା
... ... ... ... ... ... ... ॥ ୧୩ ॥

ଢଳଢଳ ପାଦ ଚାଲୁଥାଉ, ଢାଳି ନେତ୍ରରସ ଢାଳୁଥାଉ ।
ଢଗ ପଦେ ପଦେ ମିଶାଇ ସଖୀଙ୍କ ସରସ ବଚନେ ଛନ୍ଦୁଥାଉ ।
ଆରେ ଢାଳେକ୍ଷଣୀ, ଢୋ଼କୁଥାଇ ମଧୁରରସେ ତୋ ବାଣୀ,
ଢାଳି ଦେଉଥାଉ କର୍ଣ୍ଣେ ସୁଧା ଆଣି ।
ଢ଼ଳଯାଇ ଶୁଣି ବେଣୁ ବୀଣାପାଣି ॥ ୧୪ ॥

ଅଭିସାର ଯେବେ କରିଆସୁ, ଆଶ୍ୱାସି ମୋତେ ତୋ ଭ୍ରମନାଶୁ ।
ଜେପରେ ଉରଜ ନଦବା ଆଜକୁ ଆଉଜାଇବା ଉରଜେ ବସୁ ।
ଆରେ ଅଳକମ୍ମା, ଅଥସର୍ବ ତୋ ସରିକ ପଲକମ୍ମା ।
ଅଙ୍ଗହିଁ ନ ଭ୍ରାନ୍ତ ସମହିଲକମ୍ମା
ଅଙ୍କେ ଧରିବ ରତେ ବଳକମ୍ମା ॥ ୧୫ ॥

ତପସିତ କାଳ ବରଷାରୁ, ତରୁଣୀ ମୋତେ ଉଦ୍ଧରି ଧରୁ
ତାଳତୁଳକସ୍ତନ ତାଡିବାରେ ମୋର ଅଙ୍ଗ, ତପତ ଶୀତଳ ହରୁ,
ଆରେ ତଳୋଦରୀ, ତୃଳତଳ୍ପେ ମୋତେ ଥାଉ ତଳକରି
ତରଳତାକୁ ଆଉ ତରଳକରି ।
ତଳେରଖି ଅଣୁ ତନପୁର ଶିରୀ ॥ ୧୬ ॥

ଥାଉ ଯେତେବେଳେ ମୋର ସଙ୍ଗେ, ଥପ୍ପୁ ନୋହୁ ଆଣୁ ପରରଙ୍ଗେ ।
ଥିର ଥିର କରି ଥରେ ଥରେ ଦନ୍ତଘାତ ଦେଖାଉ ଆଉ ଅଙ୍ଗେ ।
ଆରେ ଥିରଶ୍ରୋଣୀ, ଥିର କରୁନାହିଁ ଆଣୁପର ଶୋଣି
ସ୍ଥିତିଧର ଶରଦନ୍ତେ କରି ଖଣି
ଥପ୍ପେ କରିଛୁ ମନେ ତୋ ଭାବଆଣି ॥ ୧୭ ॥

ଦୟାଶୀଳା ଲେଖାଅପ୍ର······ । ଦୁର୍ଲଭ ତୋର ସମାନ ଦେଖା ।
ଦୟାର୍ଦ୍ର ଦୃଷ୍ଟି ଯାହାରେ ଦତ୍ତକରୁ ଦେବ ସୃଷ୍ଟିରେ ସେ ହୁଏ ଲେଖା ।
ଆରେ ଦରହାସୀ, ଦୂରେରଖି ତୋନ୍ତ ହେଲ ପରବାସୀ ।
ଦେହ ସୁହାଇଲ ଦୁଃଖ ସୁଖନାଶୀ
ଦାରୁଦ୍ରବ ପଦ ପଦ୍ମେ ହେଲ ଆସି ॥ ୧୮ ॥

ଧର୍ଷୀ ତଳେ ଧରଣୀଜାଙ୍କେ, ଧ୍ରୁବଲୋକେ ଧାତା ଓଁକାରନାଦକେ ।
ଧିଆନ ଯେ ତୋତେ କରନ୍ତି ସେ ପିନା ଧନ୍ୟ ମୂର୍ଦ୍ଧନା ବନ୍ଧୁର ପାଦକେ ।
ଆରେ ଧନ୍ତଧ୍ୱଂସୀ, ଧର୍ମମଧ୍ୟେ ପିନା ତୋତେ ପରଶଂସି ।
ଧୀରେ କହୁଥିଲେ ମନ୍ଦେ ମନ୍ଦେ ହସି
ଧଳାକର କଳାକର ଯାଇ ଲସି ॥ ୧୯ ॥

ନର୍ତ୍ତିତ ନାଟ ଯେବେ ନାଚୁ, ନାନା ପରକାରେ ଭଙ୍ଗୀ ଆଞ୍ଚୁ ।
ନେତ୍ର ନାସାମଣି କୁଚହାର ବେଣୀ ନଚ୍ଛଇ ଭ୍ରୂମୂଳରଚ ନାଚୁ ।
ଆରେ ନବରସା, ନାହିଁ ନାଗରୀ ତୋ ସମ ନବରସା ।
ନକଣ୍ଠରୁ ନେଇ ନବ ନବରସା
ନିରନ୍ତରେ କାମର ନବରସା ॥ ୨୦ ॥

ପ୍ରସଙ୍ଗେ ପକାଉ ଯେଉଁ କଥା, ପେଲଦିଅଇ ସେ ମନୁ ବ୍ୟଥା ।
ପାଞ୍ଚଲେ ପ୍ରପଟେ ହୁଅଇ ପ୍ରମାଣ ପଞ୍ଚଲକ୍ଷ ପୁରାଣ ପୋଥା ।
ରେ ··· ··· ··· ··· ··· ଜାଲଭଙ୍ଗୀ
ପୂର୍ଣ୍ଣ ତୋହଠାରେ ପରିହାସ ଭଙ୍ଗୀ
ପାସୋରିବାର ନୋହୁ ପରାଣସଙ୍ଗୀ ॥ ୨୧ ॥

ଫୁଲଇ ମନ ଫୁରୁଣା କରି, ଫରସେ କହୁ ହରଷ ଧରି ।
ଫୁଲ୍ଲମାପସମ ଶରୀର ନୟନାଦର ··· ··· ··· ··· ··· ।
··· ··· ଫିଙ୍ଗିଦେଲ ନ ଜାଣି ମୁଁ ସଙ୍ଗ ତୋର ।
ଫଳ ପାଇଲି ସେହି କର୍ମରୁ ଘୋର ।
ଫୁଟିଯାଉଛି ଯା ଦେହେ ଫୁଲଶର ॥ ୨୨ ॥

ବିବସନ କଲେ ନେତ୍ର ବୁଜ, ବରାଙ୍ଗ ଗୋପ୍ୟ କରିବା ହେଜ ।
ବଢ଼ ବିଡମ୍ବନା ଏହିକଥା ପିନା ଗଲ ମୋ ବପୁରେ ଯାଉ ହଜ ।
ରେ ବିଧୁମୁଖୀ, ବଢ଼ହୋଇ ବିଧୁବନେ ହେଉ ସୁଖୀ ।
ନହେ ଅନାଉ ବୁଲଉ ବୁଜୁ ଆଖି
ବିକ ହୋଇଥାଇ ସେହି ଭଙ୍ଗୀ ଦେଖି ॥ ୨୩ ॥

ଭାଙ୍ଗିଲେ କାମ ନ ଭାଙ୍ଗୁ ଭାବ, ଭାବନୀ କି ଚାହା କହିଦେବ ।
ଭଲ ସ୍ତନକୁ ଲଗାଇ ଭିଡ଼ିଧରୁ କହେ ଭାବୁକ ରାଜେନ୍ଦ୍ରଦେବ ।
ରେ ଭାଗ୍ୟଲଭ୍ୟା, ଭାବଜାଲେ ସୁଷମାରେ ଭାବଲୋଭ୍ୟା
ଭଙ୍ଗୀ ତୋର ଯେ ଦେଖିଛନ୍ତି ସଭ୍ୟା
ଭାରୁଣିଶିରୋମଣି ଭୋଗବନୀ ଭବ୍ୟା ॥ ୨୪ ॥

ମନ୍ଦଗତି ଅମନ୍ଦଗତା ଧରା, ମଞ୍ଜୁଳ ଅଙ୍ଗୀ ମଜଳ ଝରା
ମନସ୍ୱିନୀମାନଙ୍କ ସମର ପଣ୍ଡିତା ମନ୍ଦାକ୍ଷ ମଣ୍ଡିତା ମନୋହରା
ଆରେ ମୃଦୁଭାଷୀ, ମୃଦୁକଳେବର ମୃଜା ଅଭିଳାଷୀ
ମୋର ନୟନରେ ନୟନ ଉଲ୍ଲାସି ।
ମାର ଜଗତଜୟ ତା ମୋହ ପାଶି ॥ ୨୫ ॥

ଯୁବତୀ ତୋ ଶୋଭା ଯଶଦହ, ଯୁବା ନୟନ ଚୁମ୍ବକ ଲୋହ ।
ଯାଚକ ଯୋଷି ଯାଉଥାଉ ପାଲଟି ସ୍ୱହୁଁ ଯାହା ହେଉ ରହ ରହା
ଆରେ ଯଶସ୍ୱିନୀ, ଯନ୍ତ୍ରକର ସମ୍ପାଦକ ଅସିକନୀ
ଯୋଗୀ ଚିତ୍ତହରା ନବରସିକନୀ
ଯୌବନ ସୌଭାଗ୍ୟ ବିଧ୍ୱଂସକନୀ ॥ ୨୬ ॥

ରସନା ବଳାରେ କଟିପାଦ, ରଟିହଟି କରୁଥାନ୍ତି ନାଦ ।
ରତେ ଅନାରତେ ଲାଗିବାରେ ରତି ଗୋଟାଯାକହିଁ ନ ଯାଉ ନଦ ।
ଆରେ ରାଗବତୀ, ରତେ ରତିଙ୍କେ ସମାନେ ନୁହେଁ ରତି ।
ରମ୍ଭା ତୋର ଆଗେ କେଉଁ ରୂପବତୀ
ରତି ଦେଖିଲେ ତୋର ରହିବେ ଯତି ॥ ୨୭ ॥

ଲୋଡୁଏ କେବେ କହିବ ଆଉ, ଲାବଣ୍ୟ ଅଙ୍ଗୀ ମୃଦୁଳ ବାହୁ ।
ଲୋଡୁଛି ଶୋଇବାବେଳେ ମୋର ଅଙ୍ଗେ ଲୁଗା ପରାଏ ଯେ ଲାଗିଥାଉ ।
ଆରେ ଲୀଳାଲୋଳା, ଲାସ୍ୟରତ ଗଞ୍ଜନ ସମାନ ଡୋଳା ।
ଲୀନହୋଇ ଅଙ୍ଗେ ଭୃଙ୍ଗେ ମଣ୍ଡୁଗଲା
ଲୋଡ଼ୁଅଛି ମନ ମୋର ସେହି ଲୀଳା ॥ ୨୮ ॥

ବନ୍ଧେ ମୋତେ ସ୍ୱହୁଁ ଆଉ ଗେଲେ, ବଳା ଝମକାଉ ଆଉ ଭଲେ ।
ବଳୟାବଳି ବଜାଇ ଦେଉଥାଉ ମୋ ମନ ନୟନ ଆନେ ଥିଲେ ।
ଆରେ ବାମନେତ୍ରା, ... ... ... ... ... ... ।
ବିଶ୍ୱକେତୁ ବିଜୟୀ ବୀରର ପାଶା
ବଳଘେନ କାମ ତୋର କରେ ଯାଶା ॥ ୨୯ ॥

ଶ୍ରୀଫଳ ସମ କୁଚଯୁଗ, ଶ୍ରୀଖଣ୍ଡ ଅଙ୍ଗୀ ମୋ ଅଙ୍ଗେ ଯୋଗ ।
ଶରଧାରେ କରିଥିଲେ ଷଡପଦ ତଳେ ପଡ଼ିଥାଇ ସ୍ୱର୍ଗଭୋଗ
ଆରେ ଶଙ୍ଖଗଳା, ଶଙ୍ଖ ସରୋଜନିଧି ତୁ ମୋର ବାଳା ।
ଶିର ସୁବାସିତ ସୁମନସମାଳା
ଶୁଭ ବର୍ଣ୍ଣ ନବାଳା ମୁକୁତାମାଳା ॥ ୩୦ ॥

ସଢ଼ି ଯାଉଛି ସୁମର ଗାତ୍ର, ଷଟ ପଦଗୁଣ କଙ୍କପତ୍ର ।
ଶାଣେ ବସାଇ ସେ ଶିଳାପରି ଅପସଞ୍ଚ ହୋଇ ଆସୁଥାଇ ନେତ୍ର ।
ଆରେ ଷୋଳସମା, ଷୋଳ ଦୁଗୁଣ ଲକ୍ଷଣେ ଅନୁପମା
ଷୋଳ ଗୃହଗୁଣ କଳା କଳା ସୀମା
ଷଡ ଋତୁଯାକେ ଏକ ରସେ ସମା ॥ ୩୧ ॥

ସରସେ ଥିଲେ ତୋ ପରଶରେ, ସ୍ମରୁଥାଇ ଦିନ ହରଷରେ ।
ସୁଖ ସ୍ନେହ ଦୁହେଁ ଦେହଯାକେ ପେଲାପେଲି ହେଉଥାନ୍ତି ହରଷରେ ।
ଆରେ ଶୁଚସ୍ମିତା, ସାର ସମ୍ଭାଷିଣୀ ସରସ୍ୱତୀ ଜିତା ।
ସରୋଜ ନିବାସ କେଶରେ ଅସିତା
ସାରକାଶଦାସ ଫୁଲେ ମିତା ॥ ୩୨ ॥

ହୋଇଥାଉ ଲେଖା ଆଲିଙ୍ଗନେ, ହଜଯାଉ ଦେହେ ଅନୁମାନେ
ହସିବୋଲୁଥାଇ ହରଗଉରୀଙ୍କି ଦେବତାକରି ମାନଇ ମନେ ।
ଆରେ ······ । ହୋଇଥାଉ ନିଶେଷ ସଙ୍ଗରତା
ହାରସରି ହୋଇ ମୋର ହୃଦଗତା
ହରୁଥାଉ କ୍ଷିନ ହୋଇ ହରଷିତା ॥ ୩୩ ॥

କ୍ଷମ ଦୁକୂଳା ଜୀବନ ସଖା, କ୍ଷୋଭ ··· ··· ··· ··· ··· ।
··· ··· ··· ··· ··· ··· ନୟନେ ହୋଇଛୁ ଲେଖା ।
ଆରେ କ୍ଷମାଳୟା, କ୍ଷମାଭୂଷା ମୋତେ କରିଥିବୁ ଦୟା ।
କ୍ଷୟକୃତ ମୋର ଚଉଶସ୍ତ ଭୟା
··· ··· ··· ··· ··· ·· ॥ ୩୪ ॥



# ମାନିନୀ ଚଉତିଶା

କଥାଏ କହୁଛି          ଅପାର ବଦନ ହୁଁ
ଲେଉଟି ଥାଇ ପ୍ରାଣସଖୀ;
କଠିଣ ହିଆ ତୋ          କହୁଛି ନ ଗୃହୁଁ
କେ ତୋତେ ଗଢିଲା ବିହି ।
ମାନିନୀ ! ଗୋ ॥ ୧ ॥

ଖଣ ଖଣକେ          ଛଟକେ ଗୃହୁଁ ଥାଉ
ପ୍ରାଣ ହୁଅଇ କି କରି,
ଖେଳିବା ହସିବା          ଦୁଇ ପାସୋରିଲୁ
ତୋ ରୂପ ଗୁଣ ସୁମରି ॥ ୨ ॥

ଗରବ ଗଞ୍ଜଣା          ଗରୁଆ ଭାବଣା
ଗରବେ ନ କହୁ କଥା,
ଗତ ପୀରତିକି          ସବୁ ପାସୋରିଲୁ
ଗୃହ୍ନିଲେ ପୋଡୁଛି ମଥା ॥ ୩ ॥

ଘଷଣ ଘନ          ବେନି କୁଚ ଉପରେ
ବସନ ଘୋଡାଇ ଥାଉ,
ଘନ ତୋ ଘନ          ମତ୍ତ ଗଜ ଗୃଳାଙ୍କ
ବାରେ ଲେଉଟି ନ ଗୃହୁଁ ॥ ୪ ॥

ଦାଗଶ ନାଶ          ଈର୍ଷ୍ୟା ପଣ କରି
କହିଲେ ନଶୁଣୁ ବାଣୀ,
ନବ ଯଉବନ          ବୟସ ସୁନ୍ଦରି
କେତେ ଗଞ୍ଜାଉ ତରୁଣୀ ॥ ୫ ॥

ଚିତ୍ତ ସ୍ଥିର କରି          ଦମ୍ଭେ ଗୃହୁଁ ଥାଉ
ସ୍ନେରର ପ୍ରାପ୍ୟେ ତୋ ମନ,
ଚନ୍ଦନ ଶୀତଳ          ଗନ୍ଧକ ଧେନଇ
ଏ ସ୍ଥିର ହୀନ ଜୀବନ ॥ ୬ ॥

ଛଇଳପଣ ଉପେକ୍ଷିରେ ସୁନ୍ଦରୀ
ଛୁଞ୍ଚ ଅଧମ ପୀରତି
ଛିତିରେ କଥା ଯୁଗେ ଯୁଗେ ରହିବ
ଛନପ୍ର ଯେହ୍ନ ଯୁବତୀ ॥ ୭ ॥

ଯୁବା ବୟସେ ଦମ୍ଭପଣ ଯେତେକ
କରୁ ତୁ ଚତୁରୀ ସଖୀ,
ଯୁଗେ ଯୁଗେ ଭେଟା- ଭେଟି ହୋଇବାକୁ
ତୋତେ ମୋତେ କଲ ବନ୍ଧ ॥ ୮ ॥

ଝଟକ ଦାମିନୀ ପ୍ରାୟରେ ମିତଣୀ
ଯୁବା ଯଉବନ ଖିନ୍ନ ।
ଝଲ ଚନ୍ଦ୍ରମା ଦିନେ ଦିନେ ତୁଟଇ
ଉଆଁସ ଗ୍ରାସରେ ଖିନ୍ନ ॥ ୯ ॥

ଞାର କୁମ୍ଭ ଯେହ୍ନ ବାହାର ତରୁଣୀ
ପଥକୁ ଗୃହୁଁ ତୁ ହେଉ,
ଞଲକ୍ଷ ଭ୍ରମର କି ସୁଖ ଜାଣଇ
ତୋ ଲାଗି ମରୁଛୁ ଝୁରି ॥ ୧୦ ॥

ଟେକ ପଣନ୍ତ ସ୍ୱଆରେ ଦେଉଥାଇ
ଟଳି ପଡ଼ିବାକୁ ଡରୁ,
ଟେକ ଯଉବନ ବୟସ ସୁନ୍ଦର
ଫଳ କି ଲତାକୁ ଗୁରୁ ॥ ୧୧ ॥

ଠିବେ ଠାରି ଦେଲେ ସଙ୍କେତ ସ୍ଥାନକୁ
ଗଲୁ ପରି ଦିନ ନଣି,
ଠିକ ପୀରତି ପ୍ରେମ ସୁଧା ଦେଇଣ
ବାରେ କନ୍ଦ କନା ହସି ॥ ୧୨ ॥

ଡ଼ଗଣ୍ଡ ଥାଉ ଚନ୍ଦ୍ରସେଣା ପଣ୍ଡିକ
ତହିଁ କି ନାହିଁ ମୋ ଭୟେ ।
ଡଙ୍କସର ଲାଗି ମୋ ପ୍ରାଣ ଝୁରଇ
ପାରିଲେ କର ସଦୟେ ॥ ୧୩ ॥

ଡାକିଛୁ ଅଧରେ ଅମୃତରେ ସଖୀ
ଚନ୍ଦ୍ରିକ ମୋହୋର ଆଶ ।
ଢଗ ଢମାଳ ଯେତେକ କଉତୁକ
କଲଇଁ ତୋହର ପାଶ ॥ ୧୪ ॥

ଅନେକ ଗଞ୍ଜଣା ଗଞ୍ଜେ ଗୁରୁଜନା
ରହିଛ କାହା ମୁହାଁସେ ।
ଅଣଗ୍ରବ ପ୍ରୀତି ଗୁଡ଼ରେ ମିଡ଼ଣୀ
ପ୍ରାଣପତି ପ୍ରାଣ ନାଶେ ॥ ୧୫ ॥

ତ୍ରିଶ୍ୱକ ପୁରୁଷ ବଧାଚା-ଭିଆଣ
ଜାଣି ସର୍ଜିଅଛୁ ବନ୍ଧ ।
ତୁ ଯେବେ ବିମୁଖ ହୋଇଲୁ ମିତଣୀ
ପ୍ରାଣବନ୍ଧୁ ପ୍ରୀତି ପାଇଁ । ୧୬ ॥

ଥାଇ କଂସ ଗ୍ରପେ କଲା ମହାଭୟେ
ପୂତନାକୁ ପେଷିଥିଲା ।
ଥନେ ବିଷ ଭରି କପଟେ ପିଆଇ
ଅଧର୍ମେଣ ନାଶ ଗଲା ॥ ୧୭ ॥

ଦଇବ କରଣ କହୁଛ ସୁନ୍ଦରୀ
ବହନ ଆସ ତୁ ଧାଇଁ ।
ଦୋଷ ଉପେକ୍ଷି କୋଳରେ କର ସଖୀ
କାଖରୁ କଳସ ଥୋଇ ॥ ୧୮ ॥

ଧୂର୍ତ୍ତ ଦମ୍ଭଧର- ଅଛୁରେ ସଙ୍ଗାତ
ବହନ ଆସ ତୁ ଧାଇଁ ।
ଧସାଇ ବନ୍ଧୁଛୁ ପଞ୍ଚଶର ବାଣ
କାମ ଗରଳ ମିଶାଇ ॥ ୧୯ ॥

ନଶି ଅବଶେଷେ ଶ୍ରୀମୁଖରେ ସଖୀ !
ବଂଶୀଧର ବଟମୂଳେ ।
ନୟମ କରବେଣୁ ଛୁଇଁ ଅଇଲୁ
ସେ କଥା ପାସୋରୁ ତାଳେ ॥ ୨୦ ॥

ପାଚଲା ଆମ୍ବକୁ କାକ ଗଗସିଛୁ
କାକର ଅଧମପଣ ।
ପାପ ଲାଗିଅଛୁ ରଚନ ଆମ୍ବକୁ
କୋକିଲ ନାହିଁ ଦର୍ଶନ ।। ୨୧ ।।

ଫାଇ ବଳମ୍ବନ କର ରେ ମିତଣୀ !
ଫୁରୁଣା କର ମନକୁ ।
ଫୁଲର ଭାବ ଯେ ଭ୍ରମର ଜାଣଇ
ଛୁଡ଼ ଅଧମ ଜନକୁ ।। ୨୨ ।।

ବଡ଼ବା ଅନଳେ ମଦନ ଦହୁଛୁ
ବନ୍ଧୁଛୁ ପଞ୍ଚମ ବାଣ ।
ବାଜୁଛୁ ଝମକ କୁସୁମ ଶଯ୍ୟାରେ
ବରହେ ଅଥିର ମନ ।। ୨୩ ।।

ଭୁବମା ଚଣ୍ଡୀ ଶାରଳା ଲପ୍ତେ କର
ପ୍ରସନ୍ନ ହୁଅ ତୁ ବସି ।
ଭରସା ଦେଇ କୋଳରେ କର ସଖୀ
ଦଣ୍ଡେ କର ହସାହସି ।। ୨୪ ।।

ମହଣ୍ଟୁ ଗଲା ଦଇବ ଦୁଃଖ ଦେଲା
ଜାଣୁ ତୁ ଚଉସ୍ତି ସଖୀ ।
ମୁହଁ ପାସ ଲଗାଇ କଥା ତୁ ନ କହୁ
ଏତେଡ଼ ନର୍ଦ୍ଦୟୀ ତୋ ଦେଖି ।। ୨୫ ।।

ଯହିଁ ଥିବ ଥାଅ ଆମ୍ଭର ବୋଲାଅ
ସମସ୍ତେ ଜାଣନ୍ତି ଏହା ।
ଯୁବା ଗୁଣୁସୀକ ମଥୁରୀ ନାଗରୀ
କହି କେ ପାରିବ ଏହା ।। ୨୬ ।।

ରାଧିକା ବୋଇଲେ ଶୁଣ ହେ ମାଧବ
କଟାଳ କରୁଛ କେତେ ।
ରଜମା ଆଜର ବାହୁଡ଼ଣ ଯାଅ
କାଲି କହି ସିନା ତୋତେ ।। ୨୭ ।।

ଲେଉଟି ଯାଉଛୁ ଶୁଣରେ ସଙ୍ଗାତ
ନିକ ଗୁଡ଼ୁ ଭୁ ଆମ୍ଭଙ୍କୁ ।
ମାଲେନ୍ଦୀ ଲୋଚନ ବୋଲନ୍ତି ଗୋ ରାଧା
ଘେନ ବନସ୍ତୁ ମନକୁ ॥ ୨୮ ॥

ବସିଛନ୍ତି ମୁନି ପଥ ଅନୁସର
ଭାବୁଛନ୍ତି ପୁଣ ପୁଣି ।
ବୋଲନ୍ତି ବଚନ ଶୁଣିଣ ରାଧିକା
ଶୁଣ ହେ ରସିକମଣି ॥ ୨୯ ॥

ଶୁଣିଣ ବଚନ ରାଧିକା ବୋଲନ୍ତି
ଶୁଣ ହେ ରସିକ ବର ।
ଶଶୀ ଚନ୍ଦ୍ର ଯେବେ ଭେଟ ସେ ହୋଇବେ
କରନ୍ତି ମାନକୁ ଦୂର ॥ ୩୦ ॥

ସଧୀରେ ସଧୀରେ ବଜସ୍ତୁ ସଙ୍ଗାତ
ମତ୍ତଗଜ ପ୍ରାୟେ କରି ।
ଶରଦ ଚନ୍ଦ୍ରକୁ ମାରିବ ଏ ଶର
ବସନ ଛନ୍ଦିଁକ ଘର ॥ ୩୧ ॥

ସହଜେ ସୁନ୍ଦରୀ ବସନ ଚାହାକୁ
ଜଳରୁ ବାହାର ହୋଇ ।
ସତେ ହେ ନାଗର— କଲୁ କି ସଙ୍ଗାତ
ହୃଦରେ ବାଣ ବିନ୍ଧାଇ ॥ ୩୨ ॥

ହରଷ ହୋଇଣ ରମନ୍ତି ଶ୍ରୀକୃଷ୍ଣ
ରହିଲେ ରାଧା ମନ୍ଦିର ।
ହଜିଲ ଧନ ଯେମନ୍ତ ଜନ ପାଇ
ହରଷ ହୁଏ ମନର ॥ ୩୩ ॥

କ୍ଷଇଲ ରମଣୀ ଗୁଡ଼ିଲେ ମାଧବ
କ୍ଷ ଛନ୍ଦେ ରାଧା ମନ୍ଦିର ।
କ୍ଷୁଦ୍ର କୃଷ୍ଣ ଦାସ ଶରଣ ମାଗଇ
ରହି ରଙ୍ଗା ଚରଣର ॥ ୩୪ ॥



# କେଳି କଳ୍ପଦ୍ରୁମ ଚଉତିଶା

କଞ୍ଜ ଲୋଚନ ଦୂତିକା ଆଗର
କ୍ରୋଧଭର ହୋଇ ବୋଲେ ଉତ୍ତର
କଳାକରମୁଖୀ ଆଗରେ କହ
କି କାର୍ଯ୍ୟେ ମୋର ଗୁଡ଼ିଲା ସେନେହ
କେଳି କଳ୍ପଦ୍ରୁମ !
କନ୍ଦର୍ପ କଳାରେ ସେହି ଉତ୍ତମ ॥ ୧ ॥

ଖଟ୍ୱାଙ୍ଗଧର ଅରି ତୀଖ ଶର
ଖିନ୍ନ କରନ୍ତି ଯେ ମୋର ଶରୀର
ଖଞ୍ଜନୟନୀ ମୋତେ ଦୟାକରୁ
ଖଳ ମୀନ କେତୁ ମୁଖୁ ଉଦ୍ଧରୁ
ଖଟିଥିବ ପାଶ
ଖୀନଓଦରୀକ କହ ସନ୍ଦେଶ ॥ ୨ ॥

ଗଜଗମନୀ ସେ ବିପୁଳସ୍ତନୀ
ଗତ ସ୍ନେହ କି ନ ଚିନ୍ତେ କାମିନୀ
ଗାଢ଼େ ଭୁଜେ ଭିଡ଼ି ବୋଲନ୍ତି ଯାହା
ଗୋରୀ ସୁମୁଖୀ ପାସୋରିଲା ତାହା
ଗୁଣୁଥାଇ ମୁହିଁ,
ଗଳାରହାର ମୋ ପ୍ରାଣସହୀ ॥ ୩ ॥

ଘଟଣମୁଖୀର ଜଘନ ଦୁଇ
ଘେନ ମନ୍ତ୍ରକର ତାହା ଜପଇ
ଘଟଣା ଦେବାକୁ ଆଉଁ ନ ବଶୀ
ଘେନ କହନ୍ତି ସେହି ଶୁ ଭ୍ରୁକେଶୀ ।
ଘନସାର ରସ
ଘନସ୍ତନୀର ବଚନେ ବରସ ॥ ୪ ॥

ନବ ଜଳଧର ଆଗେ ଚାତକ
ନ କରେ ଆନ ବାଞ୍ଛା ଯେସନ୍ତ ଲୋକ

ନବ କାମିନୀ ବିନୁ ମୋର ମନ
ନ କରେ ଆନ ରସରେ ଆସ୍ଥାନ
ନିଷ୍ଠୁର ନ କରି
ନଟନୁ ଭୟରୁ ବାରେ ଉଦ୍ଧରି ॥ ୫ ॥

ଚତୁରମଣି ଚନ୍ଦ୍ରମା ଆନନୀ
ଚମ୍ପକଗାତ୍ରୀ ମୋ ହୃଦ ମଣ୍ଡନୀ
ଚିହ୍ନି କଟାକ୍ଷେ ଯାହା କହୁଅଛୁ
ଚଞ୍ଚଳ ଚିତ୍ତ ମୋ ବନ୍ଦୀ କରିଛୁ
ଚିତ୍ତରୁ ପଙ୍କଜାକ୍ଷୀ
ଚତୁରି ବିନୁ କେ କରିବ ରକ୍ଷା ॥ ୬ ॥

ଛତ୍ରମଣ୍ଡନୀ ବଦନେ ମନ୍ଦ ହସି
ଛନ୍ଦିଲୁ ମୋର କଣ୍ଠେ ବାହୁ ଫାଶୀ
ଛୁରି ସିନ୍ଧୂରୁ ଛୁଟା ରୂପେ ସମାନ
ଛେଦି ଛଡାଇ କହିବି ଏମାନ
ଛାଡ଼ିଛୁ ସେ ସ୍ନେହ
ଛନ୍ଦାଳୀମଣି ଆଗେ ଏହା କହ ॥ ୭ ॥

ଯୁବା ଯୁବତୀଗଣ ଶିରୋମଣି
ଜଳଜନେତ୍ରୀ ଯୋଗୀନ୍ଦ୍ର ମୋହିନୀ
ଯାଇ ଜଣାଅ ତାହାର ସମୀପ
ଜାଳା କଲା ଅଙ୍ଗେ କୁସୁମଚାପ
ଜାଣୁ ମଣି ଜାଣୁ
ଜଗମୋହିନୀ ଏହା ପରମାଣୁ ॥ ୮ ॥

ଝଲଆନନୀ ବେନି ପୀନସ୍ତନ
ଝୀନବାସ ଫୁଟି ଦିଶେ ଶୋଭନ
ଝାଡ଼ଗଜ କଟି ମଧ୍ୟରେ କାନ୍ତି
ଝଟକ ଚଞ୍ଚଳା ପ୍ରାୟେ ଦିଶନ୍ତି
ଝଗଡ଼ କରଇ
ଝଟକଦନ୍ତୀ ମୋତେ କରୁ ଶାନ୍ତି ॥ ୯ ॥

ନବନାୟିକା ନୟନୁ ନ ଯାଇ
ନିବାଶ ଏତେ କଲା ପ୍ରାଣସହୀ

ନେହ ପ୍ରତିମା ଅଟଇ ମୋହର
ନିମିଷେ ମନୁ ନୋହଇ ବାହାର
ନାଗରୀ ରତନ
ନବକେତକୀ ସେ ଶିରଭୂଷଣ ॥ ୧୦ ॥

ଟମାଲକଳି ସେ ଯାହା ବୋଇଲି
ଟୀକାକେ ଏବେ ତାହା ପାସୋରିଲି
ଟେକ କୁଚେ ତାର ଦେଲି ମୁଁ କର
ଟାଙ୍କୋରିଲା ପ୍ରେମ ଶଗର ତାର
ଟାଣ କଟାକ୍ଷୀକି
ଟେକ ପଣ୍ୟର ଏ ଅଟଇ ଠିକ ॥ ୧୧ ॥

ଠକକଥା ମୋ ଆଗରେ କହିଛି
ଠକ ପ୍ରାୟେକ କରିଛି ମୃଗାଛି
ଠାକୁରାଣୀ ପଣ ଜାଣିମା ତାର
ଠିକେ କହୁ କସ ଦୋଷ ମୋହର
ଠଣମୂର୍ଖୀ ଆରେ
ଠିକେ ମଣାଇ କହ ସଖୀ ବେଗେ ॥ ୧୨ ॥

ଡାଳମ୍ବ ବୀଜ ଦଶନ କୋପକୁ
ଡରଅଛି ବାରେ ରଖି ଦାସକୁ
ଡୋଳେ ଗୃହିଣୀ ଯାହା କହୁଅଛି
ଡଙ୍କର କାମ ଆଗରେ ଦେଉଛି
ଡୋଳା ପିତୁଳୀକି
ଡାକ କହିବୁ ଏହା କରି ଠିକ ॥ ୧୩ ॥

ଢମାଳି କରି ସେ ଯାହା ବୋଇଲା
ଢାଳି ଗୃହିଁଣିରେ ମନ ମୋହିଲା
ଢଳଢଳ ମୀନ କେତୁ ଶରେ
ଢାଳି ଚୁମ୍ବନ ଦେଲା ମୋ ଗଣ୍ଡରେ
ଢାଳେ ପାସୋରିଲି
ଢଗପସରା ପ୍ରାୟେ ପ୍ରିୟା କଲା ॥ ୧୪ ॥

ଏବେ ନଷ୍ଟେ ତୋତେ କହୁଛି ସହି !
ଏଣୀ ନୟନା ବନୁ ସାହା କାହିଁ,

ଏଣାଙ୍କମୁଖୀ ଏହା ଜାଣିଥାଉ
ଅଣକାର୍ଯ୍ୟେ ଜୀବନକୁ ନ ନେଉ
        ଅଣ ଅପରାଧୀ
ଅନଙ୍ଗ ରାଜ୍ୟର ହୋଇଲା ବାଧୀ ॥ ୧୫ ॥

ତରୁଣୀ ରତନ ମୋ ପ୍ରାଣ ମଣି
ତ୍ରୈଲୋକ୍ୟ ମୋହିନୀ ହେମ ବରଣୀ
ତନୁ ତୁଆଡ଼ିଁ କହୁଛି ନପୁର
ତୁମ୍ଭ ମନରେ ଥିବ ପ୍ରାଣନାଥ
        ତା ହୃଦେ ଧରିଛି
ତୁଟିତେ ତା ବସୋରିଲା ମୃଗାଛି ॥ ୧୬ ॥

ଥିରଗାମିନୀର ନିତମ୍ବ ଦୁଇ
ଥାଣୁ ଅଇଚ ସିଂହାସନ ସେହି
ଥିଲା ତହିଁ ପରେ ଚୀନ ବସନ
ଥେଣ୍ଟ ମଦନର ଜୟ କେତନ ।
        ଥିବ ତାର ପାଶ
ଥାନ ଦେଇ ରଖ ମୁଁ ତାର ଦାସ ॥ ୧୭ ॥

ଦୟା ଉଦଧି ମୋ ଦମ୍ଭ ନାଶିନୀ
ଦାସର ଦୋଷ କି ଦେଖନଇ ପୁଣି
ଦଶନେ ଅଧର 'ରୁପି ମୋହର
ଦରିଦ୍ର ବିଧି କହୁଛି ଉତ୍ତର
        ଦୋଷ ମୋ ନଧରୁ
ଦୀନନାଥବନ୍ଧୁ-ମୁଖୀ ଉଦ୍ଧରୁ ॥ ୧୮ ॥

ଧୀର ଗାମିନୀ ଅଗ୍ରତରେ ଯାଇ
ଧୀରେ କହିବୁ ବଚନ ମଣାଇ
ଧରିଛି କୁସୁମ-କାର୍ମୁକ ମାର
ଧଇର୍ଯ୍ୟ ମୋର ନାଶିବ ପାମର
        ଧନମଣି ପାଦ
ଧରିଛି ଶିରେ କରି ପରସାଦ ॥ ୧୯ ॥

ନିଘଣ ମୋରେ କଲା ପ୍ରାଣସଖୀ
ନିର୍ଦ୍ଦୟା ହୃଦ ଗୁଡ଼ୁ ଚନ୍ଦ୍ରମୁଖୀ
ନାକ ନାଗ ନାସା ନୋହନ୍ତ ସମ
ନାସା-ଶିରୋମଣି ମୋ ଜୀବ ଧାମ
କାହିଁ ସମ ସର
ନିରାଶ କପାଁ କରୁଛି ଚତୁରୀ ।। ୨୦ ।।

ପଲ୍ଲବ ପ୍ରୀତି ଯେତେ କରିଥିଲା
ପରମ ବନ୍ଧୁ ତାହା ପାସୋରିଲା
ପିକବରମାନ କହୁଛି ମୁହିଁ
ପ୍ରସନ୍ନ ବଦନେ ଚୁମ୍ବନ ଦେଇ
ପିଶୁନ ମଦନ
ପଞ୍ଚଶର ଯେନ କରେ ଦହନ ।। ୨୧ ।।

ଫାଇ ଶେଷ କପାଁ ଯୁବତୀ କଲା
ଫୁରୁଣା ଯେତେ ମୋ ସବୁ ଭାଙ୍ଗିଲା
ଫଳେତ ଜାଣିଲି ତାର ପୀରତି
ଫେଡ଼ି କହୁଲି ତୋହୋର ଉକତି
ଫେଡ଼ୁ ମନୁ ତାପ
ଫାନ୍ଦେ ପକାଇଛି ମଦନ ଭୁପ ।। ୨୨ ।।

ବସନ୍ତକାଳରେ ସନ୍ଧ୍ୟାବେଳରେ
ବସିଥିଲା ବନ୍ଧୁ ମୋର କୋଳରେ
ବୋଲୁଛି ପ୍ରିୟା ମୋତେ ହସି ଯାହା
ସ୍ୱାର୍ଥ କପାଇଁ କଲୁକ ତାହା
ବଧୂବଦନୀ କି
ବୋଲିବୁ ଏକଥା ଉଚିତ ଠିକ ।। ୨୩ ।।

ଭରସା ମୁହିଁ ବଡ଼ କରିଥିଲି
ଭାବିନୀ କୁଚଶମ୍ଭୁ ପ୍ରାପ୍ୟେ ବୋଲି
ଭଜିଲା ଜନକୁ କଲା ନିରାଶ
ଭୃତ୍ୟଜନେ କି ପ୍ରଭୁ କରେ ଦୋଷ
ଭାସିଲି ସାଗରେ
ଭେଳା ଉରଜ ତୁମ୍ବ ଦେଉଁ ମୋରେ ।। ୨୪ ।।

ମୋହୋରେ ମାନ କରୁଛୁ କପାଇଁ
ମୋତେ କୋକିଲ ବଚନ ନ କହୁ
ମନ୍ଦ ହସିଣ ଯେବେ ସେ କହିବ
ମଦନଗର୍ବେ ଦୁଃଖ ଉଛଳିବ
ମଦ୍ଧ୍ୱାକ୍ଷି ମୋର
ମାଣିକମାଳା ସେ କଣ୍ଠ ତଟର ।। ୨୫ ।।

ଯେବେ ଦୋଷ ମୁହିଁ କଲି ତାହାରେ
ଜାଣୁ ମଣି ଦଣ୍ଡ ଦେଉ ମୋହୋରେ
ଜଗତେ ଏକଥା ରହିଣ ଥାଉ
ଜଳଜାକ୍ଷି ଲଗି ଜୀବନ ଯାଉ
ଯେବେ ନ ବୁଝିବ
ଯେତେ କହିଲେ ସେ କସ ହୋଇବ ।। ୨୬ ।।

ରମଣୀମଣି ରତିରସ ଦେଇ
ରଖୁ ପ୍ରେମଦାନ ଦେଇଣ ସହି
ରଖିବ ଯେବେ ସେହି ସେ ରଖିବ
ରଖନ୍ତା ତା ବିନୁ ଆନ ନୋହିବ
ରସିକମଣି ମୋର
ରସକଳା ଗ୍ରାମ ଗୁଣ ଗମ୍ଭୀର ।। ୨୭ ।।

ଲହୁଣୀ ବୟସ ବିନୁ ତାହାର
ଲତାଏ ପାଶୁଁ ନୋହଇ ଅନ୍ତର
ଲାବଣ୍ୟନିଧି ଲଳିତ ବରଣୀ
ଲେଖିଥିଲି ପତ୍ର ଅନୁରାଗିଣୀ
ଲବଙ୍ଗିକା ଆଗେ
ଲକନାକର କହିଲି ସରାଗେ ।। ୨୮ ।

ବିଳମ୍ବ ନକର ଚାଲ ବହନ
ବନଜବଦନୀ ମୋ ପ୍ରାଣଧନ
ବିଧାତା ବଶୁଁ ଏମନ୍ତ ହୋଇଲା
ବେଳକୁ ବେଳ ସେ ବିବଶ କଲା
ବିନୟ ହେଉଛୁ
ବାରେ ଦୟା ମୋତେ କରୁ ମୃଗାଛୁ ।। ୨୯ ।।

ସଘନ ହୋଇ ଘନ ଚଉବେଶ
ସରୋଜନେତ୍ରୀ ଦେଖିଣ ହରସ
ଶମ୍ବରି-ଶର ଉପୁଜି କରି
ସରାଗେ କୋଳେ ବସିଲା ସୁନ୍ଦରୀ
ଶୀତଳ ବଚନ
ସେକଥା ରମଣୀ ନ ଭାବେ ମନ ॥ ୩୦ ॥

ଶ୍ୟାମସୁନ୍ଦରର ସନ୍ଦେଶ ପାଇ
ଶୀଘ୍ରେ ଦୂତୀ ସଖୀ ପାଶେ ମିଳଇ
ସରୋଜପତ୍ର କୁଟୀର ମଧ୍ୟରେ
ସ୍ମିତହାସିନୀ ବସିଛି କ୍ରୋଧରେ
ସହଚରୀ ଯାଇ
ସରୋଜନେତ୍ର ବାରତା କହଇ ॥ ୩୧ ॥

ଶମ୍ବର ତାତ ତୋତେ ବରମ୍ପୀ
ଶୀଘ୍ର ତା ଅଙ୍ଗ ହେଲା ପ୍ରାଣସମ୍ପୀ
ଶରୀରେ ପୁଲକ ଲେଖା ଜାଣି ତା ଅଙ୍ଗ
ସେନେହ ଥିଲେ ହଅ ରତିରଙ୍ଗ
ଶଶୀମୁଖୀ ହସି
ସାରଙ୍ଗଧରଙ୍କୁ ଆଣ ସୁକେଶୀ ॥ ୩୨ ॥

ହଂସ ଗାମିନୀ ହୃଷ୍ଟବାଣୀ ଶୁଣି
ହରିଙ୍କି ବେଗେ ଆଣିଲା ତରୁଣୀ
ହିମାଂଶୁମୁଖୀ ସନ୍ନିଧେ ପ୍ରବେଶ
ହୃଦତାପ ଗୁଢ଼ ହେଲେ ହରଷ
ହରିଣାକ୍ଷି ହରି
ହେଲେ ରତିରଙ୍ଗେ ଏ ବେନି ସରି ॥ ୩୩ ॥

କ୍ଷଣକେ ରାଧାକୃଷ୍ଣ କଲେ ରସ
ଗୁଢ଼ ସୁରତି ସେ ହେଲେ ହରଷ
କ୍ଷୀରସିନ୍ଧୁ ଜେମାନ୍ତ ଚରଣ
ନୃପ ଧନଞ୍ଜୟ ପଶେ ଶରଣ
କ୍ଷମା ଦୋଷ କର
କ୍ଷଣ୍ଡିଲା ଏ ରସ ଦୋଷ ନ ଧର ॥ ୩୪ ॥

# କୋଳାହଳ ଚଉତିଶା

( ରାଗ—କୋଳାହଳ )

କୃଷ୍ଣ ବିଚ୍ଛେଦରେ          କୁସୁମ ଶରରେ
ଦୁଃଖୀ ହୋଇ ଚାରୁଚନ୍ଦ୍ରମୁଖୀ
କରଇ ସନ୍ତାପ          ଚିନ୍ତି କାନ୍ତ ମୁଖ
ବସି କରଜରେ ମହୀ ଲେଖି
କଞ୍ଜ ନୟନର
ବହଇ କଜ୍ଜ୍ୱଳ ଧାର ଧାର
କମଳ ନୟନ ଘନଶ୍ୟାମଙ୍କୁ ତାହା! ମନ ଆଉ ନୋହେ ତାର ॥୧॥

ଖଣେ ଖଣେ ଶ୍ୱାସ          ପକାଇ ବିରସ
ଖଣକେ ବିଧୂର ହୋଇ ବାଳା
ଖଣେ ଖଣେ ଜ୍ୱାଳ          ବହଇ ପ୍ରବଳ
ଖଣକେ ଝଙ୍କୋରେ ପ୍ରେମମାଳା
ଖୀଣୋଦରୀ ତନୁ
ଅତନୁ ଶରରେ ହୋଇ ତନୁ
ଖେଳିବା ହସିବା ବଚନ ଭାଷିବା ସବୁ ସୁଖ ପାସୋରିଲା ମନୁ ॥ ୨ ॥

ଗୋରୀ ସୁକୁମାରୀ          ନବୀନ କିଶୋରୀ
ଘର ଘୋରବନ ପ୍ରାୟେ ମଣେ
ଗୀତ ବାଦ୍ୟ ନୃତ୍ୟ-          ରସେ ତାହା ଚିତ୍ତ
ନ ରସେ ନିଷ୍ଠୁର କାମ ବଣେ
ଗୁରୁ ନିତମ୍ବିନୀ
ଗୋକୁଳ ଚନ୍ଦ୍ରମା ଗୁଣ ଗୁଣି
ଗିରିବରଧର ହେ ବ୍ରଜସୁନ୍ଦର ! ବୋଲିଣ ରୋଦନ କରେ ପୁଣି ॥୩॥

ଘନ ଜଘନାର          ଘଟଣ ସ୍ତନାର
ଘାନ୍ତୁ ନ ସରଇ ନିଶିଦିନ
ଘନଶ୍ୟାମ ଧନ          ପାଇଁ ତାର ମନ
ନିରନ୍ତରେ ହୋଇ ଛନ୍ନ ଛନ୍ନ
ସଖୀଜନେ ଦେଖ
ଦେଖାଇ କହିଲେ ସ୍ନେହବାଣୀ
ଦେଖଇ ନାହିଁ କମଳଦଳ ନେତ୍ରୀ ରସିକା ନାଗରୀ ଶିରୋମଣି ॥ ୪॥

ନ କରେ ଆହାର    ନ କରେ ବିହାର
ନ ରସଇ ଆଉ ଶୟନରେ
ନ ବାନ୍ଧଇ କେଶ    ନୁହଇ ସୁବେଶ
ନ ଦେଖଇ କିଛି ନୟନରେ
ନାନା ଉପଚାର
ନୋହିଲେ ଚମକିପଡ଼େ ଅଙ୍ଗ
ନଷ୍ଟ ନଅ ବୋଲି ନୟନ ବୁଜଇ ବିକଳେ ବୋଲେ ହେ ଶ୍ରୀରଙ୍ଗ ॥ ୫ ॥

ଚନ୍ଦନ ପବନ    ଗରଳ ସମାନ
ଚନ୍ଦ୍ରକର ଚଣ୍ଡକର ପ୍ରାୟେ
ଚୂତଆଡ଼େ ଶୁଣି    ମତ୍ତପିକ ବାଣୀ
ଚିତ୍ତରେ ଲଭଇ ମହାଭୟେ
ଚୂହ୍ନ ଚାମୀକର
ଚମ୍ପକ ବରଣ କଳେବର
ଚୂହୁଁ ଚୂହୁଁ ପାଣ୍ଡୁବର୍ଣ୍ଣକୁ ଭଜିଲା ଦିବସେ ଯେସନ ଶଶଧର ॥ ୬ ॥

ଛୁଟି ମଣ୍ଡଣ ଦ-    ରହ ଦଶା ଦେଖି
ଛୋଭକର ଦୂତୀ ଗଲା ଚଳି
ଛଟକେ ପ୍ରବେଶ    ହୋଇ ବୃନ୍ଦାବନେ
ଛ ଛନ୍ଦେ ଭେଟିଲା ମଧୁହାସ
ଛାଡ଼ି ଖରଶ୍ୱାସ
କହିଲା ଶୁଣ ହେ ବ୍ରଜରାୟେ
ଛୀରଦାସୀ ଧାଈଠାରୁ କି ଶିଖିଲ ଯୁବତୀ ବିନାଶକ ଉପାୟେ ॥ ୭ ॥

ଜାଣିଲ ସଂସାର    ମଧେ ଅସୁନ୍ଦର
କଥାଏ ସୁନ୍ଦର ହେଲା ଏବେ
ଜଗତମୋହନା    ରାଧାପ୍ରାଣ ଘେନା
କଥାର କାରେଣୀ ହେଲା ଏବେ
ଜଗମୋହନ ହେ !
ଏଥେଁ କାହିଁ କିଛି ପଉରୁଷ
ଅବଳା ଅଚଳା ଯୁବତୀ ନୁହନ୍ତା ତେବେବା ହୁଅନ୍ତା ତହିଁ ଯଶ ॥ ୮ ॥

ଝୁରୁଥାଅ ବସି    କୁଞ୍ଜବନେ ପଶି
ଯାହା ଅଙ୍ଗ ସଙ୍ଗ ପାଇବାକୁ

ଝସକେତୁ ବାଣ ଘାତରେ ଯତଣ
ଯିବାବେଳେ ଦୟା ନାହିଁ ତାକୁ
ଝାଡ଼ବିନୋଦ ହେ
ଝିମିଟିକେ କଥା ଥିବ ଆଉ
ଝଲକବରନା ଝଲଗୌଷ୍ଠି ଦେଖ ମରୁଛି ଜୀବନେ ଥାଉଁ ଥାଉଁ ॥ ୯ ॥

ନବଚନ୍ଦ୍ର କଳା ପରାଏ ଅବଳା
ପଡ଼ିଛି ଅବନୀ ଶୟନରେ
ନେହମାରେ ଆସି ଯିବ ବୋଲି ଭାସି
ନିଦ୍ରା ନ ମାଡ଼ଇ ନୟନରେ
ନନ୍ଦନନ୍ଦନ ହେ !
ନୋହୁଅଛି ତାର କ ବେଦନା
ନିର୍ମଳ ହୃଦରେ ତୁମ୍ଭଙ୍କୁ ଭଜିବା ଫଳ ପାଇବାର ଏହି ସିନା ॥ ୧୦ ॥

ଟେକ ଯେ ଥିଲ କ- ରୁଣା ସିନ୍ଧୁ ବୋଲି
ଟିକାଏ ଦ୍ରବିଲ ନାହିଁ ଚିତ୍ତ
ଟଙ୍କଧର ରିପୁ ବିପତ୍ତି ସମୟେ
ଟିକାଏ ଦ୍ରବିଲ ନାହିଁ ଚିତ୍ତ
ଟାଣ ଭାଜିଲ ହେ
ଯେତେ ରୂପେ କରିଥିଲୁ ଆଶ
ଟାନ୍ଧି ନ ମଣି ସହସେ ଚଳଆସ ବିଳମ୍ବ ନ କର ପୀତବାସ ॥ ୧୧ ॥

ଠାଠିକର ଦୂତୀ- ବାଣୀ ଶୁଣି ମନ୍ଦ
ମନ୍ଦ ହସି ହୋଇ କର ହରି
ଠାକୁରାଣୀଙ୍କର ପୁରତେ ପ୍ରବେଶ
ରଜନୀ ସଜନୀ କର ଧରି ।
ଠଣଚନ୍ଦ୍ରମୁଖୀ
ଶ୍ରୀହରି ଶ୍ରୀମୁଖ ଦରଶନେ
ଠୂଳହୋଇ ସବୁ ଅନୁରାଗମାନ ପ୍ରବେଶ କରନ୍ତି ଆସି ମନେ ॥ ୧୨ ॥

ଡୋଳା ପିତୁଳା ଡାଳମ୍ବ ବୀଜଦନ୍ତୀ
ଡମ୍ବରୁମଧ୍ୟାର ଦେଖି କ୍ରୋଧ
ଡାକାକର କାମ ବାମ ହୋଇ ରାମ
ଅନୁଜ କରନ୍ତି ବାରେ ବଧ
ଡୋଳା ମଣ୍ଡପରେ

ନାହିଁ ମୋର କିଛି ଅପରାଧ
ଡମ୍ବରୁଧର ବଇର ବଶିଖରେ ନ କରାଅ ଆଉ ବାରେ ବଧ ।। ୧୩ ।

ଢମ କହୁନାହିଁ    ଛୋଡ଼ୋ ବାହାରେ କେ
ନାହିଁ ନାହିଁ ଆନ ପ୍ରତିକାର
ଢାଳବା ନୟନେ    ଆନ ଗୃହିଁବାର
କଥାକୁ ବନ୍ଧୁ ନୟନ ମୋର
ଢାଳନୟନା ରେ
ଢାଳ ଏବେ ମୋତେ ଗୃହିଁବାରେ
ଢକ୍କା ଢିଆଉ ଢ଼କକାରେ କା ନାମଟି ଏକା ପର ଏକା ଦେଖିବାରେ ।। ୧୪ ।।

ଅନଳ ପ୍ରାପ୍ତେ    ଆପଣା ଅସାରକୁ
ବିଗ୍ନର ନ କରେ ଯେଉଁ କାମ
ଅନୁଭବ କଲେ    ନ ଜାଣଇ କିଛି
ଅବିବେକ ହେଲେ ନାହିଁ ସର୍ମ
ଆରେ ପ୍ରାଣମଣି !
ଆହୁର କଥାଏ ଅଛି ଶୁଣି
ଆମ୍ଭ ଦୁହିଁଙ୍କି ତା ବନିତା ମାଗୁଛି ପାଇଲେ ଯାଉଛି ଏହିକ୍ଷଣି ।। ୧୫ ।।

ତାହାର ବଇର    ସହଜେ ମୁଁ ତୋତେ
ମାଗଣ ତାହାର ବନିତାକୁ
ତୁହାତ କୃପଣ    ସେ ଦାନ ଦେବାକୁ
ଶତ୍ରୁ ହେଲା କାମ ମାଗି ତାକୁ
ତୋହ ପ୍ରସନ୍ନରେ
ତୋହ ସୁନ୍ଦରୀଙ୍କ ସେହ୍ନ ପାଉ
ତୈଲୋକ୍ୟ ମୋହନ ! ତ୍ରିବଳ ଶୋଭନ ! ମୋହ ମନୋରଥ ପୂର୍ଣ୍ଣହେଉ ।।୧୬।।

ଥିରଗମନୀ    ବାମଦେବ ମହିମା
ଶୁଣିନାହୁଁ କରେ ଅଧିକର
ଥାପୁ ନୟନ    ଅନଳେ ପୋଡ଼ିଯାଇ
ଅଙ୍ଗେ ସେ ଯେ ବୁହାଇଲା ନାଶ
ଥିର ମଦନୀରେ
ଥର ଥରକେ ସେ ଯେ ଉଦଣ୍ଡ
ଥୂଳକର କେତେ ପ୍ରକାରେ ବହିଛି ଅନୁଭବରୁ ଯେ ଅଛି ପିଣ୍ଡ ।। ୧୭ ।।

ଦୟାଜଳନିଧି          ଦୟାକର ମୋରେ
ଦୂରକର ମନୁ ଅଭିମାନ
ଦାସ ଦୋଷକାରୀ          ହେଲେ କ୍ଷମା କର
ପ୍ରଭୁପଣର ତୁ ନିକେତନ
ଦୁଃଖ ନାଶିନିରେ !
ଦ୍ୱିରଦଗମନୀ ପ୍ରାଣେଶ୍ୱରୀ !
ଦ୍ୱିଜରାଜମୁଖି ! ଗ୍ରହୁଁ କିନା   ମୋତେ   ପ୍ରସନ୍ନବଦନେ ହସିକରି ।। ୧୮ ।।

ଧିକ ଯାଉ ମୋର          ପ୍ରାଣଧନ ! ତୋର
ଦେଖିଲି ଶ୍ରୀଅଙ୍ଗ ଅଭୂଷଣ
ଧାତା ଏହା କଲା          ଏ ଜୀବନ ଗଲା
ବନ୍ଧୁ ତୋତେ ଏହା କି ଦୂଷଣ
ଧୃତି ଧ୍ୱଂସିନିରେ !
ଧୀରେ ଆଜ୍ଞା ଦିଅ ମୃଦୁବାଣୀ
ଧ୍ରୁବଲୋକକୁ ଶୁଭଯାଉ ଶ୍ରୀରଙ୍ଗ ମଣ୍ଡଳ ମଣ୍ଡନ ଗୁଣମଣି ।। ୧୯ ।।

ନାଗରୀ ରତନ          ମୋ ବିନୟ ଘେନ
ନିରାଶ ନକର ସୁରୁକେଶୀ
ନିର୍ମଳ ମୋତି          ଦଶନୀ ବିମ୍ବାଧରୀ
ଆହା ମତ୍ତ କଳକଣ୍ଠ ଭାଷି !
ନୀଳବସନାରେ !
ନିଶ୍ଚେ ଯେବେ ଦୟା କଲୁ ମୋରେ
ନଖକରତେ କରନ୍ତି ପକାପଛେ ନ ଦିଅ ବଇରି କରତରେ ।। ୨୦ ।।

ପ୍ରଭୁପଣ ଥାଉଁ          ଥାଉଁ ପରହାତେ
ଦଣ୍ଡ ଦିଆଇବା ଅନୁଚିତ
ପୀନ ଜଘନା          ବାହୁପାଶେ ବନ୍ଧନ
କରି ଲଦ କୁଚ ଉରବତ
ପ୍ରାଣ ବାନ୍ଧବରେ !
ପାରିଲେ ନେହାନ୍ତ କୁନ୍ତମାର
ପଶିଅଛୁ ବନ୍ଧୁ ! ଚରଣେ ଶରଣ ଯାହା ଇଚ୍ଛା ପଛେ ତାହା କର ।। ୨୧ ।।

ଫୁଲ୍ଲାରବିନ୍ଦ ନ-          ୟନ ଗ୍ରହୁଁ ଶୁଣି
ଫୁଲ୍ଲ ସରସିଜମୁଖୀ ବାଳା

ଫେଡ଼ି ବଚନ      ନ କହି ମନ୍ଦ ହସି
ଖେଳାଇଲେ ନେତ୍ରଅନ୍ତ ଡୋଳା
ଫଳ ଫଳିବାକୁ
କାମ କଳ୍ପତରୁ ଲଭିଲାରେ
ଫଳିଲା ଫଳ କୃଷ୍ଣଭୋଗ ଅର୍ଥରେ ହରଷ ହୋଇଲେ ମାନସରେ ।। ୨୨ ।।

ବଢ଼ିଲା ବେନି      ଜନଙ୍କ ରତିରଙ୍ଗ
ବେଳକୁ ବେଳ ବିବିଧ ରଙ୍ଗେ
ବଡ଼ ସୁନ୍ଦର      ଦିଶିଲେ ବେନି ଅଙ୍ଗ
ନୀଳମଣି ତନୁ ହେମଅଙ୍ଗେ
ବନମାଳୀ ଅଙ୍ଗ
ନବଜଳଧର କୂଳେ ଥାଇ
ବିଧୁମୁଖୀ ବିତତ ବିଜୁଳି ଝଟ ଝଟ ଝଟ ଝଟ ଝଟକଇ ।। ୨୩ ।।

ଭାଷନ୍ତି ନାନା      ପ୍ରକାରେ ବନ୍ଧବାଣୀ
ଜଳଧର ଘୋଷ ପ୍ରାୟେମଣି
ଭାସିହୋଇ ଘନ      ରସ ବରଷନ୍ତେ
ବଢ଼େ ମହାସୁଖ ତରଙ୍ଗିଣୀ
ଭାଙ୍ଗି ଜ୍ଞାନବନ୍ଧ
ଭାଙ୍ଗିଲା ବିବେକ ଧୈର୍ଯ୍ୟତଟ
ଭାଙ୍ଗିଗଲା ଲାଜ ତଟତରୁ ତହିଁ ଲୋଡ଼ିଲେ ପାଇବ ନାହିଁ ଭେଟ ।। ୨୪ ।।

ମହୀ ମଣ୍ଡନୀ      ମାଧବ ରତିରସ
ବରଷା ହୋଇଲା ଯହୁଁ ଶେଷ
ମହା ହରଷରେ      ରାଧାକୃଷ୍ଣ ବେନି
ଚନ୍ଦ୍ରକିରଣରେ ପରିବେଶ
ମନମୋହିନୀକ
ମଦନମୋହନ କଲେ ବେଶ
ମନୋହରକର କବରୀ ରଞ୍ଜିଲେ ବେଢ଼ାଇ ବିବିଧ ସୁମନସ ।। ୨୫ ।।

ଯତନ କରି      ଅର୍ଦ୍ଧଚନ୍ଦ୍ର କପାଳେ
କସ୍ତୁରୀ ସିନ୍ଦୂରଚିତା ଦେଲେ
ଜ୍ୟୋତିଧର ମୋତି-      ବସଣୀ ନାସାରେ
କର୍ଣ୍ଣରେ-କୁଣ୍ଡଳ ଶୋଭା କଲେ
ଜମ୍ବୁନଦମାଳୀ

କମନୀୟ କମ୍ବୁ କଣ୍ଠେ ଖଞ୍ଜି ।
ଜକଜକରେ ଚୂଡ଼ୀ ଚାଡ଼ ଲଗାଇ ରମଣୀରତନ ମନରଞ୍ଜି ।। ୨୬ ।।

ରୁଚିର ଖଞ୍ଜନ ନୟନେ ଅଞ୍ଜନ
ଚତୁଃସମ ଗୋଳ ଅଙ୍ଗେ ବୋଳ
ରଙ୍ଗ ଅଧରେ ତାମ୍ବୁଳ ଭଙ୍ଗି ଦେଇ
ଦର୍ପଣ ଧଇଲେ ବନମାଳୀ
ରଙ୍ଗେ ହସି କରି
ବୋଇଲେ ମୋ ସେବା ଏଣୁ ସିନା
ରଙ୍ଗିମାନେତେ ଭଙ୍ଗି ମାକଚ ଗୁହାଁ ମନ୍ଦ ମନ୍ଦ ହସେ ନନ୍ଦକାହ୍ନା ।। ୨୭ ।।

ଲବଣ୍ୟ......... ଶ୍ରୀଅଙ୍ଗେ ବେଢ଼ାଇ
କର୍ପୂର ଝରିଲ ଝୀନବାସ
ଲ...ଇ...ବାମ ହୃଦକୁ ଲଗାଇ
ଆଲଟ ଧଇଲେ ପୀତବାସ
... ... ... ...
ସ୍ୱର୍ଣ୍ଣପ୍ରତିମା ପାଶେ କି ଅମୂଲ୍ୟ ମର୍କତମଣି ପ୍ରଭା ... ... ... ... ।। ୨୮ ।।

ବୋଲନ୍ତି ଶ୍ରୀହରି ଶୁଣ ପ୍ରାଣେଶ୍ୱରି
ବଡ଼ ଦୟା କରିଥିବୁ ମୋତେ
ବକହେଲା ଦାସ ଜନଠାରେ ଦୋଷ
ନ କରିବୁ ବନ୍ଧୁ ! କଦାଚିତେ
ବଧୂ ବନ୍ଦନାରେ
ବେଦ୍ୱରେ ତୁ ମୋର ପ୍ରାଣଧନ
ବ୍ରଜ ସଙ୍ଗେ ଥିଲେ ବୃନ୍ଦାବନ ଗଲେ ତୋହଠାରେ ମୋର ଥାଇ ମନ ।। ୨୯ ।।

ସହଜେ ତୁ ମୋର ନୟନ ପ୍ରତିମା
ତୋ ବିନୁ ମୋତେ ନ ଦିଶେ ଆନ
ସଙ୍ଗ ଭଙ୍ଗ ହେଲେ ଅଙ୍ଗ ନ ରହଇ
ଜଳ ଅଭାବରେ ଯେହ୍ନେ ମୀନ
ଶୀର ମଣ୍ଡନାରେ
ତୋ ଭାବ ଗୁଣରେ ବନ୍ଧା ହୋଇ
ଶ୍ରୀକର ଛୁଇଁ କହୁଛି ସବୁଆଡ଼େ ଚନ୍ଦ୍ରୀପ୍ରାୟେ ସିନା ଭ୍ରମୁଥାଇ ।। ୩୦ ।।

ସୁହାସି ! ସୁଭାଷି ! ସୁବେଣି ! ସୁମୂର୍ତ୍ତି !
ସୁଦନ୍ତ ! ସୁଧୀର ! ସୁକୁମାର !
ସୁଗଜ ଗମନ ! ସୁକୁଳ ରଜନୀ
ସବୁ ରୂପେ ବନ୍ଧୁ ମୁଁ ତୋହର
ସୁଖ ଦାସ୍ୟି ନରେ !
ସନ୍ତୋଷେ ମେଲାଣି ଦିଅ ମୋତେ
ସହରଷ ହୋଇ ରମଣୀ ରତନ ! ବୋଲେ ଅନୁଗ୍ରହ ଥିବ ସତେ ।। ୩୧ ।।

ସହଜେ ଶ୍ରୀମୁଖେ ଆଜ୍ଞାଦେଲେ ଯେତେ
ତୁମ୍ଭେ ମହାପ୍ରଭୁ ବୋଲି କରି
ସହଜେ ସୁମନା ପ୍ରାପ୍ତେ ସ୍ତ୍ରୀର ସିନା
ଆଶ୍ୱାସନା କଲେ ଭୈର୍ଯ୍ୟକର
ଶ୍ୟାମସୁନ୍ଦର ହେ !
ସମ୍ବନ୍ଧେ ଏହି ସ୍ନେହ ଥିବ,
ସବୁରୂପେ ଦାସୀ ହେଲେ ଦୋଷକାରୀ ଅପରାଧ କେବେ ନ ଘେନବ ।। ୩୨ ।।



# ପ୍ରେମ ଚିନ୍ତାମଣି ଚଉତିଶା

କହଇ ନାଗରୀ ବର
କହୁଁ ସଜନୀ ଆଗର
କାଢ଼ି କି ଓଢ଼ଣା          ହୋଇଲ ବାହାର
ଶ୍ୟାମବନ୍ଧୁ ହୋଉ ମୋର ।। ୧ ।।

ଖଳକୁ ନାହିଁ ମୋ ଡର
ଖଟିବି ଚରଣେ ତାର
ଖସିଲା ଖସଣି          ଶର କି ରହଇ
ମୋ ମନ ହେଲାଣି ତାର ।। ୨ ।।

ଗ୍ୟାନ ଧ୍ୟାନ ସବୁ ମୋର
ଗୋବିନ୍ଦ ନନ୍ଦ କିଶୋର
ଗୁପତେ ସିନା ମୁଁ          ତୋତେ କହୁଅଛି
ପାପକୁ ନାହିଁ ମୋ ଡର ।। ୩ ।।

ଘେନିଆ ମନରେ ଏତେ
ଘୋର ବିଜନ ବନସ୍ତେ
ଘନଶ୍ୟାମ ଚନ୍ଦ୍ର          ମୁଖ ଦେଖୁଥିଲେ
ବୈକୁଣ୍ଠ ଗ୍ଲୁର ବା କେତେ ।। ୪ ।।

ନିଷ୍ଠା ଏହି କଥା ମୋର
ନ ଯାଇ ନଟନାଗର
ନାରାୟଣ ପୁରେ          ବାସ ନ ଯୋଗାଇ
ନରକେ ପଡ଼ିବା ସାର ।। ୫ ।।

ଚୂର୍ଣ୍ଣକୁନ୍ତଳ ଆବୃତ
ଚନ୍ଦ୍ରବଦନ ମୋ କାନ୍ତ
ଚଉଦ ବ୍ରହ୍ମାଣ୍ଡ          ଲୋକ ଛଡ଼ାଇଲେ
ଛାଡ଼ି ନ ପାରେ ମୋ ଚିତ୍ତ ।। ୬ ।।

ଛଇଳ ଛବି ଛଟକ
ଛଡ଼ାଇଦେଲା ବିବେକ

ଛନ ଛନ ହୋଏ          ମନ ଅବଛନ
ହୃଦ ହୁଏ ଦକ ଦକ ।। ୭ ।।

ଜଗମୋହନୀ ମନ୍ତ୍ର
ଜାଣନ୍ତି ମୁରଲୀଧର
ଯା ଗୀତରେ ଦ୍ରବ          ପାଷାଣ ହୋଇ
ପାଣି ହେବକ ପଥର ।। ୮ ।।

ଝଟନ୍ତି ପଲ୍ଲବ ତରୁ
ଝଟନ୍ତି ପଲ୍ଲବେ ଦାରୁ
ଝାମଯାଇ ଉଡ଼େ          ଗଲ ପକ୍ଷୀ ପଡ଼େ
କ ସ୍ଥିର ଅବଳା ଭୀରୁ ।। ୯ ।।

ଞବର୍ଣ୍ଣ ଉପଗ୍ଧ ମୋତେ
ମୁଁ ଏବେ କହୁଛି ତୋତେ
ଞିଜ ମନରୁ ତୁ          ତୋହର ପଗୃର
କ ହୁଅଇ ବଂଶୀଗୀତେ ।। ୧୦ ।।

ଟଳଇ ମେରୁ ମନ୍ଦର
ଟଳବକ ବାଣୀ ମୋର
ଟମକ ନିଶାଣ          ବାଜେ ତ୍ରିଭୁବନ
ରାଧା ହେଲେଣି କୃଷ୍ଣର ।। ୧୧ ।।

ଠୂଳ ପୁରୁଷ ଉତ୍ତମ
ଠିକେ ରସିକ ରାପ୍ୟେ ନାମ
ଠିକେ ସଦାନନ୍ଦ          କବସ୍ୱର୍ଣ୍ଣ ବ୍ରହ୍ମା
ଲଭିହେବ ପୂର୍ଣ୍ଣକାମ ।। ୧୨ ।।

ଡୋଳା ଲଲାଟରେ ଖୋସି
ଡାକେ ମୁଖେଦେଇ ବଂଶୀ
ଡରିଲ ପରାପ୍ରେ          ମିଛେ ବୋଲୁଥାଉ
ରଖ ମଳଇଷି ଭ୍ରଷି ।। ୧୩ ।।

ଢଳ ଢଳ ଝୁଲୁଥାଇ
ଢାଳ ଢାଳ ଝୁହୁଁଥାଇ
ଢମ୍ପଣ ଛୁଡ଼ି          ଏଣୁ ଯେମନ ସିନା
ଯୁଆପଛେ ହୋଇଲ ବାଇ ।। ୧୪ ।।

ଅଳପ ନୋହେ ତା ବେଣୀ
ଆଖି-ପକ୍ଷୀ ଅଟା ରସ
ଅନୁରାଗୀ ଲୋକ          ଗୁଡ଼୍‌ପାରଇକ
କୁଳଯାକ ପଡ଼ଛ ନାଶ ॥ ୧୫ ॥

ତମାଳନୀଳ କୁନ୍ତଳ
ତଥିବନ୍ଧା ବାଙ୍କଚୂଳ
ତହିଁ ମୟୂରଚନ୍ଦ୍ରିକା          ଜାମୁଡାଳ
ମଣ୍ଡଣି କୁସୁମମାଳ ॥ ୧୬ ॥

ଥୋଇଥା ଗଣ୍ଡି ବସନେ
ଥିଲେ ଦେଖନ୍ତୁ ନୟନେ
ଥିବ ଦେଖି କେବ୍ବ          କୁଳେ ବ୍ରଜବାଳୀ
ଜାଣିବ ଅଳପ ବନେ ॥ ୧୭ ॥

ଦଣେ ଅଳକାମଣ୍ଡଳ
ଦବ୍ୟମୋହନପନ୍ତ ମିଳ
ଦୁଇପାଖ ଘେନ          ଧାଡ଼ ଧାଡକଆ
ପହଦଏ ଧୈର୍ଯ୍ୟ ଝାଳ ॥ ୧୮ ॥

ଧନ୍ୟ ତା ଚନ୍ଦନପାଟି
ଧୈର୍ଯ୍ୟଚରୁ ଦଏ କାଟି
ଧଣବ କେ ଦେହ          ତାଙ୍କୁ ନ ଦେଖିଲେ
ନ୍ଟିଦୋଏ ଯୁଗକୋଟି ॥ ୧୯ ॥

ନାଗଷ ଗବଗଞ୍ଜନ
ନୟନେ ସରୁଅଞ୍ଜନ
ନୂଆ ନୂଆ ବାଙ୍କ          ଗ୍ରହାଣୀ ତହିଁରେ
କସେ ନାଚୁଆ ଖଞ୍ଜନ ? ୨୦ ॥

ପରପାଇଁ ଦେଲ ପ୍ରାଣ
ପତାକା ବାନ୍ଧିଲ ଜାଣ
ପୁରୁଣା ପ୍ରୀତିସ୍ଥା          ଥିଲେ କ ପସ୍ୱର
ପ୍ରୀତିର କେତେ ଲକ୍ଷଣ ॥ ୨୧ ॥

ଫନ୍ଦା ମୁଁ କଲ ତାହାକୁ
ଫେଡ଼ କହଲ ମନକୁ

ଫିଟିପଡ଼ିଲା ନଜଧନ ଛାଣିରେ
ଫୋଡ଼େ କାମଶର ବୁକୁ ॥ ୨୨ ॥

ବିମ୍ବାଧରେ ମନ୍ଦହାସ
ବକ୍ଷସ୍ଥଳ ଶୋଭାଦେଶ
ବୁଜ ଲୋକ (?) ମାରଣା ତା ଆଖି
ମନୁଲୁଟିକଲେ ରସ ॥ ୨୩ ॥

ଭୁଜ ମର୍କତ ବଲ୍ଲରୀ
ଭୁବନ ମଙ୍ଗଳକାରୀ
ଭଣେ କବିସୂର୍ଯ୍ୟ ସେ ବନ୍ଧା ପାଇବେ
କଲେ ରାଧା ଶୋଭା ଶ୍ରେଷ୍ଠ ॥ ୨୪ ॥

ମନା କରୁଥିବ ମୋତେ
ମୁଁ ଯେବେ କହୁଛି ତୋତେ
ମୋହନଚନ୍ଦ୍ରଙ୍କୁ ମୂରୁଚ୍ଛ ମନ୍ତ୍ର
କେ ଜାଣେ କହ ଜଗତେ ॥ ୨୫ ॥

ଜୀବନ ବନ୍ଧୁ କାଳିଆ
ଯମୁନା ଜଳକୂଳିଆ
ଜଗିବସିଥାଇ ମୋ ଭେଟପାଇଁକି
ଦେଖି ଚମକେ ମୋ ହିଆ ॥ ୨୬ ॥

ରତନହାର କଙ୍କଣ
ରବିକିରଣୁ ଦ୍ୱିଗୁଣ
ରହି ତା ଶ୍ରୀଅଙ୍ଗେ ଶୋଭା ରଙ୍ଗପାଦ
ଚାହ୍ନିକୁ ଶୋଭାପାଇଣ ॥ ୨୭ ॥

ଲାବଣ୍ୟ ଶ୍ରୀଅଙ୍ଗ ତାର
ଲାଗି ତହିଁ ପୀତାମ୍ବର
ଲଳନା ମନମତ୍ତ କଷ୍ଟ ପଡ଼ନ୍ତି
ଲାଭ ଠୋପରେ ତାହାର ॥ ୨୮ ॥

ବିଚକ ପାହୁଡ଼ ପାଦେ
ବାଜେଣୀ ନୂପୁର ନାଦେ
ବଣାହୋଇ ମୋର ବିବେକ ଚଡ଼ାଇ
ହୁରୁଡ଼ିଗଲେ ବିଷାଦେ ॥ ୨୯ ॥

ଶରଣଗଲା ପ୍ରମାଣ
ଶ୍ୟାମବନ୍ଧୁ ଶ୍ରୀଚରଣ
ସେ ଯେବେ ଗ୍ଭଡବେ    ମୁଁ ଯେ ନ ଗ୍ଭଡ଼ଇ
ସେ ବନା କେ ପରତ୍ରାଣ ।। ୩୦ ।।

ସେ ହନେ ଯେତେ ମୋ ଦୋଷ
ସେ କ୍ଷମା ହେବ ଅବଶ୍ୟ
ସର୍ବ ଗର୍ବଖର୍ବ    ହୋଇଲା ମୋହର
ଗ୍ଭଡ଼ିଲିଣି ସବୁ ଆଶ ।। ୩୧ ।।

ସବୁ ଜନ୍ମରେ ମୁଁ ତାର
ସେହି ପ୍ରାଣନାଥ ମୋର
ଶୁଣୁଥିଲୁ ଋଷି    କହିଗଲେ ପର
ମୁଁ ସେ ଈଶ୍ୱର ଈଶ୍ୱର ।। ୩୨ ।।

ହୋଉନୋହୁ ଭଗବାନ
ହେଲେ ଅଧିକ ନନ୍ଦନ
ହରଣୀଙ୍କ ବନା    ଗୃହଙ୍କର ଗତି
କାହିଁରୁ ସେ ମୋତେ ସ୍ଥାନ ।। ୩୩ ।।

କ୍ଷେମେ ରସିକର ରସ
କ୍ଷିତିରେ ହୋଉ ପ୍ରକାଶ
ଖ୍ୟାତ ପ୍ରେମ ଚନ୍ଦ୍ରା-    ମଣି ଗୀତ ନାମ
ମୁଁ ସାଧୁଚରଣ ଦାସ ।। ୩୪ ।।



# ମନ୍ଦାକିନୀ ଚଉତିଶା

( ରାଗ – କାମୋଦୀ )

କୃପାଲୋଳଲୋଚନା କଳକଣ୍ଠବଚନା
କନକ ପ୍ରତିମବରନା
କୁନ୍ଦସୁନ୍ଦର ଦନ୍ତୀ କମନୀୟ ମୂରତି
କନକ କମଳବଦନାରେ
ମନ୍ଦାକିନି !
କତକ ମୋହୋପାଇଁ ଯିବୁ
କୋମଳେ ଏମନ୍ତ କହିବୁ
କରୀକ୍ରୀଡ଼ାଗମନୀ କୃପା କରିବୁ ଯେବେ
ରସିକଯୁବା ଜାଆଁ ଭବୁରେ
ମନ୍ଦାକିନି ॥ ୧ ॥

ଖଞ୍ଜନନୟନା ସେ କୋମଳା ହୃଦୟାକୁ
ଯେଣକ ମୋହୋ ଉପରତ
ଖଣ୍ଡେନ୍ଦୁ ଶେଖରଙ୍କି କରିବେ ସେ ଦୟାରୁ
ମଙ୍ଗଳ ହୋଇବ ଜୀବନରେ
ମନ୍ଦାକିନି !
ଖରଅପାଙ୍ଗ ଚନ୍ଦ୍ରମୁଖୀ
ଖେଳନ୍ତା ନେହାନ୍ତେ ଅନାଇଁ
ଖଣ୍ଡା ମଦନହାଥେ ଶାଣଧରି ମୁଁ ଦେଲି
ଆପଣା ଶିରଚ୍ଛେଦପାଇଁରେ
ମନ୍ଦାକିନି ! ॥ ୨ ॥

ଗାଢ଼ ହୃଦୟା ଯେଣୁ ମୋହୋର ଅନୁନୟ
ଶୁଣିଲେ ବଢ଼ିବ ମଦନ
ଗୂଢ଼ହୃଦୟ ହେଲେ ଭିତରେ ସୁସରସ
କୁମୁଦ ନାଳିକା ଯେସନରେ
ମନ୍ଦାକିନି !
ଗର୍ବ ମନରେ ନ କରିବୁ
ଗୁପତ ସମୟ ଠାଣିବୁ ।

ଗନ୍ଧର୍ବ ସନ୍ତ୍ରାମନ    ଯେମନ୍ତେ ମୋହୋଠାରେ
ବଳଇ ତେମନ୍ତେ କରବୁରେ
ମନ୍ଦାକିନ ॥ ୩ ॥

ଘନଜଘନା ନଷ୍ଟେ    ଘେନବ ମୋ ବେଦନା
ଘେନାଇ କହିବୁ ଯେମନ୍ତେ
ଘଟଣି ତୋ ବଦନ    ଦରଶନ ବିହୀନେ
ମଦନ ହୋଇଲା କୃତାନ୍ତରେ
ମନ୍ଦାକିନ !
ଘେନବ ଜୀବନ ତାହାର
ଘନସ୍ତନ ! ତୁ ପ୍ରତିକାର
ଘେନବୁ ଯେବେହେଁ ବି-    ନୟ ଶ୍ରବଣପଥେ
ଜୀବନ ହୋଇବ ତୋହୋରରେ
ମନ୍ଦାକିନ ! ॥ ୪ ॥

ନଳିନ ଇନ୍ଦୀବର    ନୀଳକଣ୍ଠ ଚକୋର
ମଦ୍ଦର ମୀନ କାମଶର
ନୟନ ତୁଳନାକୁ    କଉଁ ଗୁଣେହେଁ ସମ
ଚଞ୍ଚଳାୟୁକ୍ତ ଲୋଚନାରେ
ମନ୍ଦାକିନ !
ନାଗରୀରତ୍ନ ମୋତେ ଚାହିଁ
ନେତ୍ର ମନ୍ଥରେ ଉଲଟାଇ
ନ ଚାହିଁଲ ପରାଏ    କରି ସେ ଚାହିଁଗଲା
ନୟନରୁ ତା ଯାଉନାହିଁରେ
ମନ୍ଦାକିନ ! ॥ ୫ ॥

ଚତୁରପଣ ତାର    ଲକ୍ଷିବାକୁ ଗୋଚର
ନୋହଇ ସମସ୍ତ ପ୍ରକାରେ
ଚଳିବା ବନାପଥା    ମହାଗୁପତ ହୋଇ
ଅନଳ ଥାଇ ବ୍ୟଜନରେ
ମନ୍ଦାକିନ !
ଚମତକାର ଏହି ତାନ
ଚଞ୍ଚଳାୟୁକ୍ତ ନୟନାର

ଚୁହିଁବାମାନେ ଅନା-    ୟାସରେ କହିଯାଇ
ଅସୀତ୍କାର ସୀତ୍କାରରେ
ମନ୍ଦାକନ୍ଦ ! ॥ ୬ ॥

ଛୁଆକାନ୍ତ ସିହାଁଣୀ    ଛଇଳରେ ଚୁହାଣୀ
ଶୁଣିଲେ ବଚନସୁ ମୋହୋର
ଛାଡ଼ ସମସ୍ତ ଶ୍ଳେଷ    ମନୋଗତ ବିଳାସ
ଉତ୍ସାହ ବଢ଼ିବ ତାହାରରେ
ମନ୍ଦାକନ୍ଦ !
ଛୀନୋଦରୀ ମନ ନ ପାଇ'
ଛାଡ଼ିମଡ଼ିବ ତୁମ୍ଭେ ନାହିଁ
ଛିତମନ୍ତ୍ରୀ ଯେବେ    ମନେ ଆନ ଘେନିବ
ଏମନ୍ତ କହିବୁ ବୁଝାଇରେ
ମନ୍ଦାକନ୍ଦ ! ॥ ୭ ॥.

ଯଥା ସିନ୍ଦୂରରଜ    ମସ୍ତକରେ ମଣ୍ଡନ
ଚନ୍ଦନ ସର୍ବାଙ୍ଗମଣ୍ଡନ
ଜାଣିଲେହେଁ ଏମନ୍ତ    ସମସ୍ତ ଲୋକଙ୍କର
ଚନ୍ଦନଠାରେ ବହୁମାନରେ
ମନ୍ଦାକନ୍ଦ !
ଯେବେ କରିବ ବାଳା କୋପ
ଜାଣି ମୁଁ ସେ ସ୍ନେହକଳାପ
ଯେମନ୍ତେ ନାନା କାଷ୍ଠ-    ଧୂମଧୂମରେ ଲେଖା
ଯଥା ଅଗୁରୁ ଧୂମଧୂପରେ
ମନ୍ଦାକନ୍ଦ ! ॥ ୮ ॥

ଝଳଦଶନୀ ପ୍ରିୟା    ସହଚରୀମାନଙ୍କୁ
ଚୁହିଁ କହିବ ଅନକ୍ଷରେ
ଝଳ କଞ୍ଚୁତରବ    ଗର୍ବ ଚନ୍ଦ୍ରମଲ୍ଲବ
ଝୁଇଁଥିବ ସେ ବଚନରେ
ମନ୍ଦାକନ୍ଦ !
ଝଗଡ଼େ କରିବୁ ତୁ ଠାବ
ଝଟକଦାସୀ ଚୂଡ଼ଙ୍କବ

ଝମ ନୟନାନୋତ୍ତ ପ୍ରସନ୍ନ ଅପ୍ରସନ୍ନ
ନୟନଭାବ ଝୁଝୋଇବରେ
ମନ୍ଦାକିନି ।। ୯ ।।

ନୃପବଲ୍ଲଭ ବୋଲି ଭରସା ହୋଉଁନାହିଁ
ନୃପରକ୍ଷକରେ ମନ୍ତ୍ରଣା
ନଳିନନାଳୀ କଣ୍ଠ- କରେ ବେଷ୍ଟିତହେଲେ
ମଧୁପ ତଦଗତମନା
ମନ୍ଦାକିନି !
ନିସର୍ଗ ଚଞ୍ଚଳନେତ୍ରାକୁ
ନିର୍ମଳ କେତକୀଗାତ୍ରାକୁ
ନ କରିବୁ ଆଶଙ୍କା ଏହିକଥା ବିଚାରି
ସୁରତ ପ୍ରଚୁର ପାହାକୁରେ
ମନ୍ଦାକିନି ।। ୧୦ ।।

ଟିକାଏ ଯେବେ ତାର ନୋହିବ ସୀତ୍କାର
ଏକଥା କରି ତ ପାରିବୁ
ଟଙ୍କଧର ବଇରି ଅଗ୍ନିମଧ୍ୟରେ ଅଛି
କେମନ୍ତ ପ୍ରକାରେ ତାରିବୁରେ
ମନ୍ଦାକିନି !
ଟେକିଅଛି ନୟନ ମନ
ଟାକି ରହିଅଛି ଜୀବନ
ଟଳିବ ଟାଣହୋଇ ରହିବ ପାଇଲେତ
ସରସ ନୀରସ ବଚନରେ
ମନ୍ଦାକିନି ।। ୧୧ ।।

ଠିଆ ଯେ ହୋଇଥାଇ ସଖୀ ଆବୃତହୋଇ
ଅଙ୍କର ଗଗନେ ସୁକେଶୀ
ଠିକନକ୍ଷତ୍ରଗଣ ବେଷ୍ଟିତ ହୋଇ କରି
ଯଥା ଶରଦପୂର୍ଣ୍ଣ ଶଶୀରେ
ମନ୍ଦାକିନି !
ଠିକଗ୍ରୁମର କାହାକରେ
ଠଣଆଲଟ କାହାଠାରେ

ଠାଠିକ କରି ଅବ- ଧାନ ଅବକାଶକୁ
ଡାକ କେ ଖଟୁଥାଇ ଧୀରେ ରେ
ମନ୍ଦାକନ୍ଦ ! ।। ୧୨ ।।

ଡମ୍ବରୁ ମଧ୍ୟମାର ନିଘ୍ରଷ କରିବାର
ଲେଶେ ହେଁ ହୃତ୍ତ ନାହିଁ ମନ
ଡୋଳା ପ୍ରଭୃମାର ମୁଁ ଦ୍ୟୁମନ୍ତ କଥା ଶୁଣି
ଆଶ୍ୱାସି ରଖିଛୁ ଜୀବନ ରେ
ମନ୍ଦାକନ୍ଦ !
ଡରି ଜୀବନକୁ ନ ଯାଇ
ଡେରି ମନ ଗୃତକ ଥାଇ
ଡାଳମ୍ବ ଗାଜ ଦନ୍ତୀ ଅବଶ୍ୟ ବରଷଇ
ବୋଲି ମେଘକୁ ଗୃହୁଁଥାଇରେ
ମନ୍ଦାକନ୍ଦ ! ।। ୧୩ ।।

ଡାଳବ ନାହିଁ ମନ ମୋହୋର ହିଷସ୍ପୃରୁ
ମନକୁ ଏମନ୍ତ ଆସୁଛି
ଡାଳେ ହେଁ ସେ ସୁଶୀଳା ସୁଠାମା ପ୍ରେମକଳା
ପ୍ରଣସ୍ପ ଆରବ୍ଧା ମୃଗାକ୍ଷୀରେ
ମନ୍ଦାକନ୍ଦ !
ଡାଳବ ଯାହାରେ ନମ୍ବନ
ଡଳବ ସକଳ ଗିଆନ
ଡମ ମୁଁ କହୁନାହିଁ ସେହି ପାଦ ସେବାରୁ
ରକ୍ଷା କରିଛି ମୁଁ ଜୀବନରେ
ମନ୍ଦାକନ୍ଦ ! ।। ୧୪ ।।

ଅଣୁ ମଧ୍ୟମା ଆଣି ଆଣି ପାରିବାକୁ ଛ
ଅବନୀ ମଣ୍ଡଳରେ ନାହିଁ
ଅନାୟାସ ଲୋଚନେ ଅନଙ୍ଗ ଅକୂପାର
ପାରଇ ଭୁଞ୍ଜାଇ ବଢ଼ାଇଲେ
ମନ୍ଦାକନ୍ଦ !
ଅସାବଧାନ ନ କରିବୁ
ଅବଶ୍ୟ ଏଥୁ ଉଦ୍ଧରିବୁ

ଅନାୟାସ ନୋହଇ          ଈମ୍ଭୁକ୍ତ ନୟନାର
ଭୁଞ୍ଜ ସେ ସ୍ୱେଥକୁ ଯାଉବୁରେ
ମନ୍ଦାକନ ! ।। ୧୫ ।।

ତନୁ ଦାନ ଦେବାକୁ          ତରଳାୟତ ନେତ୍ରା
ମନରେ ମଞ୍ଜନ କରିବ
ତନୁ ଦାନେ ଜୀବନ          ରକ୍ଷା କରିବା ଫଳ
ହେମ ଗିରିଦାନେ ନୋହିବଟରେ
ମନ୍ଦାକନ !
ତୁଙ୍ଗସ୍ତନ କନକ ଗିରି
ତା ହିତ ଯେଣଙ୍କୁ ସୁନ୍ଦରି
ତନୁଦାନ ଦେବାର          ପ୍ରତିଦାନ ଦେବାର
କେ ଅବା ପାରିବ ନବାରିରେ
ମନ୍ଦାକନ ! ।। ୧୬ ।।

ଥୋଇଛ ଅଛୁ ଯତ୍ନ          କରି ଅନେକ ରତ୍ନ
ଶୃଙ୍ଗାର ଶାଣରେ ସଜାଡ଼ି
ଥୋକାଏ ଆଲିଙ୍ଗନ          ଥୋକାଏକ ଚୁମ୍ବନ
ଅଧର ପାନାନ୍ଧ ନଗାଡ଼ିରେ
ମନ୍ଦାକନ
ସ୍ଥାନେ ନଖ ଦଶନ ପଦ
ସ୍ଥବିର ନାନା ବନ୍ଧ ବାଦ
ସ୍ଥୂଳ ଦାନକୁ ଯେବେ          ମନରେ ବିଗୁରିବ
ଦେବତା ସକଳ ସମ୍ପଦରେ
ମନ୍ଦାକନ ! ।। ୧୭ ।।

ଦମ୍ଭ ହାସ୍ୟ କଟାକ୍ଷ          କଣ୍ଠରେ ଅଧିକ୍ଷେପ
ଅନବରତେ କରୁଅଛୁ
ଦରିଦ୍ର ପରାର୍ଥନା          କରି ନ ପାଇଁ ଗଲେ
କି ଯଶ ପାଇବ ମୃଗାକ୍ଷୀରେ
ମନ୍ଦାକନ !
ଦୁଃଖ ନାଶିମା ଯେ ପ୍ରକାର
ଦଣ୍ଡେ ମାତ୍ର କରି ବିଗୁରି

ଦୟାରେ ପୂର୍ଣ୍ଣମନା ଦୁଃସହ ଦୁଃଖଶୁଣି
କରିବୁ ଏପଥ ଉପଗ୍ରହରେ
ମନ୍ଦାକିନି ! ॥ ୧୮ ॥

ଧୀରଗମନା ରମ୍ୟ ସର୍ବାଙ୍ଗ ସୁଲକ୍ଷଣୀ
ସୁରଙ୍ଗସାରଙ୍ଗ ପତାକା
ଧାତା ଅଛି ସଜାଡ଼ି ବଉଁଝଗଡ଼ପଡ଼
ଲୋକରେ ମୋହନ ଲଙ୍କାରେ
ମନ୍ଦାକିନି !
ଧରଣୀ ମଣ୍ଡନମଣ୍ଡନା
ଧନ୍ୟ ତା ଗୃହ ବିରଚନା
ଧୀବରବଧୂନେ ମୋତେ ରକ୍ଷାକରିବା ନାହିଁ
ସେବିକା ଶ୍ରୀ ଜଗନ୍ନାଥ ବନାରେ
ମନ୍ଦାକିନି ॥ ୧୯ ॥

ନ ଦେଖିଥାଇଁ ଯେବେ ସୁନ୍ଦରୀ ଗୁଣବତୀ
ମାନଙ୍କ ଶ୍ରୁତିମାନ ଶୁଣି
ନୁହଇ ଉତ୍କଣ୍ଠା ଆରତ ଅନୁକ୍ଷଣେ
ଶରୀର ହେଉଥାଇ ହାଣିରେ
ମନ୍ଦାକିନି !
ନୟନେ ନ ଦେଖିଲି ପୁଣି
ନୂତନ ପ୍ରେୟସୀ ସିହାଁଣୀ
ନେତ୍ରପ୍ରତ୍ୟକ୍ଷ ତାର ଆସି ମୋ ନୟନର
ନବାସକଲି ରୂପ ଜାଣିରେ
ମନ୍ଦାକିନି ! ॥ ୨୦ ॥

ପ୍ରଣୟିନୀ ପ୍ରଣୟୀ ପ୍ରଣତପ୍ରିୟବଚନେ
ପାଶେ କି ହୋଇବ ପ୍ରବେଶ
ପଲଙ୍କତଳେ ଥାଇ ପାଣିବେନି ଯୋଡ଼ିବ
ହୋଇ ମୁଁ ହରଷ ବରସରେ
ମନ୍ଦାକିନି !
ପଦ୍ମନୟନା ମୁଖ ଦେଖି
ପଲକ ନ ପଡ଼ିବ ଆଖି

ଯବନେ ଯନ୍ତ୍ରପ୍ରାୟେ    ତନୁ କମ୍ପହୋଇବ
ଧଇର୍ଯ୍ୟ ନ ଯାଇବ ରଖିରେ
ମନ୍ଦାକିନି ! ।। ୨୧ ।।

ଫାଟିଲାର କୋରକ    ପ୍ରାଏ ଅଧରଦନ୍ତ
ହରଷ ପ୍ରାଦୁର୍ଭବହୋଇ
ଫିଟିଲା ଲଜ୍ଜାନେଣେ    ପକ୍ଷ୍ମଳ ଆଚ୍ଛାଦିତ
ପ୍ରିୟା ମୋ ମୁଖକୁ ଅନାଇଁରେ
ମନ୍ଦାକିନି !
ସ୍ଫୁଟହୋଇ ତପ ଝଣୀବ
ଫୁଟୁଣା ମୋର ନ ସରିବ
ଯାଇ ବେଳକୁ ମୋର    ଆନନକୁ ନ ଗୁହିଁ
ବଦନତଳକୁ କରିବରେ
ମନ୍ଦାକିନି ! ।। ୨୨ ।।

ବିଶେଷେ କହୁଅଛୁ    ସେକାଳେ ମୋତେ ନେଇ
ଚରଣତଳେ ପକାଇଲୁ
ବରବନିତା ବାମ    ଚରଣ ବନରୁହ
ମୋହବଶଙ୍ଗେ ଅଣିଦେବୁରେ
ମନ୍ଦାକିନି !
ବିସ୍ମର ଯାଉଛୁ ବିଷାଦ
ବଜ୍ଞାଖିଦେବଟି କ ପଦ
ବଲୀନ ଶ୍ରୀଚରଣ    ଛୁଇଁଲିମାନେ ମୋର
ପ୍ରାପତ ସକଳ ସମ୍ପଦରେ
ମନ୍ଦାକିନି ! ।। ୨୩ ।।

ଶ୍ରବଣ ସେକାଳରେ    ପାଟୀର ଦ୍ରବପୀନ-
ସ୍ତନୁଁ ବସନାଞ୍ଚଳ ହରି
ଶବେ ଆଶ୍ଳେଷକରି    ପାଣରେ ବସାଇବ
ବହୁତ ଅନୁଗ୍ରହ କରିରେ
ମନ୍ଦାକିନି !
ଭୟେ ନ ବଢ଼ାଇବ କର
ଭୂଶତର କୁଚକୁ ତାର

ଭରସା ନୋହିବାର ଜାଣି ରମଣୀମଣି
କନ୍ଦରେ ଭୁଜଦେବ ମୋରରେ
ମନ୍ଦାକନି ! ।। ୨୪ ।।

ମଧୁରହସି ପୁଣ ମୁଖକୁ ଅନାଇବ
କାତର ହୋଇବାର ଜାଣି
ମୋହର ଏ ଉତ୍ସବ କଉଁଦନ ହୋଇବ
ହୋଇବ ପ୍ରସନ୍ନ ସିହାଣୀରେ
ମନ୍ଦାକନି !
ମନେ ତୁ ସଂଶୟ ନ କର
ମୋତେ ସୁଦୟା ଅଛୁ ତାର
ମନାଇ କହିବୁରେ କଂଦର୍ପଶରେକ୍ଷଣା
ସମୁଦ୍ର ନ ଗୁଣ୍ଡଇ ମାଇରେ
ମନ୍ଦାକନି ! ।। ୨୫ ।।

ଯେତେ ମୁଁ କହୁଅଛୁ ଯୁବାବୟସୀ କଏ
ନୋହେ ନୂତନ ପରଂପରା
ଯୋଗାଉ ନ ଯୋଗାଉ ଏହି ରୂପରେ ଅଛୁ
କହିବ ପରପାଟୀ ଧାରାରେ
ମନ୍ଦାକନି !
ଯୋଡ଼ିବା ଯେବେ ତାକୁକର
ଯେବେ ଚରଣେ ଦେବାଶିର
ଜାଣିବାବେଳକୁ ଏ ଅଧିକ ତ ନୁହଇ
କୁସୁମମଣ୍ଡନ ଶିରରରେ
ମନ୍ଦାକନି ! ।। ୨୬ ।

ରତିରେ ଅତିମତ ରସବତୀ ସୁବତୀ
ତୁ ରସବୃଷ୍ଟି ଜଳଧର
ରହିଛୁ ଆଶକରି ମୋର ପ୍ରାଣଗୃତକ
ଦେହକୁ କର ହତାଦରରେ
ମନ୍ଦାକନି !
ରମଣୀରତ୍ନ ମନ୍ଦବାସୀ
ରହୁ ତୋହର ଯଶରାଶି

ରସବଖର ସ୍ୱେଦେ ରହିଲା ପୁଂସପ୍ରାଣ
ଯମପୁରୁ ଲେଉଟି ଆସିରେ
ମନ୍ଦାକିନୀ ! ॥ ୨୭ ॥

ଲାବଣ୍ୟ ଉଚ୍ଚକୁଚ ଶ୍ରୋଣୀପୃଥୁଳସଞ୍ଚ
ଜଘନ ବିପୁଳ ବିଶାଳ
ଲଗିଥିବା ନଥିବା ସଂଶୟ କଟିତଟ
ବସନଭିଡାରେ ଉଜଳରେ
ମନ୍ଦାକିନୀ !
ଲାଗିଛି ଲୋଭ ଦେଖିବାକୁ
ଲଳନା ନିତମ୍ବବେଶକୁ
ଲବଣୀ ପ୍ରତିମାକୁ ପାଇବା ବିଶ୍ୱରିଛି
କର ବଢ଼ାଇଛି ଚନ୍ଦ୍ରକୁରେ
ମନ୍ଦାକିନୀ ! ॥ ୨୮ ॥

ବିଶ୍ୱର ଏକେ ଚନ୍ଦ୍ର ଦେବପଥ ସଂଶ୍ୱର
କରଇ କୁମୁଦ ପ୍ରକାଶ
ବକ୍ରୁଛି କେଉଁ କେଉଁ ଏବ୍ୱକେନ ଉଲ୍ଲାସ
ବାଳା ବୁଝିଇସିନା ଶ୍ଳେଷରେ
ମନ୍ଦାକିନୀ !
ବୋଲିବ ନିନ୍ଦାଅଛି ସିନା
ବିଶ୍ୱରିଲେ ଗୁଣୀ କଳ୍ପନା
ବିଷବଳିତବାତ ମଳୟାଚଳୁ ଆସି
କୋକିଳବାଣୀ ବିରଚନାରେ
ମନ୍ଦାକିନୀ ॥ ୨୯ ॥

ସୁଧାଗରଳ ପୂର୍ବେ ସମ୍ଭବ ହୋଇଥିଲା
ସୁଷମା ନୟନାନ୍ତପାଇଁ
ସମଲେଖିବା କାଳେ କେ କାହାକୁ ଅଧିକ
ଧାତାକି ବଣାନେହେ ଥାଇରେ
ମନ୍ଦାକିନୀ !
ସଚେତହେ ହୋଇବ ଏମନ୍ତ
ସ୍ନେହକରିବ ସେ ନେହାନ୍ତ

ସାଗରଗର୍ଭରେ ଶିବ ସେବାକରିବା ଫଳ
ସେକାଳେ ହେବ ଫଳଣରେ
ମନ୍ଦାକିନି ! ॥ ୩୦ ॥

ସନ୍ନିଧେ ବସିଥିଲେ ଚୁମ୍ବନ ଆଲିଙ୍ଗନେ
ଅଧରପାନ ଦନ୍ତପଦ
ସରୁନଖର କ୍ଷତ ଏମାନ ଲଗାଇଲେ
କଚ୍ଛନ୍ତି ନୋହିଲ ବିଷାଦରେ
ମନ୍ଦାକିନି !
ସ୍ୱେଦ ଢାଳରେ ଥିବା ଯେତେ
ସବୁକଥା ନୁହଇ ଡେତେ
ଶ୍ୟାମାପାଶେ ନ ଥିବ ସ୍ୱପ୍ନେ ସବୁପାଇବ
ସେ ଅବା ସୁଖଦେବ କେତେରେ
ମନ୍ଦାକିନି ! ॥ ୩୧ ॥

ସେ ସୁଖମାନସବୁ ଦୁଃଖକୁ ହେତୁ ପିନା
ସେନେହ ଥାଇ ପାଶେଥିବ
ସୁଜାଣ ଶିରୋମଣି ସମସ୍ତ ବିଶୃରତ
କେ ଏଥିସଙ୍ଗତେ ହୋଇବରେ
ମନ୍ଦାକିନି !
ସୁଂଦରୀ ସରସିଜ ମୁହିଁ
ଶୁଣିମ ସରସିତ ହୋଇ
ସମ୍ପୂର୍ଣ୍ଣ ଦୟାକର- ସରସବାଣୀ କହି
ଛାଡେହେଁ ଦେବପଠିଆଇ
ମନ୍ଦାକିନି ! ॥ ୩୨ ॥

ହରଷେ କର୍ଣ୍ଣଦେଇ ବଇରାଗ ନ ପାଇ
ହରିଣନୟନୀ ଶୁଣିଲା
ହରଷେ ତାକୁ ଚାହିଁ ସମ୍ଭାଳୁ ସମ୍ଭାଳୁନ୍ତି
ଗଣ୍ଡଉରଜ ପୁଲକଲରେ
ମନ୍ଦାକିନି !
ହ୍ରିଣ୍ଡିରହାସୀକ ଅନାଇଁ
ହାହାହା ମନରେ କରଇ

ହରଷ ମହାକମ୍ପ ଗ୍ଲାଡ଼ ସମସ୍ତ ଅଙ୍ଗ
ପୁଲକବାଳୀ ବଳଆଇରେ
ମନ୍ଦାକିନି ! ।। ୩୩ ।।

କ୍ଷଣେ ପର୍ଯ୍ୟନ୍ତେ ବାଳା ମହାତଦବ ହୋଇ
ଗଗନଜଳଧିରେ ମଜ୍ଜିଲ
କ୍ଷମାକରକି ଘନ ଉଦରେ ଲୁଚିଥିଲା
ଧଇର୍ଯ୍ୟ କେମନ୍ତ ହୋଇଲାରେ
ମନ୍ଦାକିନି !
କ୍ଷୀଣୋଦରୀର ଏ ସନ୍ତତ
କ୍ଷଣେହରିବ ସର୍ବଗତ
କ୍ଷୀର-ସିନ୍ଧୁଜା-ପତି ପଦ୍ମଚରଣ ଚିନ୍ତି
ବିଷ୍ଣୁଦାସ ରଚିତ ଗୀତରେ
ମନ୍ଦାକିନି ! ।। ୩୪ ।।



# ରସ କଦମ୍ବ ଚଉତିଶା

(ଲୋକନାଥ ଧୀବର)

ରାଗ-ନଳିନୀଗୌଡ଼ା

କହନ୍ତି ରାଧିକା ଶୁଣ ଗୋ ଦୂତିକା ବନେ ଗଲି ନୀର ଆଣି
କଦମ୍ବ ମୂଳେ ମୁଁ କ ରୂପ ଦେଖିଲି କାଳିଆ ନିଭଙ୍ଗୀ ଠାଣି ଗୋ
ମିତ !
କଣ୍ଠ ସୁସ୍ବରେ ଗାବନ୍ତି ଗୀତ ଗୋ
କୁଞ୍ଜେ କୋକିଳ ଦେଖି ଚକିତ ଗୋ
ସେ ନଯ ଅଟନ୍ତି କାହାର ସୁତ ଗୋ ॥୧ ॥

ଖଣ୍ଡେ ଦୂରୁ ଦେଖି ଶତ୍ତ ମୋ ବଳିଲି ହୃଦେ ନ ରହିଲି ଦମ୍ଭ
ଖସି ପଡ଼ୁଥିଲା ଖଞ୍ଜାଇ ରଖିଲି କାଖରୁ ସଜଳ କୁମ୍ଭ ଗୋ
ସଖି !
ଖେଦ ଦେଉଛନ୍ତି ବରୁଣ ରଖି ଗୋ
କ୍ଷଣେ ଫିଟାଇ ନ ପାରୁ ଆଖି ଗୋ
ଖର ଗୃହାଣି ବାନ୍ଧଇ ଯୋଖି ଗୋ ॥ ୨ ॥

ଗମନ କରି ମୁଁ ଆସି ନ ପାରଇ ନ ଚଳଇ ବେନିପାଦ
ଗୋଡ଼କୁ ଅନାଇଁ ପ୍ରହରେ ରହିଲି ଶୁଣି ତା ମୁରଲୀ ନାଦ ଗୋ
ପୁଣ ।
ଗଲି ଶରଣ ତାହାକୁ ଆଣ ଗୋ
ଗଲା ପିଣ୍ଡରୁ ଗୁଡ଼ ପରାଣ ଗୋ
ଗତେ ମୁରଲୀ ବଜାନ୍ତି ପୁଣ ଗୋ ॥ ୩ ॥

ଘଟଣ ଶ୍ରୀମୁଖ ଦେଖିଲି ବେଳରୁ ଘୋଟିଛି ଅନଙ୍ଗତାପ
ଘୂରାଇ ମୋ ଅଙ୍ଗ ଘାରି ହେଉଅଛି ଘାଉ ଲଗିଲା ପରାପ ଗୋ
ମୋତେ ।
ଘୂମ ନିଦ୍ରା ନ ମାଡ଼େ କାହିଁତ ଗୋ
ଘୋଷା କରୁଛି କନ୍ଦର୍ପ ଯେତେ ଗୋ
ଘେନି ବୁଲିବ କୁଞ୍ଜ କୁଞ୍ଜାନ୍ତେ ଗୋ ॥ ୪ ॥

ନବଘନ ଅଙ୍ଗ ଅଧର ସୁରଙ୍ଗ ଶୋହୁଛି ପୀତବାସକୁ
ନୂଆ ମଦନ କ ନିଧିବ ନାଗର ଚହ୍ନି ନ ପାରିଲି ତାଙ୍କୁ ଗୋ

ସେଯେ ।
ବନ ତରୁଣୀଙ୍କ ଗଙ୍ଗ ଗଞ୍ଜେ ଗୋ
ନାହିଁ ଏମନ୍ତ ପ୍ରକାରେ ଦୁଯେ ଗୋ
ମାପ ମୂଳେ କରିଛନ୍ତି ଢଙ୍ଗେ ଗୋ ॥ ୫ ॥

ଚେତ୍ରଖ କରି ତାଙ୍କ ଚନ୍ଦନ ଚିତାକୁ ଅଳପ ଅନାଇଁ ଦେଲି
ଚିତ୍ତ ଚେତ୍ରର ଆଖି ହୃଦେ ଗଲା ଭୂଳି ଗୃହିଁବା ଛଟକେ ମଲି ଗୋ
ମୂହିଁ ।
ଚିତ୍ତ ତରଳିତ ଗଲା ହୋଇ ଗୋ
ଗୃଣ୍ଡେ ଆସି ଯାଇ ନ ପାରଇ ଗୋ
ଚଳ ନଣନ୍ଦ ହୋଇବା ପାଇଁ ଗୋ ॥ ୬ ॥

ଛିଡ଼ା ହୋଇଛନ୍ତି ତ୍ରିଭଙ୍ଗ ମୂରତି ଚିତା ନନ୍ଦଅଛି ଚନ୍ଦ୍ର
ଗ୍ଛର କ୍ଷିତିରେ କି ଜନମ ହୋଇଛି ସ୍ଵର୍ଗରୁ ଆସିଛି ଇନ୍ଦ୍ର ଗୋ
ତାର ।
ଗ୍ଛଇ ଦିଶୁଛି ମୋହ ଆଗର ଗୋ
ଛପି ରହିଛି ନୟନେ ମୋର ଗୋ
ଛୁଆ ସିଂହ ଠାଣି କି ସୁନ୍ଦର ଗୋ ॥ ୭ ॥

ଜଳୁଛି ଅଳକା ଜାଲ ପରେ କିଏ ଏହା ଜାଣୁଛି କି ଭୁହି
ଯୋଗୀଜନେ ଯାକୁ ଧ୍ୟାନ କରୁଛନ୍ତି ମାନବ ବୁହନ୍ତି ସେହି ଗୋ
ଭଲ ।
ଯୁବା ଯୁବତୀ ମନ ମୋହିଲା ଗୋ
ଜନ୍ମ କେଉଁ ନାରୀ ତାଙ୍କୁ ଦେଲା ଗୋ
ଜୀବ ପ୍ରାଣ ସେହୁ ହରି ନେଲା ଗୋ ॥ ୮ ॥

ଝଟକ ଦିଶୁଛି ଚୂଳରେ ଖୋସିଛି ମୋହନ ମୟୂର ପକ୍ଷୀ
ଝାମ ଗଲା ପ୍ରାୟ ମୋ ଦେହ ହେଉଛି ଝୁଣ୍ଟି ପଡ଼ୁଥିଲି ଦେଖି ଗୋ
ତାଙ୍କୁ ।
ଝୁରିମଲି ତା ବଂଶୀ ସ୍ଵନକୁ ଗୋ
ଝାଡିକାରେ ଆଣସି ତାହାଙ୍କୁ ଗୋ
ଝଳ ଗୋପୀଙ୍କ ଧ୍ୟାନ ଯାହାଙ୍କୁ ଗୋ ॥ ୯ ॥

ନୀଳେନ୍ଦୀବର ନୟନା ବାଣୀ ଶୁଣି ଦୂତୀ ବୋଲଇ ସଂପାତ
ନୀଳା କରିବାକୁ ବୈକୁଣ୍ଠ ଠାକୁର ମର୍ତ୍ତ୍ୟ ହୋଇଛନ୍ତି ଜାତ ସେ
ହରି ।
ନିତ୍ୟ ଧାମ ତେଜି ଅବତରି ସେ
ନାଶ କଲେ ପୂତନା ଅସୁରୀ ସେ
ନନ୍ଦରାଜା ସୁତ ଚକ୍ରଧାରୀ ସେ ।। ୧୦ ।।

ଠୋକା ଗୋଟି କୃଷ୍ଣ ଠେକା ପ୍ରାପ୍ତ କରି ଠେକି ଧଇଲେ ମନ୍ଦର
ଠସକରି ପଣେ ସୁରପତି ଗଲେ ଠାଣି ଗର୍ଜିଲେ ତାଙ୍କର ସେ
ନାଥ ।
ଠଙ୍କଧର ରିପୁରତି ଜାତ ସେ
ଠେକି ଚଢ଼ି ନନ୍ଦିଘୋଷ ରଥ ସେ
ଠିକେ ଯାହାଙ୍କ ଭଜନ୍ତି ପାର୍ଥ ସେ ।। ୧୧ ।।

ଠାକୁରପଣେ ଯେ ଜାତ ହୋଇ ଗୋପେ ଯାମଳାକୁ ବଧ କଲେ
ଠିକେ ଅପରାଧୀ ନାଥିଆ ବୋଲଇ ମୋହର ଗର୍ବ ଗଞ୍ଜିଲେ ସେ
ପ୍ରଭୁ ।
ଠିକେ ସଂସାର ରଚନା ସବୁ ସେ
ଠାକୁରଙ୍କ ସଙ୍ଗତରେ ଥିବୁ ସେ
ଠୁଳ ଭୟୁ ବିପଦ ନାଶିବୁ ସେ ।। ୧୨ ।।

ଡଗର ପଣେ ଦୂତିକା ବେଗେ ଯାଇଁ ଶ୍ରୀ ବୃନ୍ଦାବନେ ମିଳିଲେ
ଡାହୁକ କୋକିଳ ଧ୍ୱନି ସେ ବନରେ କାଳିଆ କାହ୍ନୁ ଭେଟିଲେ ସେ
ଦୂତୀ ।
ଡମ୍ବରୁ ଧର ଯାହାଙ୍କୁ ସେବନ୍ତି ସେ
ଡାକ କହିଲେ ଶ୍ରୀକୃଷ୍ଣ କତି ସେ
ଡହ ଡହ ହେମାଙ୍ଗୀର ଖ୍ୟାତି ସେ ।। ୧୩ ।।

ଢଳ ପଡ଼ୁଅଛି ଅଚେତନ ହୋଇ ମୋତେ ପଠାଇ କହୁଛି
ଢାଳେ ବଜେକର ନିରଶ ନକର ତୁମ୍ଭ ଯିବାକୁ ଗୁହାରୁଛି ସେ
ରାଧା !
ଢୋକି ପିଇବ ଅଧରୁ ସୁଧା ସେ
ଢାଙ୍କିଅଛି ତାକୁ କାମ ବାଧା ସେ
ଢାଳେ ତୁମ୍ଭଙ୍କୁ କରିଛି ଶ୍ରଦ୍ଧା ସେ ।। ୧୪ ।।

ଏମନ୍ତ ବାଣୀ ଦୂତିକା ତହୁଁ ଶୁଣି ବୋଲନ୍ତି ନନ୍ଦ କନ୍ଧାଇଁ
ଅଜାଙ୍କ କୁମାରୀ ଚନ୍ଦ୍ରସେଣା ନାରୀ ଆମ୍ଭର ଅଛନ୍ତି ମାଉଁ ଗୋ
ସେହି !
ଏତ ଦୂଷଣ କଥା ଅଛଇ ଗୋ
ଅସଧରେ ତ ସଧ ଅଛଇ ଗୋ
ଏହା ସଂସାରରେ ଶୁଣା ନାହିଁ ଗୋ ॥ ୧୫ ॥

ତେତେଣେ ଯେ କଣୋରୀ ଆତଙ୍କରେ ଘାରି ହୋଇ ଚିନ୍ତନ୍ତି ପାର୍ବତୀ
ତିଳ ତଣ୍ଡୁଳ ବେଲପତ୍ରୀ ଦେଇଣ ଈଶ୍ୱରଙ୍କୁ କଲେ ସ୍ତୁତି ସେ
ହର ।
ଥିଥି କଇଲାସେ ଭୂମ୍ଭ ଘର ହେ
ତନୁ ଭସ୍ମବୋଳା ଦିଗମ୍ବର ହେ
ଦାହି କର ଭବାନୀ ଶଙ୍କର ହେ ॥ ୧୬ ॥

ଥକା ହୋଇଥିଲି କୃଷ୍ଣବାଣୀ ଶୁଣି ଦୂତିକା ବୋଲଇ ଗୁଣି
ଥାପି ଦେଇ ସ୍ନେହ ଏ ଦୁଃଖ ସହିଲି କମା ସରଳା କାମିନୀ ସେ
ରାଧା ।
ଥିର ବୁଦ୍ଧି କପଟ ଶରଧା ସେ
ଥୁଲ ନିତମ୍ବିନୀ ସେହି ନନ୍ଦା ସେ
ଥୁଆ ଫଳ ହେଲି କାମ ଧନ୍ଦା ସେ ॥ ୧୭ ॥

ଦୂତିକା ବଚନ ଶୁଣି ବେଣୁପାଣି ଦଯ଼ାକରି ଆଜ୍ଞା ଦେଲେ
ଦିନ ଅବଶେଷେ ନଶିରେ ଆଣି ଦେବ କହି ବିକଳ ହୋଇଲେ ସେ
ବସି ।
ଦେଲେ ବହନ ତାହାଙ୍କୁ ପେଶି ସେ
ଦଣ୍ଡ ଗଣୁଥିଲେ ଶୁଭ୍ରକେଶୀ ସେ
ଦୂତୀ ମିଳି କହେ ହସି ହସି ସେ ॥ ୧୮ ॥

ଧ୍ରୁବ କରି ତୋତେ ନେବାକୁ କହିଛୁ ଚାଲ ସଖି ଯିବା ଏବେ
ଧୂଳି ଲଗି ଅଙ୍ଗ ଧୂସର ହୋଇଛୁ ସୁବେଶ ହୁଅ ଯା ଜବେ ଗୋ
ଏବେ ।
ଧାତକାରେ ନଗଲେ ରୁଷିବେ ଗୋ
ଧରି ହୃଦେ ହୃଦ ଲଗାଇବେ ଗୋ
ଧୀରେ ଧୀରେ ସରୁ ଚୁମ୍ବ ଦେବେ ଗୋ ॥ ୧୯ ॥

ନିତ୍ୟକର୍ମ ସାରି ସୁବେଶ ହୋଇଣ ଶିରେ କବରୀ ଖଞ୍ଜିଲେ
ନାନା ଅଲଙ୍କାରେ ମଣ୍ଡନ ହୋଇଲେ ସ୍ୱର୍ଗ କ ଋଷି ପାଡ଼ିଲେ ସେ

ବାମା ।
ନବତରୁଣୀ କୁଳ ଚନ୍ଦ୍ରମା ସେ
ନାରାୟଣ ମନୋହାରୀ ରମା ସେ
ନାହିଁ ନୋହିବ କେ ଏଣାଙ୍କ ସମା ସେ ।। ୨୦ ।।

ପୂର୍ବ ଦିଗ ଭାନୁ ପଶ୍ଚିମକୁ ଗଲେ ପ୍ରହରେ ହୋଇଲା ରାତି
ପଦ୍ମଲୋଚନୀ ମଞ୍ଜୁ ପିକ ବଚନୀ ପଚାରନ୍ତି ଶୁଣ ଦୂତି ଗୋ
ପିବା ।
ପାନ ଭାଙ୍ଗି ତାଙ୍କୁ ଭୁଞ୍ଜାଇବା ଗୋ
ପାହିଗଲେ ରାତି କି କରିବା ଗୋ
ପର ଦେଖିଲେ ଲାଜ ପାଇବା ଗୋ ।। ୨୧ ।।

ଫୁରୁଣା ହୋଇ ବେନି ସଖୀ ବାହାର ଚନ୍ଦ୍ରରାତି ଦେଖି ଭାଳ
ଫାଇଁ କୋପ କରି ବୃଷଭାନୁ ଜେମା ଚନ୍ଦ୍ରକୁ ଦିଅନ୍ତି ଗାଳିରେ
ଶଶି ।
ଫଟା କପାଳକୁ ମୋର ଆସି ରେ
ଫଉଲାଇଛୁ ତୋ ଶୋଭାରାଶିରେ
ଫନ୍ଦା ରଖ ମୋର ମେଘେ ପଶି ରେ ।। ୨୨ ।

ବିଧୁ ବଦନୀ ଆଜ୍ଞା ପାଇଁ ଚନ୍ଦ୍ରମା କଳା ମେଘରେ ରହିଲା
ବ୍ରହ୍ମାଣ୍ଡଯାକ ଆଲୁଅ କାହିଁ ଗଲା ନିବିଡ଼ ଅନ୍ଧାର ହେଲା ସେ
ବାଳୀ ।
ବଡ଼ ହରଷେ ପଥରେ ଚଳି ସେ
ବାଟ କଢ଼ାଏ ତାଙ୍କୁ ବିଜୁଳି ସେ
ବୃନ୍ଦାବନ ମଧ୍ୟେ ଯାଇ ମିଳି ସେ ।। ୨୩ ।।

ଭଗବାନ ଭେଟେ ବୃଷଭାନୁ ଜେମା ମନରେ ଆନନ୍ଦ ହୋଇ
ଭଜ ନ ପାରଇ ରାଧାକୃଷ୍ଣ ନାମ ଧୀବର ନାଥିଆ ବାଇ ଯେ
ପୁଣି ।
ଭେଟେ ହରଷେ ମୁରଲୀପାଣି ସେ
ଭୃଙ୍ଗ ଲଭିଲା ଯେସନେ ନଳିନୀ ସେ
ଭୋଗୀ ପାଇଲା କି ଅନ୍ନପାଣି ସେ ।। ୨୪ ।।

ମାଧବୀଲତା ଉହାଡ଼ ତଳେ ଦୂଷ୍ଟ ଅନ୍ତର ହୋଇ ରହିଲେ
ମର୍କତ ଚଉଁରା ଉପରେ ଶ୍ରୀକୃଷ୍ଣ ରାଧାଙ୍କୁ କୋଳେ ଧଇଲେ ସେ
ବେନି !
ମାନ ତେଜିଲେ ରମଣୀ ମଣି ସେ
ମନେ ହରଷ ମୃଗଲୋଚନୀ ସେ
ମଜ୍ଜିଗଲେ ଧେନି ଧେନାଧେନି ସେ ।। ୨୫ ।।

ଜଡ଼ାଜଡ଼ି ଠାଣି କହୁଛ ନୁହଇ ତମାଳ ବୃକ୍ଷେ କି ଲତା
ଜଳଧର କୋଳେ ଚପଳା ଖେଳିଲା ପରାୟେ ଦିଶେ ଶୋଭିତା ସେ
ଛବି ।
ଜମ୍ବାରତ୍ନମଣି ହେମ ଛବି ସେ
ଜମ୍ବୁ ନଦେ କି ତଦନ ଡ଼ୁବି ସେ
ଜମା କସ୍ତୁରୀ ହରିଦ୍ରା ଦ୍ରବ ସେ ।। ୨୬ ।।

ଲପନ ସୁଧା ଶ୍ୟାମଘନ ଚୁଖିଲେ ରାଧିକା ହୋଇ ପ୍ରବଳା
ରହି ଶ୍ୱେତ ପଦ୍ମ ମଧୁକର ଚୁମ୍ବି ମକରନ୍ଦ ପାନେ ଭୋଳା ସେ
ତହିଁ ।
ରାନ ଅର୍ଦ୍ଧ ପୂର୍ଣ୍ଣ ଅଛୁ ହୋଇ ସେ
ରସ ବିନୋଦ କଲେ ସେଠାଇଁ ସେ
ରବି ଚନ୍ଦ୍ର ଭେଟାଭେଟି ନାହିଁ ସେ ।। ୨୭ ।।

ଲପନେ ଲପନ ଭୁଜେ ଭିଡ଼ାଭିଡ଼ି ହୃଦେ ହୃଦ ଜଡ଼ିଲା
ଲକ୍ଷ୍ମୀ ନାରାୟଣ ରାସକ୍ରୀଡ଼ା ଦେଖି ରସ ବାରିଧି ବଳିଲା ସେ
ସୁଖ ।
ଲୋଟି ଲପନା ରମନା ଯୋଖି ସେ
ଲାଜେ ପଳାଇଲା କାମ ଦୁଃଖ ସେ
ଲତା କକୁଞ୍ଜ ଦେଖି ପୁଲକ ସେ ।। ୨୮ ।।

ବସନ ପହୁଡ଼ ସୁବେଶ ସଜାଡ଼ି ଶ୍ରୀବୃନ୍ଦାବନେ ଖେଳିଲେ
ବନମାଳୀ ବିଧୁମୁଖୀଙ୍କି ଦୂତିକା ପରିହାସରେ ଭାଷିଲେ ସେ
ଜାଣ !
ବଡ଼ ଅଟ ତ ତୁମ୍ଭେ ଦାରୁଣ ହେ
ବସିଅଛ ଗଣ୍ଡେ ସ୍ତନେ ଚିହ୍ନ ହେ
ବାଟରେ ଲଜ୍ଜାଅ ମଧୁସୂଦନ । ହେ ।। ୨୯

ସରୋଜବଦନୀ ଶିରେ କର ଦେଇ ଶ୍ରୀକୃଷ୍ଣ ଗୁମ୍ଫରେ ଭଣି
ଶାଶୁ ନଣନ୍ଦ ଗଞ୍ଜନ୍ତି ଯମୁନାକୁ ଯାଇଥିଲେ ନୀର ଆଣି ହେ
ବନ୍ଧୁ !
ସେ ଯେ ବାଛୁଥାନ୍ତି ରନ୍ଧ୍ର ରନ୍ଧ୍ର ହେ
ଶଏ ଠାହି ବାଳ ବାନ୍ଧି ବାନ୍ଧି ହେ
ସରେ ନାହିଁ ଦିନ କାନ୍ଦି କାନ୍ଦି ହେ ।। ୩୦ ।।

ସହଜେ ସେ ଧେନ ଆସି ନ ପାରଇ ଲୋକ ଲାଜକୁ ମରଇ
ସୁରଖ ରଖି ମୂରଲୀ ବାଉଥାଅ ଝୁରି ମରୁଥାଇ ମୁହିଁ ହେ
ହରି ।
ସଖା ସୋଦର ନାହିଁ ମୋହର ହେ
ସବୃନ୍ଦନେ ମୁଁ ଦାସୀ ତୁମ୍ଭର ହେ
ସ୍ୱଚ୍ଛେ ସୁଦୟା ଥିବଟି କରି ହେ ।। ୩୧ ।।

ସାରଙ୍ଗଧର ବୋଲନ୍ତି ସଖି ! ଆଗୋ ନ ଭଲ ହୃଦ କମଳେ
ସ୍ନାନ ବେଳରେ କାଲି ଭେଟ ହୋଇବ କେଳି କଦମ୍ବର ମୂଳେ ଗୋ
ଯାଅ ।
ଶଶିମୁଖି ! ତୁ ପ୍ରାଣ ମୁଁ ଦେହ ଗୋ
ସବଂନିଧି ତୁ ମୁଁ ରଙ୍କ ପ୍ରାପ୍ତ ଗୋ
ସିନା ତୋ ଧେନ ମର୍ତ୍ତ୍ୟେ ମୋ ଦେହ ଗୋ ।। ୩୨ ।।

ହଂସଗମନୀ ସଙ୍ଗେ ଧେନ ଦୂତୀଙ୍କି ଗୃହକୁ ଗମନ କଲେ
ହରି ବସ୍ତ୍ର ଧେନ ଗୋପାଳଙ୍କ ସଙ୍ଗେ ଗୋଷ୍ଠରେ ଯାଇଁ ରହିଲେ ସେ
ସ୍ୱାମୀ ।
ହରି ନପାରନ୍ତି ଧାନେ ଗମି ସେ
ହୃଦ କଥା ଜାଣେ ଅନ୍ତର୍ଯ୍ୟାମୀ ସେ
ହର୍ତ୍ତା କର୍ତ୍ତା ଏକା ମହାକାମୀ ସେ ।। ୩୩ ।।

କ୍ଷିତୀଶ୍ୱର ବ୍ରହ୍ମା ବ୍ରହ୍ମାଣ୍ଡ ଠାକୁର ନ ପାବନ୍ତି ଯାର ଭେଟ
କ୍ଷୀଣ ଲୋକନାଥ ଧୀବର ବୋଲଇ ନ ଦେଖି ପାଇଲି କଷ୍ଟ ମୁଁ
ପୁଣି ।
କ୍ଷୁଦ୍ରବୁଦ୍ଧି ଲେଖିଲି ନ ଜାଣି ମୁଁ
କ୍ଷୀର ସୁଧା ଭାଗବତ ବାଣୀ ମୁଁ
କ୍ଷମାନିଧି କ୍ଷମାକର ଶୁଣି ହେ ।। ୩୪ ।।



# ରାଧାକୃଷ୍ଣ ମିଳନ ଚଉତିଶା

କହେ ରାଧା ବିମ୍ବାଧରୀ, କରେ ଦୂତୀ କର ଧରି କଣୋଈ ଗୋ
ଆଣ ଆଣ ଯା କୁଞ୍ଜ ବିହାରୀ
ସଜନି ଗୋ ॥ ୧ ॥

ଖଣେ ବିଳମ୍ବ ନକର, ଖାଇବି ଗରଳ ସତ୍ୟ ମୋହର ଗୋ
ବେଗେ ଆଣ ଯା ନନ୍ଦ କୁମର
ସଜନି ଗୋ ॥ ୨ ॥

ଗଳାମାଳ ମୋର ନିଅ, ଗିରିବରଧାରୀ ଗଳାରେ ଦିଅ ଗୋ
ଶୁଚିଭେ ଘୁରକୁ ବିଜେ କରାଅ
ସଜନି ଗୋ ॥ ୩ ॥

ଘଡ଼ିଏ ନ ରହି ଚଲ । ଘନଶ୍ୟାମଙ୍କୁ ସେ କହିବ ମୋର ଗୋ
ତାଙ୍କୁ କୋଟି କୋଟି ନମସ୍କାର
ସଜନି ଗୋ ॥ ୪ ॥

ଆଶା ମୋ ନାହିଁ କାହିଁରେ । ଆସିବାକୁ ପଥ ଗ୍ରହିଁଛି ଧୀରେ ଗୋ
ହଠା ହେଲେ ହେବ ଜଗତରେ
ସଜନି ଗୋ ॥ ୫ ॥

ଚଉକୁ ମୁଁ ଦେଲି ବିକ, ଗୃକର କରି ରଖନ୍ତୁ ଏଣିକ ଗୋ
ଯାଇଁ କହଯା ବେଣୁ ପାଣିଙ୍କି
ସଜନି ଗୋ ॥ ୬ ॥

ଛଇଳା ରମଣୀ ବର, ଛାଡ଼ିଲେ ଛାଡ଼ିନ୍ତୁ ମୁଁ ତ ତାଙ୍କର ଗୋ
ନଷ୍ଟେ ପ୍ରାଣ ଗଲାଟି ମୋହର
ସଜନି ଗୋ ॥ ୭ ॥

ଜାଣି ମୁଁ ନଥିଲି ତାଙ୍କୁ, ଜଗନ୍ମୋହନିଆ ମନ୍ତ୍ରିଆଙ୍କୁ ଗୋ
ବହି ବହିଛି ପ୍ରାଣ ନେବାକୁ
ସଜନି ଗୋ ॥ ୮ ॥

ଝୁରି ଝୁରି କ୍ଷୀଣ ତନୁ, କିମିତେ ତା କଥା ନ ଯାଏ ମନୁ ଗୋ
ଶୁଣିବାରୁ ତା ମୋହନ ବେଣୁ
ସଜନି ଗୋ ।। ୯ ।।

ନିୟମ କରି କହୁଛି, ନ ରହିବ ଜୀବ ତାଙ୍କୁ ନ ଦେଖି ଗୋ
ମୁଁ ତ ନପାରେ ତାଙ୍କୁ ମୁରୁଛି
ସଜନି ଗୋ ।। ୧୦ ।।

ଟାଣି ଭାଙ୍ଗିଲା ମଦନ, ଟଳି ପଡ଼ିବାକୁ ଅଛି ଜୀବନ ଗୋ
ଜଳ ବିହୀନେ ବଞ୍ଚେ କି ମୀନ
ସଜନି ଗୋ ।। ୧୧ ।।

ଠାକୁର ନନ୍ଦ ଦୁଲାଳ, ଠାଠିକେ ସୁନ୍ଦର ମୟୂର ଚୂଳ ଗୋ
ଦେଖି ଶଚୀ ହେବେ ନିଶ୍ଚେ ଭୋଳ
ସଜନି ଗୋ ।। ୧୨ ।।

ଡୋଳେ ମୁଁ ଦେଖିଲି ଧନୁ, ଡଙ୍ଗର ନାସିକା ସେ ଫୁଲଧନୁ ଗୋ
ଖଣ୍ଡ ଖଣ୍ଡ କଲା ଧନୁ ଧନୁ
ସଜନି ଗୋ ।। ୧୩ ।।

ଢ଼ାଳେ ମୁଁ ହେଲି ନିରାଶା, ଢ଼ାଳେ ବନ୍ଧି କଲା ଉଦାସିବାସୀ ଗୋ
ତାହା ବିନୁ ନାହିଁ ମୋ ଭରସା
ସଜନି ଗୋ ।। ୧୪ ।।

ଅପବାଦ ହେଲେ ହେଉ, ଅଖିଳ କୃଷ୍ଣ ସଙ୍ଗେ ଧନଯାଉ ଗୋ
କଥା ଯୁଗେ ଯୁଗେ ରହିଥାଉ
ସଜନି ଗୋ ।। ୧୫ ।।

ତାହାଙ୍କୁ କହିବୁ ଦୂତ ! ତ୍ରୈଲୋକ୍ୟନାଥ ସେ କି ନଜାଣନ୍ତି ଗୋ
ନାରକେଳ ଫଳ ପରି ବୃତ୍ତି
ସଜନି ଗୋ ।। ୧୬ ।।

ଥୟ ହେଉ ନାହିଁ ମନ, ଥରେ ଦେହ ଶୁଣି ତା ବଂଶୀସ୍ୱନ ଗୋ
ସେ ଜାଣେ କାଉଁରୀ ମୋହନ
ସଜନି ଗୋ ।। ୧୭ ।।

ଢନେ ସେ ଯମୁନାକୂଳେ, ଦୁଇଭୁଜ ମୋର ଧଇଲେ ବଳେ ଗୋ
ମୋର ଅଧରରେ କରଦେଲେ
ସଜନି ଗୋ ॥ ୧୮ ॥

ଧର କର ଫିଙ୍ଗିଦେଲି, ଧର୍ମ ନ ସହିବ ବୋଲି ବୋଇଲି ଗୋ
ତାକୁ ଧିକ୍କାର ଯେତେ ମୁଁ କଲି
ସଜନି ଗୋ ॥ ୧୯ ॥

ନନ୍ଦ ନରପତି କନ୍ତି, ଗୋଚର ହୋଇଲେ କି ତୁମ୍ଭ ଠାଣି ହେ
ଶୁଣି ହୋଇଲେ ଯେତେ କାରୁଣ୍ୟ
ସଜନି ଗୋ ॥ ୨୦ ॥

ପଡ଼ିଲେ ମୋ ପଦ ତଳେ, ପାଦଧୂଳି ନେଇ ବୋଳିଲେ ଶିରେ ଗୋ
ଯେତେ ବିନୟ ହୋଇ କହିଲେ
ସଜନି ଗୋ ॥ ୨୧ ॥

ଫାନ୍ଦ କହିଲି ତାହାଙ୍କୁ, ଫଳ ଲୋଡ଼ୁଛ କି ଲୋଧ୍ରବୃକ୍ଷକୁ ହେ
ଆଜ କହିବି ତୁମ୍ଭ ମାତାଙ୍କୁ
ସଜନି ଗୋ ॥ ୨୨ ॥

ବୋଲେ ଶୁଣ ସହଚରି, ବୋଇଲି ବୋଲ ନ କଲୁ କିଶୋରି ଗୋ
ଏବେ କପାଁ ମରୁ ଝୁରି ଝୁରି
ସଜନି ଗୋ ॥ ୨୩ ॥

ଭାବବିନୋଦିଆ ହରି, ଭକତଙ୍କ ସଙ୍ଗେ ନିତ୍ୟବିହାରୀ ଗୋ
ଭାବ ନ ପାବନ୍ତି ବ୍ରହ୍ମରୁଦ୍ର
ସଜନି ଗୋ ॥ ୨୪ ॥

ମନରେ ଚୋର ବସ୍ତର, ମାଇଲେ ଗୋପରେ ଯେତେ ଅସୁର ଗୋ
ବ୍ରହ୍ମା ଇନ୍ଦ୍ର ଗର୍ବ କଲେ ଚୂର
ସଜନି ଗୋ ॥ ୨୫ ॥

ଯାବରଖ ଦେଇ ତାଙ୍କୁ, ଯାଅ ଯାଅ ସଖି ! କୁଞ୍ଜବନକୁ ଗୋ
ବରିଆଣ ଯା ପ୍ରାଣଧନକୁ
ସଜନି ଗୋ ॥ ୨୬ ॥

ରାଧାର ଏ ବାଣୀ ଶୁଣି, ରସରେ ଭାଷନ୍ତି ଦୂତୀକାମିନୀ ଟଗୋ
ବେଣଦ୍ୱନ୍ଦ୍ୱ ଯା ରମଣୀମଣି !
ସଜନ ଗୋ ॥ ୨୭ ॥

ଲାବଣ୍ୟନିଧିକ ନେଇ, ନିକୁଞ୍ଜେ ଚଳିଲେ ଦୂତିକାସହ ଗୋ
ଲକ୍ଷ୍ମୀପତିଙ୍କି ଭେଟିଲେ ଯାଇ
ସଜନ ଗୋ ॥ ୨୮ ॥

ବାଳାଗଳାମାଳ ନେଇ, ବନମାଳୀ କଣ୍ଠେ ଦୂତୀ ଲମ୍ବାଇ ଯେ
ରାଧା କହୁଛି ଜୁହାର ହୋଇ
ନାଗର ହେ ॥ ୨୯ ॥

ସଭୁରେ ଭଜନ କରବ, ସବୁ ଦୋଷ ତାର କ୍ଷମାକରିବ ହେ,
ସେତ ନ ଜାଣେ କସ କହିବ
ନାଗର ହେ ॥ ୩୦ ॥

ଶୁଣିଣ ଦୂତୀଭାରତୀ, ସ୍ନେହେ ଭଜେକଲେ ସେ ଲକ୍ଷ୍ମୀପତି ଯେ ॥
ରାଧାକୃଷ୍ଣଙ୍କୁ ଭେଟାଇ ଦୂତୀ
ସୁଜନେ ହେ ॥ ୩୧ ॥

ସରସ ହୃଦୟ ହୋଇ, ସରସେ ରାଧାଙ୍କୁ କୋଳେ ବସାଇ ଯେ
ରାଧାକୃଷ୍ଣଙ୍କ ମିଳନ ହୋଇ
ସୁଜନେ ହେ ॥ ୩୨ ॥

ହରିଣୀନେତ୍ରୀକ ଧରି, ହରଷେ ଚୁମ୍ବନ ଦେଲେ ମୁରାରି ଯେ
ନାନା ରସେ ପାହିଲା ଶର୍ବରୀ
ସୁଜନେ ହେ ॥ ୩୩ ॥

ଗୁଡିଲେ ରାଧାପଦଙ୍କ, ଗୁରୁ ସୁଦର୍ଶନ ପଞ୍ଚନାୟକ ହେ
ହରିଗଲ୍ପ ସେ ରସଦାୟକ
ସୁଜନେ ହେ ॥ ୩୪ ॥



# ଦୀନବନ୍ଧୁ ଚଉତିଶା

କରନ୍ତ ଭାଳେଣି ସର୍ବଗୋପାଙ୍ଗନା ମିଳି
କଂସ ଦୂତ ସଙ୍ଗତେ ବ୍ରଜପୁ ବନମାଳୀ
ଦୀନବନ୍ଧୁ ହେ !
କି ବୁଦ୍ଧି କରିବୁଁ
କଲେଣ ମଥୁରାବ୍ରଜେ ପ୍ରାଣ ବିସର୍ଜିବୁ ।। ୧ ।।

ଖାଇବାର ବିଷପ୍ରାୟେ ନ ରୁଚେ ସଦନ
ଖେଳାଇ ହସାଇ ଆମ୍ଭେ ବଞ୍ଚିଥିଲୁଁ ଧନ
ଦୀନବନ୍ଧୁ ହେ !
କ୍ଷଣେ ନ ବଞ୍ଚିବୁ
ଖଳଉପୁଜିଲାକଥା ଲଜ୍ଜା ରୁହାଇବୁ ।। ୨ ।।

ଗୁପତହୋଇ ଅଇଲ ଗୋପ ଭୁବନକୁ
ଗରଳ ଅମିପୁ ବୋଲି ଭୁଞ୍ଜାଇ ଆମ୍ଭଙ୍କୁ
ଦୀନବନ୍ଧୁ ହେ !
ଗଲାଟି ଜୀବନ
ଗିରିଧର ରଖିଅଛୁ ଏ ଗୋପଭୁବନ ।। ୩ ।।

ଘଟଥାପି ମାପମ୍ଭଲେ ଜଗିଥାଅ ବାଟ
ଘୋରକୁଞ୍ଜେ ବେଣୁବାଇ କରାଅ ଉଚ୍ଚାଟ
ଦୀନବନ୍ଧୁ ହେ !
ଘର ନ ମଣିଲୁଁ
ଘରବର ଦୁସ୍ତେଜି ତୁମ୍ଭରେ ମଜିଲୁଁ ।। ୪ ।।

ନର୍ମଳ ନୋହିବ ଆଜ୍ଞୁ ସୁହାଗୀ କାଳନ୍ଦୀ
ନାଚିଲ କାଳଆଣିରେ ପଦ୍ମପାଦ ଛନ୍ଦ
ଦୀନବନ୍ଧୁ ହେ !
ନ ଯାଇ ବିସୋରି
ନିକୁଞ୍ଜବନରେ ନେଇ ଯେତେ ପ୍ରୀତିକରି ।। ୫ ।।

ଚରଣଲାଗନ୍ତେ ଭଗ୍ନ ହୋଇଲା ଶକଟ
ଚୂର ଏ କଂସଡଗର କରିଛି ମୁରଟ

ଦୀନବନ୍ଧୁ ହେ !
ଚୂହୁଁ ଥିବ ତୁମ୍ଭେ
ଚୂପିବୁ ଅକ୍ରୂର ମୁଣ୍ଡ ଚୂଆଦଣ୍ଡେ ଆମ୍ଭେ ॥ ୬ ॥

ଛଇପ୍ରାୟେ ହୋଇ ସେବଥାଉଁ ଦିବାରାତି
ଛାଡ଼ିକ ଆମ୍ଭଙ୍କୁ ତୁମ୍ଭେ ଯିବ ଶୀଘ୍ରପତି
ଦୀନବନ୍ଧୁ ହେ !
ଛାଡ଼ ଏ ବସ୍ତିର
କ୍ଷମାଶୀଳ ପ୍ରଭୁ ହୋଇ କରୁଛ ନିଷ୍ଠୁର ॥ ୭ ॥

ଜୀବର ଜୀବନ ତୁମ୍ଭେ ଯଦୁକୁଳ ଚନ୍ଦ
ଜାଣିଲୁଁ ଗୋପିଙ୍କ ନଟେଁ ଲଗାଇଲ ଫାନ୍ଦ
ଦୀନବନ୍ଧୁ ହେ !
ଯିବ ମଧୁପୁର
ଯୋଇଜାଳ ମରିବୁଟି ତୁମ୍ଭର ଆଗର ॥ ୮ ॥

ଝୁରିଣ ମରିବୁ ମୁଖ ନ ଚାହିଁ ଝିମିଣ୍ଟେ
ଝସାଇ କେମନ୍ତେ ତୁମ୍ଭେ ବସିଲନ ରଥେ
ଦୀନବନ୍ଧୁ ହେ !
ଝମଣ୍ଟେକେ ରହ
ଝାସିବୁଁ କାଳନ୍ଦୀ-ଜଳେ ଦେଖିକରି ଯାଅ ॥ ୯ ॥

ଞକୁଞ୍ଜଭୁବନେ ନେଇ କୁଞ୍ଜଲତା ତଳେ
ଞସ୍ଥନସଙ୍ଗେକେ ଯାହା ଠାରିଛ ସୁସରେ
ଦୀନବନ୍ଧୁ ହେ !
(ନେଇ) ବସାଇ ଲତାରେ
ଞର୍ମିଳଅଧରୁ ଅମିୟଧାର ଝରେ ॥ ୧୦ ॥

ଟସ୍କରହୋଇ ଅଇଲ ଗୋପଭୁବନକୁ
ଟାଣପଣ କରୁଅଛ ଯିବାରବେଳକୁ
ଦୀନବନ୍ଧୁ ହେ !
ଟାଣ ଯେ ନକର
ଟେକନ୍ତୁଁ ସ୍ତନରେ ଦିନେ ସେକଥା ଚିନ୍ତୁଅ ॥୧୧॥

ଠକିଲ ଆମ୍ଭଙ୍କୁ ତୁମ୍ଭେ ଦେଇ ପ୍ରୀତିଭାବ
ଠାବ ଭଲପାଇ ଏବେ ମଧୁପୁର ଯିବ

ଘନବନ୍ଧୁ ହେ !
ଠକଲ ଆମ୍ଭଙ୍କୁ
ଠିକେ ଅରକ୍ଷିତକୃଷ୍ଣ ଭଜଇ ତୁମ୍ଭଙ୍କୁ ॥ ୧୨ ॥

ଡରୁଥାଉଁ ଆମ୍ଭେ ତୁମ୍ଭେ ଗଲେ ବୃନ୍ଦାବନ
ଢେରିଥାଉଁ ଶ୍ରବଣ ନ ଶୁଣି ବେଣୁ ସ୍ୱନ
ଘନବନ୍ଧୁ ହେ !
ଡକାଡ କରୁଛ
ଡାଳରେ ବସାଇ ମୂଳ କାଟୁଛ କାହ୍ନୁଛ ॥ ୧୩ ॥

ଡାଳିଥାଅ ଚନ୍ଦନଗୋଟି ଚତା ସଲକ୍ଷକୁ
ଢାଳ ଗୃହିଁବାରଭାବେ କଣିଛ ଆମ୍ଭଙ୍କୁ
ଘନବନ୍ଧୁ ହେ !
ଢାଳ ଗୃହିଁବାର
ଢାଳେଫୁଟି ରହିଅଛି ମରମେ ଆମ୍ଭର ॥ ୧୪ ॥

ଅଶେଷ ମହିମା ତୁମ୍ଭ ତୁମ୍ଭେ ସିନା ଜାଣ
ଅଣିଲେହୁ ପୁତନାର ଶୋଷିଲ ପରାଣ
ଘନବନ୍ଧୁ ହେ !
ଅନ୍ତଶୋକ ନୋହୁ
ଅକ୍ରୂର ଲେଉଟି ପଛେ ଗୋପପୁର ଯାଉ ॥ ୧୫ ॥

ତ୍ରିଲୋଚନ-ରିପୁ-ଶର ଦହଇ ଆମ୍ଭଙ୍କୁ
ତୁମ୍ଭେ ବିଜେ କରୁଅଛ ମଧୁଭୁବନକୁ
ଘନବନ୍ଧୁ ହେ !
ତନୁ ଏ ତୁମ୍ଭର
ତାହିକର ତୁମ୍ଭେବାରେ ଯଶୋଦା କୁମର ॥ ୧୬ ॥

ଥବିରନୋହିବ ମନ ହେଲେହେଁ ଅଦ୍ଭୁତ
ଥୟେଥିତ ନକରିତ ହଉଛି ବିଶ୍ୱାସ
ଘନବନ୍ଧୁ ହେ !
ଥିରନୋହେ ମନ
ଥିରପାଶେ ବାନ୍ଧନେଲେ ଗୋପୀଙ୍କ ଜୀବନ ॥ ୧୭ ॥

ଦିନକୁଦିନ ଦୁର୍ଲ୍ଲଭ ତୁମ୍ଭ ଦରଶନ
ଦେହିଯାକ କର୍ପା ଆମ୍ଭ ନୋହିଲ ଲୋଚନ

ଦୀନବନ୍ଧୁ ହେ !
ଦେଖନ୍ତୁ ତୁମ୍ଭଙ୍କୁ
ଦେଖି ଦେଖି ଅଭ୍ରବତ କରୁଛ ଆମ୍ଭଙ୍କୁ ॥ ୧୮ ॥

ଧରିଣ ଚିବୁକକରେ ଦେଇଣ ଚୁମ୍ବନ
ଧୀରେଣ କବରୀବାନ୍ଧ କରଆଲିଙ୍ଗନ
ଦୀନବନ୍ଧୁ ହେ !
ଧରିଅଛୁ ଛାହି
ଧ୍ରୁବକରି ବୋଲିଛ ଗୋପୀଙ୍କି ଆମ୍ଭେ ସାହୀ ॥ ୧୯ ॥

ନୟନରେ ଦେଖଁ ଦେଖୁଁ କର ଭିନ୍ନ ଭିନ୍ନ
ନୁହଇ ସ୍ୱଅର୍ଥ ନଷ୍ଟେ ସୁଜନବଚନ
ଦୀନବନ୍ଧୁ ହେ !
ନୀର ଧରିକରେ
ନିୟମ ଯେ କରିଅଛୁ ଯମୁନାର ତୀରେ ॥ ୨୦ ॥

ପାରିବୁଟେ ନିୟମତ ସ୍ୱଜପେ ମଥୁରା
ପିଇବୁ ନୀରସଙ୍ଗତେ ଗୋଳଣ ମଧୁରା
ଦୀନବନ୍ଧୁ ହେ !
ପୀରତି ଏମନ୍ତ
ପୋଡ଼ୁ ଏ ସ୍ତ୍ରିଙ୍କ ସଂସାରେ କପାଁ ହେଲୁ ଜାତ ॥ ୨୧ ॥

ଫାଇପାଶ ଲଗାଇଣ ହୋଇଲୁ ଫୁରୁଣି
ଫାଟିଯାଉଅଛି ହୃଦ ଦେଖି ଅକରୁଣା
ଦୀନବନ୍ଧୁ ହେ !
ଫମନୋହେ ମନ
ଫେଡ଼ିକରି ନ କହତ ନଯିବା ବଚନ ॥ ୨୨ ॥

ବିଶ୍ୱମ୍ଭର ଦାମୋଦର ବୋଲିଛ ବଚନ
ବିମ୍ବାଧରୀ ଗୋପନାରୀ ଅଟେ ମୋ ଜୀବନ
ଦୀନବନ୍ଧୁ ହେ !
ବୋଲ କି ସ୍ୱଅର୍ଥ
ବୋଇଲେ ଅକ୍ରୂର ଏବେ ବାହ୍ନିନେଉ ପଥ ॥ ୨୩ ॥

ଭାବ ପ୍ରୀତିରସେ ତୁମ୍ଭେ ଆମ୍ଭଙ୍କୁ କିଣିଲ
ଭାଇ ବନ୍ଧୁ ଜାତିଜାତି ସବୁ ଛଡ଼ାଇଲ

ଦୀନବନ୍ଧୁ ହେ !
ଭାବ ପୂରିଅଛୁ
ଭଜେ କୃଷ୍ଣ ଅରକ୍ଷିତ ନପାରୁଁ ମୁ ଚୁପିଛୁ ।। ୨୪ ।।

ମଥୁରାଯାତ୍ରା ଦେଖିବୁ ମାମୁଙ୍କର ଆଗ୍ୟାଂ
ମହାରାଜା କଂସବୋଲ କେକରୁ ଅବଗ୍ୟାଂ
ଗୋପୀମାନେ ଗୋ !
ମନଥିରେ ଥିବ
ମଥୁରାପାଇଁ ଅଇଲେ ଆମ୍ଭଙ୍କୁ ଦେଖିବ ।। ୨୫ ।।

ଯୁବତୀରତନ ସେଯେ ମଧୁପୁର ବାଳୀ
ଜୀବପରମକୁ ଧେନ କରୁଥାନ୍ତି କେଳି
ଦୀନବନ୍ଧୁ ହେ !
ଯୋଗରେ ରହିଲେ
ଜଣାଇଲେ ଆମ୍ଭକଥା ନ ଶୁଣିବ ଭଲେ ।। ୨୬ ।।

ରସିକ ସେ ରସକୁ ରସନ୍ତ ପ୍ରାଣସଖି
ରଖିବକ ବ୍ୟାଧଧର ଉଡ଼ନ୍ତା ପକ୍ଷୀକି
ଗୋପୀମାନେ ଗୋ !
ରସାଇଛ ମନ
ରହଦବା ତୁମ୍ଭକଥା ଆମ୍ଭଙ୍କୁ କୀର୍ତ୍ତନ ।। ୨୭ ।।

ଲକ୍ଷ୍ୟ କରିଥିବାଯାକ ନୟନରେ ଥିବ
ଲକ୍ଷ୍ୟ ତୁଟିଗଲେ ଭାବ ଅଦୃଶ ହୋଇବ
ଗୋପୀମାନେ ଗୋ !
ଲେଖିଥିବ ଧନ
ଲେଉଟିତ ବାରେକ କରିବ ଦରଶନ ।। ୨. ।।

ବାସଥିଲା ପୁଷ୍ପକୁ ସେ ଭ୍ରମର ଚୁମ୍ବଇ
ବାସନେଲା ପୁଷ୍ପକୁ ଲେଉଟି ନଆସଇ
ଦୀନବନ୍ଧୁ ହେ !
ବୁଝିବ ସେଠାରେ
ବନ୍ଦୀକରି ରଖିଥିବେ କଟାକ୍ଷଯୁଗରେ ।। ୨୯ ।।

ଶଶଲାଞ୍ଛନ ଲଗିବ ଦେଖି ତୋ ଶ୍ରୀମୁଖ
ସେ ସ୍ତ୍ରୀ ଶ୍ରୀ ପାଇବେ ପଦ୍ମପାଦ ପ୍ରୀତିସୁଖ

ଦୀନବନ୍ଧୁ ହେ !
ସେ ସୁଖ ଲଭିଲେ
ଶିବକୁ ଗରଳ ପ୍ରାୟେ ଜଡ଼ିଥିବ ଗଳେ ।। ୩୦ ।।

ଶୁଣ ପ୍ରିୟେ ପ୍ରାଣସଖି ପ୍ରାଣର ରମଣୀ
ଶାନ୍ତ ହୁଅ ଗତାଗତ ଯେସନେ ସାରେଣୀ
ଗୋପୀମାନେ ଗୋ !
ସାକ୍ଷୀ ମାନ କର
ସେହିମତ ମଧୁ କଥା ହୃଦରେ ବିଚାର ।। ୩୧ ।।

ଶ୍ରୀପ୍ରାପତ ମଥୁରାନାଥଙ୍କ ପତି ହେଲ
ଝୁଣ୍ଟି କରି କହୁଅଛୁଁ ଆମ୍ଭଙ୍କୁ ଛାଡ଼ିଲ
ଦୀନବନ୍ଧୁ ହେ !
ସରଳ ସମ୍ପତ୍ତି
ସୁଖ ଏଡ଼ି ଶର କରି ରଖିଲ ବିପତ୍ତି ।। ୩୨ ।।

ହରିଣନୟନା ଗୋପାଙ୍ଗନାମାନେ ଶୁଣ
ହେଲେହେଁ ମଥୁରା ଭୂମିଠାରେ ଥିବ ପ୍ରାଣ
ଗୋପୀମାନେ ଗୋ !
ହୃଦୟ ଆମ୍ଭର
ହରାଇଲେ ଭୂମିଠାରୁ ନୋହୁଛି ବାହାର ।। ୩୩ ।।

କ୍ଷମାଜଳନିଧି ଗୋପୀ କରାଇ ପ୍ରସନ୍ନ
ଛଳଛନ୍ଦେ ଅକ୍ରୂର ସଙ୍ଗେ ମଥୁରା ଗମନ
ଗୋପୀନାଥ ହେ !
କ୍ଷୋଭ ଛାଡ଼ ମନ
କ୍ଷୁଦ୍ରମତ କୃଷ୍ଣ ଅରକ୍ଷିତ ପାଦେ ଧ୍ୟାନ ।। ୩୪ ।।



# ପ୍ରୀତି ଚିନ୍ତାମଣି ଚଉତିଶା

କୁଳାଭିମାନକୁଁ    ଦୂର କର ସହି !
କଳଙ୍କ ଭରିଛି ତୁଣ୍ଡେ ଗୋ
କୃଷ୍ଣ ବିଟପ-    ପ୍ରେମ ପ୍ରୀତିପସରା
ବହୁଛି ମୁଁ କନ୍ଧେ ମୁଣ୍ଡେ ଗୋ
କଥା ରହୁଥାଉ ବୋଲି
କଳା କାହ୍ନୁଙ୍କୁ ଶଙ୍ଖାଳି କଲି ଗୋ ।। ୧ ।।

ଖଳ ଦୁରୁଜନ    ଛଳ ଝାହୁଲିଙ୍କ
ଗିରକୁ ଶିର ଆଡ଼ିଛି ଗୋ !
ଖେଦବୀଜ ନିଜ-    ହୃଦ କେଦାରେ ମୁଁ
ଜାଣି ଜାଣି ତ ବୁଣିଛି ଗୋ !
ଖଟିବାକୁ କୃଷ୍ଣ ପାଦେ
ଖରା ତରା ତ ମୋତେ ନ ବାଧେ ଗୋ ।। ୨ ।।

ଗୋଇଠା ମାରି    ପ୍ରତିଷ୍ଠାକୁ ଗୁଡ଼ିଛି
ଶ୍ୟାମ ଅଇଁଠା ଲାଳସେ ଗୋ
ଜ୍ଞାନ କର୍ମ କାମ    ଦେଉଛି ମୁଁ ଦାନ
ଶ୍ୟାମବନ୍ଧୁ ପ୍ରୀତି ଆଶେ ଗୋ
ଗଲେ ଜୀବ ଯିବ ସିନା
ଗଣ୍ଠି ଧନ ମୋ କାଳିଆ ସୁନା ଗୋ ।। ୩ ।।

ଘନ ସୁନ୍ଦରଙ୍କୁ    ମନ ବିକି ଦେଲି
ବନ କୁସୁମ ତୋଳାରେ ଗୋ
ଘଣ୍ଟି ଘାଗୁଡ଼ିଆ    ବାଙ୍କ ଚୂଳିଆଙ୍କୁ
ହାର କରିଛି ଗଳାରେ ଗୋ
ଘରୁ ହୋଇଛି ବାହାର
ଘେନ କୃଷ୍ଣ ନାମାବଳୀ ହାର ଗୋ ।। ୪ ।।

ଉମା ଶଙ୍କରଙ୍କୁ    ସେବାରେ ମନାଇ
ପାଇଛି ଏମନ୍ତ ଦୀକ୍ଷା ଗୋ !

ଉଦାସୀନୀ ହୋଇ        କାଳ ବଞ୍ଚୁଥିବି
କୃଷ୍ଣ ନାମେ ମାଗି ଭିକ୍ଷା ଗୋ
ଉଡ଼ୁ ପଛେ ନିନ୍ଦା ବାନା
ଊଣା କଥାକୁ ନାହିଁ ଶୋଚନା ଗୋ ॥ ୫ ॥

ଚନ୍ଦନପାଟିଆ        କନ୍ଦର୍ପ ମୋହନ
ନାଚୁଥାନ୍ତୁ ମୋ ନୟନେ ଗୋ
ଚିନ୍ତାମଣି ମୋର        ଚିତ୍ତର ଭିତରେ
ରହିଥାନ୍ତୁ ଅନୁକ୍ଷଣେ ଗୋ
ଚଉଦ ଭୁବନ ଭୁଲି
ଚେଳାଞ୍ଚଳ ନିଧି ମୋର ହେଲି ଗୋ ॥ ୬ ॥

ଛନ୍ଦାଚରଣଙ୍କୁ        ଫନ୍ଦୀ ମୁଁ କରିଛି
ବନ୍ଦାଇଣ କରମାଳୀ ଗୋ !
ଛଇଳ ନାଗର        ଛବି ନଟବର-
ମୂରତି ମୋର ସଙ୍ଖାଳି ଗୋ
ଛୁଡ଼ିଛି ସକଳ ଆଶା
ଛିନ୍ନକାଶିଙ୍କି କରି ଭରସା ଗୋ ॥ ୭ ॥

ଜନ ଅପବାଦେ        ଜଳାଞ୍ଜଳି ଦେଲି
ଜପିବାକୁ କୃଷ୍ଣ ନାମ ଗୋ
ଜଗତଯାକରେ        ନିନ୍ଦା ଢୋଲ ବାଜୁ
ସମସ୍ତେ ହୁଅନ୍ତୁ ବାମ ଗୋ
ଜାଣିଥାଅ ମୋ ସଜନ
ଜୀବ ଯିବ କୃଷ୍ଣ ଗୁଣ ଗୁଣି ଗୋ ॥ ୮ ॥

ଝରୁ ଥାଉ ମୋର        ନୟନରୁ ନୀର
ସେହି କୃଷ୍ଣ କଥା ଝଳି ଗୋ
ଝାଇଁମରି ହୋଇ        ତଳ ପଡ଼ୁଥିବ
ଧରି କୃଷ୍ଣ ଜପାମାଳି ଗୋ
ଝୁରୁଥିବ କଳା ତନୁ
ଝାଡ଼ିବୁଲି ନ ଯାନ୍ତୁ ମୋ ମନୁ ଗୋ ॥ ୯ ॥

# ଚଉତିଶା ସଞ୍ଚୟନ

ନୟ୍ନମ କରିଛୁ ନିଜ ଦେହେ ମୋର
    ନାହିଁ କଛୁ ଅଧିକାର ଗୋ
ନୀଳ ନଳିନ ଶ୍ରୀ- କରଯୁଗ ପାଶେ
    ରାଧା ବନ୍ଧା ନିରନ୍ତର ଗୋ
    ନ ରୁଚଇ ମୋତେ ଆନ
ନ ଦିଶଇ କେ ତାଙ୍କ ସମାନ ଗୋ ।। ୧୦ ।।

ଟଳ ପଡ଼୍ ଦେହ ସେ ଶ୍ୟାମ ବିଗ୍ରହ
    ସୁନ୍ଦରଙ୍କୁ କୋଳ କରି ଗୋ
ଟହ ଟହ ମନ୍ଦ ମଧୁର ହାସଟି
    ଦେଖି ଥିବ ନେତ୍ର ଭରି ଗୋ
    ଟେକ ଶ୍ରୀମୁଖ ମାଧୁରୀ
ଟାଣପଣ ମୋ ମୁରଲୀଧାରୀ ଗୋ ।। ୧୧ ।।

ଠଣ ପଙ୍କଜ ଚରଣ ଯୁଗେ ମନ-
    ଧନକୁ ଦେଇଛୁ ବନ୍ଧା ଗୋ
ଠାଣି ନିଭଙ୍ଗିଆ ସେ ସନ ରଙ୍ଗିଆ
    ଲାଗି ସହେ ଏତେ ଧନ୍ଦା ଗୋ
    ଠାକୁର ମୋହର ସେହି
ଠିକେ ବୈଷ୍ଣବ ଦାସ କହଇ ଗୋ ।।୧୨ ।।

ଡ଼ର ଲାଜ ଘୃଣା ଫିଙ୍ଗିଚି ଦୂରକୁ
    ଆଉ କାହାକୁ ମୋ ଭୟ ଗୋ
ଡେଙ୍ଗୁରା ଏ ଗୋପେ ବାଜୁ ଥାଉ ଛନ୍ଦେ
    ନେଲି କାଳିଆ ଆଶ୍ରୟ ଗୋ
    ଡୋଳା ପ୍ରତିମା ମୋ ସେହି
ଡାକ କହୁଛୁ ତୁଣ୍ଡ ବଜାଇ ଗୋ ।। ୧୩ ।।

ଢଳଗଲେ ନୀର ଯାଏ କିନା ବହି
    ସେ କି ଆସଇ ଲେଉଟି ଗୋ
ଢଗ ଢମାଳରେ ଅସହଣୀମାନେ
    ହସନ୍ତୁ ତାଳି ଦେଇଟି ଗୋ
    ଢଙ୍ଗ ଗୃଢୁଣି କି ଥୋଇ
ଢାଳଛୁ ମୁଁ ମନ ତାଙ୍କ ଠହିଁ ଗୋ ।। ୧୪ ।।

ଅରୁଣ କୁଞ୍ଜରେ ତରୁଣୀ ରଙ୍ଗାକୁ
କରୁଥିବ ଆଲିଙ୍ଗନ ଗୋ
ସରୁ ଅଞ୍ଜନିଆ କରୁଣାନିଧି ମୋ
ତରୁମୂଳିଆ ମୋହନ ଗୋ
ଧରୁଚି କେତେ କା ପାଣି
ଗରୁ ଅପବାଦକୁ ନଶୁଣି ଗୋ ॥ ୧୫ ॥

ତଡ଼ ଦେଲେ ଦେବେ ପଛକେ ଜାତକୁ
ତହିଁକି ନାହିଁ ମୋ ଦୁଃଖ ଗୋ !
ତଗରମାଳିଆ ତନୁ ଶ୍ୟାମଳିଆ
ତିଳେ ନୋହିବେ ବିମୁଖ ଗୋ
ତରଳତର ନୟନେ ।
ତାଙ୍କୁ ଦେଖୁଥିବି ଅନୁକ୍ଷଣେ ଗୋ ॥ ୧୬ ।

ଥରେ ଥରେ ଡରି ପହଣ୍ଡି ଗୁଳାଇ
ବହିରଙ୍ଗ ମେଳି ଥାଇ ଗୋ
ଥପୁରେ ଥାପିଛି ସେହି ମୂରତିକି
ହୃଦ-ମନ୍ଦିରେ ପୂରାଇ ଗୋ!
ଥିବାଯାଏ ପିଣ୍ଡେ ପ୍ରାଣ
ଥାଳ ମୋର ଶ୍ରୀ ନନ୍ଦ ନନ୍ଦନ ଗୋ ॥ ୧୭ ॥

ଦରଶେବା ପାନ- ଅଧରାମୃତକୁ
ଦୟାଳୁ ସାମନ୍ତ ମୋର ଗୋ
ଦେବେ କେବେ ଯାଚି ଦରଶନ କାଳେ
ଦର ହସିଆ ସୁନ୍ଦର ଗୋ
ଦୁଃଖିଙ୍କ ଦୁଃଖପାସୋରା
ଦୀନବନ୍ଧୁ ମୋର ଦିନସରା ଗୋ ॥ ୧୮ ॥

ଧନ ମୋର ସେହି ଜନ ମୋର ସେହି
ଧରା ମଧ୍ୟ ରେଷ୍ଟି ପରା ଗୋ
ଧବଳୀ ଶ୍ୟାମଳୀ- ଧେନୁପଛୁଆ ମୋ
ଧଇର୍ଯ୍ୟ ବିବେକ ହରା ଗୋ
ଧୀର ଲଳିତ ମୂରତି !
ଧ୍ୟାନ ଦେବତା ମୋ ନୀଳ ହାଣ୍ଠି ଗୋ ॥ ୧୯ ॥

ନଣ୍ଡ ଘାଟଜଗା ସେ ହୃନ୍ଦରଳଗା
ନଗ୍ନାନ ନାନ୍ଦୁଆମଣି ଗୋ
ନବ ନାଗରଙ୍କ ଚିତ୍ତ ବିନୋଦିଆ
ନିଧୁବନ ଜଣାମଣି ଗୋ
ନିକୁଞ୍ଜ କିଶୋର ବର
ନିତ୍ୟ ନୂତନ ରୂପ ମୋ ସାର ଗୋ ॥ ୨୦ ॥

ପଦ୍ମ ପାଦ ଧୂଳି ହେଉଥିବ ବୋଲି
ପାର୍ଶ ଅଙ୍ଗରେ ମୋହର ଗୋ
ପରମ ପଦାର୍ଥ ସେ ସିନା ସଜନି
ପାଇବ ତାହା କି କରି ଗୋ
ପ୍ରୀତି ଚିନ୍ତାମଣିଙ୍କର
ପ୍ରିୟା ପଦକୁ ମୁଁ ଅସୁନ୍ଦର ଗୋ ॥ ୨୧ ॥

ଫେରନ୍ତୁ ହୃଦରୁ ଫିଙ୍ଗି ଦେଇଥିବା
ଛଡ଼ା ବାସ ଫୁଲ ହାର ଗୋ
ଫୁଲଣା ମନେ ତା ଯତନେ ଗୋଟାଇ
ଗଳାରେ ଖଞ୍ଜିବି ମୋର ଗୋ
ଫୁଲି ଉଠିବ ମୋ ଚିତ୍ତ
ଫୁଟା କଞ୍ଜ ଶିରୀ ପ୍ରେମେ ମାତ୍ତ ଗୋ ॥ ୨୨ ॥

ବକୁଳ ମାଳତୀ ଫୁଲେ ମାଳ ଗୁନ୍ଥି
କ୍ଷୀର ଚନ୍ଦନେ ମିଶାଇ ଗୋ
ବନ୍ଧୁଙ୍କ ଗଳାରେ ଉପହାର ଦେବି
ବିବାକେ ମୁଁ ବକ ହୋଇ ଗୋ
ବୋଲି କରିଚି ଭରସା
ବଂଶୀ ମୋହନ ଫେଡ଼ିବେ ଦଶା ଗୋ ॥ ୨୩ ॥

ଭିଗାରି କେ ହେଉ- ପଛେ ଏଥି ପାଇଁ
ଭାବନା ନାହିଁ ମୋ ତଳେ ଗୋ
ଭୁଲିତ ଯାଇଚି ଭାବ ବିନୋଦଙ୍କୁ
ଭଜନେ ହୋଇବେ କି ଭଲେ ଗୋ
ଭାଲ ତିଲକ ସେ ମୋର
ଭଣେ ବଇଷ୍ଣବ ଦାସ ଗୁରୁ ଗୋ ॥ ୨୪ ॥

ମନର ବେଦନା        ମଦନକଲି ଚୂନା
ମରକତ କାନ୍ତି ଲାଗି ଗୋ
ମଧୁର ମୁରଲୀ-        ମୋହିନୀ ମନ୍ତ୍ରରେ
ମୁଁ ତ ହେଲି ଅନୁରାଗୀ ଗୋ
ମନେ ରଖିଥା ମିତଣି
ମଥାମଣି ମୋର ବେଣୁପାଣି ।। ୨୫ ।।

ଯଶୋଦାରାଣୀଙ୍କ        ନୟନ ପିତୁଳି
ଯମୁନା-କୂଳିଆ ଶ୍ୟାମେ ଗୋ
ଯାଚି ହୋଇ ନିଜେ        ପ୍ରାଣ ସମର୍ପିଣ
କୃଷ୍ଣ କଳଙ୍କିନୀ ନାମେ ଗୋ
ଯତି-ମତି-ଭୁଲି ପ୍ରୀତି
ଯିବ କି ମୋ ମନୁ ପ୍ରିୟ ଦୂତି ଗୋ ।। ୨୬ ।।

ରଙ୍ଗ ଅଧରଙ୍କ        ଅଙ୍ଗ ସଙ୍ଗ ପାଇଁ
ରଙ୍କ ମୋ ଅବୋଧ ଚିତ୍ତ ଗୋ
ରସାଣି କାଳିଆ        ସୁନା ସୁ-ନାଗର
ମୋହର ସର୍ବସ୍ୱ ଚିତ୍ତ ଗୋ
ରକ୍ଷା ନାହିଁ ତାଙ୍କ ବିନୁ
ରସିଚି ମୁଁ ରଙ୍କପୂଜା ଦନୁ ଗୋ ।। ୨୭ ।।

ଲଜ୍ଜା ଧର୍ମ ଏଡ଼ି        ଲଭିଚି ତାହାଙ୍କୁ
ଲୋକାଗ୍ରର କରି ତ୍ୟାଗ ଗୋ
ଲେଖି ଚିତ୍ର ପଟେ        ରଖିଚି ନିକଟେ
ଲୋଡେ ବଳାଇ ସରାଗ ଗୋ
ଲକ୍ଷଣବନ୍ତ ପୁରୁଷ
ଲୁଟି କରନ୍ତନ୍ତି ମୋ ମାନସ ଗୋ ।। ୨୮ ।।

ବରଜ ବଜାରେ        ହଜାର ହଜାରେ
ବାଜୁ ଅଛନ୍ତି ବାଜଣା ଗୋ
ବନମାଳିଆ ମୋ        ଧନ ମାଳି ବୋଲି
ସମସ୍ତଙ୍କୁ ହେଉ ଜଣା ଗୋ
ବସୁ ଅପନନ୍ଦା ହାଠ
ବନ୍ଧୁ ଜୀବନର ନନ୍ଦ ଗୃଠ ଗୋ ।। ୨୯ ।।

ଶରଣ ମୁଁ ତାଙ୍କ ଚରଣ ତଳରେ
କାରଣ କାର ନ ମାନ ଗୋ
ଶୁଭ ଅଶୁଭ ତ କିଛି ନ ଗଣଇଁ
ଭଲ ମନ୍ଦ ଲଭ ହାନ ଗୋ
ଶ୍ରୀମୁଖ ମାଧୁରୀ ଦେଖି
ଶଙ୍କ ଗଞ୍ଜଣା ନ ବାଧେ ସଖି ଗୋ ।। ୩୦ ।।

ଷଣ୍ମୁଣ୍ଡମୋଡ଼ା କାଳୀୟଦଉଡ଼ା
ଷଟପଦ ମୁଁ ପଦ୍ମ ଗୋ !
ଷୋଳ ଏକ ଊଣା- ବୟସ ନବୀନ-
ଶ୍ରୀ କିଶୋର ଚୂଡ଼ାମଣି ଗୋ
ଷୋଳ କଳା ଶତ କାମ
ଷୋଡ଼ଶ ଯୋଗରେ ପ୍ରଭୁ ନାମ ଗୋ ।। ୩୧ ।।

ସଂସାର ସାର- ଶୋଭାକୁ ଗୋଟିଏ
କରି ନିର୍ମାଣିଛି ବ୍ରହ୍ମ ଗୋ !
ସୁରସିକ ବର ସୁବଳ ସଙ୍ଗିଆ
ସମସରି କେହ୍ବ ନାହିଁ ଗୋ
ସେତ ସୁଖର ସଦନ
ସବୁ ଗୋପୀଙ୍କ ମୋଦ ବର୍ଦ୍ଧନ ଗୋ ।। ୩୨ ।।

ହଳୀପ୍ରିୟ ମୂଳ- ବିହାରୀ ମୋ ମୂଳ
ହରିତ ବସନ ହରି ଗୋ !
ହେଜ ହେଜ ନିତ ତ୍ରିଭଙ୍ଗ ମୂରତି
ହେବ ଏ ଜଞ୍ଜାଳୁ ପାରି ଗୋ
ହେ ସଖି ! କହିଲି ସତ୍ୟ
ହସି ନେତ୍ର ହେଉ ଅଶ୍ରୁପାତ ଗୋ ।। ୩୩ ।

କ୍ଷଣେ ତ ଅନ୍ତର ହେଲେ ବଂଶୀଧର
କ୍ଷୋଭ ସିନ୍ଧୁ ଉଛୁଳଇ ଗୋ !
କ୍ଷମା ନିଧାନ ଗୋକୁଳ-କଳାକର
କ୍ଷୀର, ମୁଁ ନୀର ଅଟଇ ଗୋ
କ୍ଷୀଣ ହେଲି ତାଙ୍କୁ ଧ୍ୟାୟି
କ୍ଷେମେ ବୈଷ୍ଣବ ଦାସ କହଇ ଗୋ ।। ୩୪ ।।

—o—

# ବଉଳ ଚଉତିଶା

କହଇ କଥାଏ ଦୂତି, ଶୁଣ ମୋ ବଚନ
କଦମ୍ବ ମୂଳରେ ଗୋ
ବଉଳ !
କମଳଲୋଚନ ଗୋ
ବଉଳ ॥ ୧ ॥

ଖଣ୍ଡେ ଦୂରୁ ଦେଖିଲି ମୁଁ ତାହାର ବେଶକୁ
ଖଞ୍ଜିଛି କଟାକ୍ଷ ବାଣ ଗୋ
ବଉଳ !
ମରମ ସ୍ଥାନକୁ ଗୋ
ବଉଳ ॥ ୨ ॥

ଗ୍ୟାନ ହରାଇଣ ସଖି ! ହୋଇଲି ମୁଁ ବାଇ
ଗୋବିନ୍ଦଙ୍କ ବେଶ ଦେଖି ଗୋ
ବଉଳ !
କେ ଧରିବ ଦେହ ଗୋ
ବଉଳ ॥ ୩ ॥

ଘଡ଼ିଏ ମନରୁ ମୋର ନଯାଇ ତା କଥା
ଘର ବର ତେଜ୍ୟା କଲି ଗୋ
ବଉଳ !
ଏକା କୃଷ୍ଣ ଚିନ୍ତା ଗୋ
ବଉଳ ॥ ୪ ॥

ନାହିଁ ନ କରିଣ ଦୂତି ! ବେଗ ହୋଇ ଯାଅ
କୃଷ୍ଣେ ଯେବେ ନ ଆସିବେ ଗୋ
ବଉଳ !
ହରାଇବି ଦେହ ଗୋ
ବଉଳ ॥ ୫ ॥

ଚିତ୍ତ ମୋର ଛନ ଛନ ହୁଏ ଦକ ଦକ
ଚିତ୍ତରୁ କ୍ଷଣେ ନଯାଇ ଗୋ
ବଉଳ !
ଚନ୍ଦନ ତିଳକ ଗୋ
ବଉଳ ॥ ୬ ॥

ଛନ୍ଦକୁ ବେନ ଚରଣ ଶ୍ରୀକରେ ବଇଁଶୀ
ଛଇଳ ନଟ ନାଗର ଗୋ
ବଉଳ !
ନୁହଇ ମୂ ରୁଚ୍ଛି ଗୋ
ବଉଳ ॥ ୭ ॥

ଜାଣିଲି ଅତି ଗରିଷ୍ଠ ମଲ୍ ମହା ମଲ
ଜାତିକୁଳ ତେଜ୍ୟା କରି ଗୋ
ବଉଳ !
ଯାହା ବୋଲ ବୋଲ ଗୋ
ବଉଳ ! ॥ ୮ ॥

ଝିମିଣ୍ଟେ ମନରୁ ନ ଯାଇ ତାର କଥା
ଝସକେତୁ ବାଣ ବାଜଲେ ଗୋ
ବଉଳ !
ଶ୍ରୀଅଙ୍ଗ କଲା ବ୍ୟଥା ଗୋ
ବଉଳ ॥ ୯ ॥

ନ ରୁଚଇ ଅନ୍ନ ପାଣି ଗନ୍ଧ ବେଣ ବାସ
ନନ୍ଦ ସୁତ ସଙ୍ଗେ ଥିବା ଗୋ
ବଉଳ !
ରଜନୀ ଦିବସ ଗୋ
ବଉଳ ॥ ୧୦ ॥

ଟାହି ପରିହାସ ଆମ୍ଭେ କାହାକୁ କରିବା
ଟଙ୍କଧର ଅଇରିକ ଗୋ
ବଉଳ !
କପାଳୁଁ ଗୁଣ୍ଡିବା ଗୋ
ବଉଳ । ॥ ୧୧ ॥

ଠାକୁରଙ୍କ ପଦ୍ମ ପାଦେ ଥିବା ଅହ୍ନାଣ
ଠାଠିକେ ଶରଣ ଗଲ୍ ଗୋ
ବଉଳ !
ଠକ ବଂଶୀ ଦାସ ଗୋ
ବଉଳ ।। ୧୨ ।।

ଡରିଆଉ ବୋଲ୍ କେହ୍ନୁ ଗଲେ ବୃନ୍ଦାବନ
ଡ଼େର ଥାଉ ଶ୍ରବଣ ଗୋ
ବଉଳ !
ଶୁଣି ବେଣୁ ସ୍ୱନ ଗୋ
ବଉଳ । ।। ୧୩ ।।

ଡ଼ଳ ଡ଼ଳ ଆସୁଥାନ୍ତି ବତ୍ସବୃନ୍ଦ ଧେନୁ
ଡ଼କାବେ ତାହାଙ୍କୁ ଦେଖି ଗୋ
ବଉଳ ।
ସୁର ନର ମୁନି ଗୋ
ବଉଳ । ।। ୧୩ ।।

ଅଖିଳ କୋଟି ବ୍ରହ୍ମାଣ୍ଡ ଅଧିପତି ହୋଇ
ଆମ୍ଭଙ୍କୁ ଅନାସ୍ଥ କରି ଗୋ
ବଉଳ ।
ଗଲେ କାହିଁ ପାଇଁ ଗୋ
ବଉଳ ।। ୧୫ ।।

ତନୁ ତାଙ୍କ କୋମଳ ମଧୁର ତାଙ୍କ ବାଣୀ
ତରସ୍ତ ହୋଇଲୁ ଶୁଣି ଗୋ
ବଉଳ !
ଗୋପର ତରୁଣୀ ଗୋ
ବଉଳ । ।। ୧୬ ।।

ଥବିର ନୋହଇ ଚିତ୍ତ ଥାଏ ନ ଜାଣିଲେ
ଥନ ପାନେ ପୁତନାକୁ ଗୋ
ବଉଳ ।
ଜମ୍ପାଇ ମାଇଲେ ଗୋ
ବଉଳ ।। ୧୭ ।।

ଦଇନ କରିଣ ଦୂତି ! କହୁଅଛି ତୋତେ
ଦହୁଛି କନ୍ଦର୍ପ ବାଣ ଗୋ

ବଉଳ
ଦୟାକର ମୋତେ ଗୋ
ବଉଳ । ॥ ୧୮ ।

ଧୀରେ ଆସୁଥାନ୍ତି ଧୂସର ହୋଇ ତନୁ
ବସ୍ତବୃନ୍ଦ ମେଳେ ଗୋ
ବଉଳ !
ଉଡ଼ ଚଡ଼ ରେଣୁ ଗୋ
ବଉଳ ! ॥ ୧୯ ॥

ନୋହିଲେ କି କୋଟି ଚନ୍ଦ୍ର ଚରଣକୁ ଶୋଭା
ନୀଳେନ୍ଦୀବରଲୋଚନ ଗୋ
ବଉଳ ।
କି ଉପମା ଦେବା ଗୋ
ବଉଳ ! ॥ ୨୦ ॥

ପରତେ ନଯାଇ ଆମ୍ଭେ ତାହାଙ୍କ କଥାକୁ
ବୃନ୍ଦାବନରେ ଯାହା ଗୋ
ବଉଳ ।
ବୋଲନ୍ତି ଆମ୍ଭଙ୍କୁ ଗୋ
ବଉଳ । ॥ ୨୧ ॥

ଫାଟି ଯାଉଅଛି ହୃଦ ତାଙ୍କ ଗୁଣ ଗୁଣି
ଫଲଣା ହୋଇଛୁ ଗୋ
ବଉଳ ।
ବରଜ ତରୁଣୀ ଗୋ
ବଉଳ ॥ ୨୨ ॥

ବହନ ହୋଇ ଦୂତ । ବେଗ ହୋଇ ଯାଅ
ବୃନ୍ଦାବନଚନ୍ଦ୍ର ଲାଗି ଗୋ
ବଉଳ ।
ହରାଇବୁ ଦେହ ଗୋ
ବଉଳ ॥ ୨୩ ॥

ଭବ ଭବ ମୁନି ପାର ନ ପାଇଲେ ଲେଶ
ଭବକୁ ଶରଣ ଗଲା ଗୋ
ବଉଳ ।
ବଂଶୀଧର ଦାସ ଗୋ
ବଉଳ ॥ ୨୪ ॥

ମଥୁରାକୁ ଗଲାଦିନୁ ମନେ ସୁଖ ନାହିଁ
ମରିବୁ ସକଳ ଗୋପୀ ଗୋ
ବଉଳ !
ତା ମୁଖ ନ ଚାହିଁ ଗୋ
ବଉଳ ! ।। ୨୫ ।।

ଯୋଗୀଜନମାନେ ଯାର ନ ପାଇଲେ ମାୟା
ଜନନ ଦିନୁ ଜାଣିଛୁ ଗୋ
ବଉଳ !
ନିଷ୍ଠୁର ତା ହିଆ ଗୋ
ବଉଳ ।। ୨୬ ।

ରଙ୍ଗିମା ଅଧରେ ପ୍ରଭୁ ମନ୍ଦ ମନ୍ଦ ହସି
ରସିଲୁ ସବୁ ଗୋପୀ ଗୋ
ବଉଳ !
ଶୁଣି ତାଙ୍କ ବଂଶୀ ଗୋ
ବଉଳ ।। ୨୭ ।।

ଲାବଣ୍ୟନିଧିଙ୍କ ଆଉ ପାଇବା ଯେ କାହିଁ
ଲୋଚନେ ଦେଖିବା ଯାଏ ଗୋ
ବଉଳ !
ମନେ ପ୍ରତେ ନାହିଁ ଗୋ
ବଉଳ ।। ୨୮ ।।

ବିଧାତା କଲା କର୍ମକୁ କେ କରିବ ଆନ
ବନମାଳୀ ଗଲା ଦିନୁ ଗୋ
ବଉଳ !
ନ ସରଇ ଦିନ ଗୋ
ବଉଳ ।। ୨୯ ।।

ଶ୍ରୀକୃଷ୍ଣ ମଥୁରା ଗଲେ ନ ସରଇ ଦିନ
ଶରୀରକୁ ଗରୁ ହେଲା ଗୋ
ବଉଳ !
ପିନ୍ଧିଲା ବସନ ଗୋ
ବଉଳ ।। ୩୦ ।।

ସୁମୁଖୀ ବଚନ ଶୁଣି ହରଷ ବଦନ
ସତେ ଯେବେ ନ ଆସିବେ ଗୋ
ବଉଳ !
ସିଦା ସନ୍ନିଧାନ ଗୋ
ବଉଳ ! ।। ୩୧ ।।

ସରୋଜଲୋଚମାମାନେ ହୋଇବୁ କୁଶଳ
ସମସ୍ତ ବେଦନା ହରିବେ ଗୋ
ବଉଳ !
ଯଶୋଦାଙ୍କ ବାଳ ଗୋ
ବଉଳ ।। ୩୨ ।।

ହରଷ ହୋଇଣ ହରିଙ୍କି ଭାବୁ ଥାଅ
ହରିବେ ସକଳ ଦୁଃଖ ଗୋ
ବଉଳ !
ସଂଶୟ ନ ପାଅ ଗୋ
ବଉଳ ! ।। ୩୩ ।।

କ୍ଷେତ୍ରିବର ପଦ୍ମପାଦେ ଅଛୁ ମନ ଦେଇ
ଗୁରୁ ବଂଶୀଧର ଦାସ ଗୋ
ବଉଳ !
ସେ ପାଦକୁ ଧ୍ୟାୟି ଗୋ
ବଉଳ ! ।। ୩୪ ।।



# ସପ୍ତରାଗ ଚଉତିଶା

କୃଷ୍ଣଚନ୍ଦ୍ର ଋଷି କୃପାନିଧାନ
କୃଶ ତନୁ ବୃଷଭାନୁ ନନ୍ଦନ (ଘୋଷା)
କଞ୍ଜ ଗଞ୍ଜନ ଦୃଶି ! କେଳି କଳା ଲାଳସି
କହ କାହିଁ ପାଇଁ ବସିଛୁ ରୁଷି ॥ ୧ ॥

ଖରତର ଶ୍ୱାସ ମନ ଅଧୀର
ଖଞ୍ଜନ ନେତ୍ର ବହେ ନୀର ଧାର
ଷଣେ ଉଦ୍ବୋଧ ନାହିଁ ଖେଦେ ବକ୍ତ୍ର କମ୍ପାଇଁ
ଷିତିକି ଗୃହୁଁ କର ଗଣ୍ଡେ ଦେଇ ॥ ୨ ॥

ଗୁଣମଣି କାମ ବାନ୍ଧବୀ ବନ୍ଧୁ
ଗୋରି ! ନ ବୁଝିଲେ ବୁଝିବ କେହୁ
ଗତି ତୁ ଏକା ମୋର ଗୋପ୍ୟ ନାହିଁ ତୋ ଠାର
ଗଜଗମନି ବୁଝାମଣା କର ! ॥ ୩ ॥

ଘେନାଘେନି ସ୍ତନ କଥାମାନଙ୍କ
ଘୋର ବଦ୍ଧ ପଡ଼େ ଖ୍ୟାତ ତ୍ରୈଲୋକ୍ୟ
ଘନକେଶି ! ସେ ମାନ ଘେନି ସୁଜନ
ଘେନନ୍ତି ନାହିଁ ଆଜ ଗୀତମାନ ॥ ୪ ॥

ନାହିଁ ତୋହ ପରା ପ୍ରଭୁ କାହିଁ କେହିଁ
ନ ବୁଝି ଦଣ୍ଡିଲେ ରଖନ୍ତା ନାହିଁ
ନନ୍ଦ ସୁତ ଏ ବାଣୀ ନସ୍ଥେ ହୃଦପ୍ରେ ଗୁଣି
ନୃପତି କ୍ଷନ୍ଦିବର ଭଞ୍ଜ ଭଣି ॥ ୫ ॥

## ରାଗ-ମୁଖାରି

ଚଞ୍ଚଳ ଚମ୍ପକ ଅଙ୍ଗୀ ଚମକି ଲୋଚନରେ
ଗୃହୁଁ ଗୃହୁଁ ନ ଗୃହୁଛୁଁ ମୋ ମୁଖକୁ ଧନରେ
ଶୈଖଶାଖ ନଖରେ ଚିରୁ ମହୀ ଶିଖରେ
ଚେଲାଞ୍ଚଳ ଗୃଳ ଟେକ ଗୃରୁ ଚନ୍ଦ୍ରମୁଖରେ ॥ ୧ ॥

ଛନ୍ଦପତି ଦୋହଣ୍ଟି ରସବନ୍ତରେ
ଛେମାବତି ! ଜାଣୁ ପ୍ରୀତି ଗତାଗତି ରେ
ଛୁର କଥା ଶୁଣିରେ ଛେଉଭ ନକ୍କ ଘେନରେ
ଛୁଡ଼ି ଗୃଢ଼ ଗାଢ଼ ତାପ କୋପରୂପ  ଧନରେ ॥ ୨ ॥

ଯିବ ଯିବ ଯିବ ଜୀବ ତୋ ଭାବ ଅଭାବରେ
ଜାଣୁ ଜାଣୁ ଜାଣୁ ମଣି ! ଏହା କରୁ ଏବେରେ
ଜାଣୁ ମନ ଦୁଃଖରେ ଯତନେ ଉପେଖରେ
ଯିବା ଜୀବ ରଖ ସୁଖଦାନ ! ପାଖେ ରଖରେ ॥ ୩ ॥

ଝସ ଝସ ବାସଜନପୂନା ଧୀରେ ରେ
ଝମ ଝମ ଅଙ୍ଗ ଦମଦମ ହୃଦ ମୋର ରେ
ଝଞ୍ଜୋଗାର ! ଦେଖରେ  ଝଟିତି ତୁ ରଖରେ
ଝଗଡ଼େ ହୃଡ଼ ନଗଡ଼େ  ପଡ଼ି ମୁଁ ନିରେଖ ରେ ॥ ୪ ॥

ନାଗରି, ଗୋରି, ସୁନ୍ଦରି କରିବାକୁ ବାହାରେ
ନାହିଁ ନାହିଁ କାହିଁ ରସାରେ ତ ମୋର କେହି ରେ
ନିଷ୍ଠେ ମୁଁ ତୋ ଦାସରେ  ନ କର ନିରାଶରେ
ନରବର କ୍ଷନ୍ଦିବର ଶିରନ୍ତ ପୀତବାସ ରେ ॥ ୫ ॥

## ରାଗ-ଚୋଖି

ଚେକଯଉବନୀ-  ବନିତା ନ ଘେନୁ
ବଟନାଇ କହିଲେ ଯେତେ
ଟାଳି ଦେଲେ ପ୍ରୀତି  ଟଳିଯିବ ପ୍ରାଣ
ପଛେ ନ ପାଇବୁ ମୋତେ
ରେ ରାମା !
ଚେକ ଚନ୍ଦ୍ର ମୁଖ ଅନା
ଟେହ ଟେହ ହସି  ଆଲିଙ୍ଗନ କର
ହେବ ଆଜ୍ଞୁଁ ବଳା କାଣା ରେ ॥ ୧ ॥

ଠାକୁରାଣୀ ଏଣି  ଦୃଶୀ ଶଣୀ ହାସୀ
ଭସିଲ ମଦନ ଜଳେ
ଠେଣ ଜାନୁ-ନାବ  ଦେଇ ରଖ ଜୀବ
ଜଣାଉ ଅଛୁ ଆକୁଳେ

ରେ ରାମା !
ଠିକେ ଯାବ କୂଳେ ଲଗା
ଠାଠିକ ଗୃରୁ ଚନ୍ଦ୍ରଜିତ ବଦନା
ମୁଁ ତୋ ନୁହଇ ଅଲଗାରେ ॥ ୨ ॥

ଡ଼ୋଳୁ ଅନ୍ତର ପଲକ ପରାବର-
ବରନ ! ତୁ ସହୁ ନାହିଁ
ଡ଼ୋଳାଇ ସେ ସୁଖ ଦୁଃଖ ମୂଳ କର
ଅବମାକ ଅଛୁ ଗୃହିଁ
ରେ ଧାମା !
ଡ଼କାଇତ ପ୍ରାପ୍ତ ନୁହଁ
ଡ଼ୋଳା ପ୍ରତିମା ଉମା ସମ ସୁଷମା
ରମା ସମ ଦୟା ବହରେ ॥ ୩ ॥

ଡ଼ଳ ଗୃହିଁବା ରହି କହି ହସିବା
ରସିବା ତୋଷିବା ଯେତେ
ଡ଼ାଳେ କଥାଯୋକ ଏଥୁଁ ନ କଲେ ତୁ
କ ବୋଲିବେ ଲୋକେ ତୋତେ
ରେ ରାମା !
ଡ଼ାଳିଦଅ ସୁଧା ରସ
ଡ଼ମ କହୁ ନାହିଁ ଗୁଣମଣି ସହି !
କଣା ଦାସ ପୋଷ ପାଶରେ ॥ ୪ ॥

ଅଣିମାଦ୍ୟ ଅଷ୍ଟ- ଅଇଶ୍ୱର୍ଯ୍ୟ ସିଦ୍ଧି
ମୂରପୁରେ ବାଧିଦେଲେ
ଅଣୁରୁ ଅଣୁ ଅଣହେଳା ତହିଁରେ
ତୋ ଶ୍ରୀମୁଖ ଦେଖୁଥିଲେ
ରେ ରାମା !
ଆନ ଏ ସୁଖ ନ କର
ଆନନ୍ଦ-କନ୍ଦ ଗୋବିନ୍ଦ-ପଦ-ଦ୍ୱନ୍ଦ
ଭାବେ ଭଞ୍ଜ ସର୍ବ ବରରେ ॥ ୫ ॥

—○—

# ଚଉତିଶା ସଞ୍ଚୟନ

## ରାଗ-ଆହାରୀ

ତରୁଣୀମଣି-　　ମଣିପୁର ଭୂଷଣି !
ଏଣୀନେତ୍ରୀ ! ଅନାରେ
ତନୁ ତନୁ ଫୁଲ　　ଧନୁ କରୁଅଛ
ବଧି ଭାବ ବନାରେ
ତାର ତର ଅଧର ନ କମ୍ପାରେ
ତପବଳ ଫଳ ହେବ ମୋ ସଫଳ କର ଅନୁକମ୍ପାରେ ॥ ୧ ॥

ଥାଉଁ ଥାଉଁ ତୋହ　　ପଗ୍ରା ପ୍ରଭୁ ଗୃହୁଁ-
ଗୃହୁଁ ଗଲେ ନାଶରେ
ଥ ଲ ସ୍ତନା ଅନା　　ଥିଗ୍ର ମଧ୍ୟ ସିନା
ରହିବ ଅଯଶରେ
ଥିବ କୀର୍ତ୍ତି ପ୍ରୀତିଦାମ୍ନ ରଖରେ
ଥାଶୁ ମୋହନ ଭାବନ ! ଗୁଣମଣି ତୁ ମୋର ସବୁ ସୁଖରେ ॥ ୨ ॥

ଦାସ ନାଶ କସ　　ଯଶ ପଞ୍ଚରୋଷ
ଦେଇ ତ ନ କହରେ
ଦୁଃଖ ବଡ଼ି ସୁଖ　　ଏଡ଼ ଭାବ ଗୁଡ଼
ଦେହ ମୁଖେ ରହ ରେ
ଦରହାସ ପ୍ରକାଶିତ ବେଶରେ
ଦମ୍ଭ ଅବଲମ୍ବ କର ପରରମ୍ଭ କର ହୋଇ ତୋଷ ରେ ॥ ୩ ॥

ଧନ୍ୱା ଜାତ ଫଳ　　ସଫଳ ପଙ୍କିଳ
ମୁଖି ! ଅନୁକୂଳରେ
ଧର୍ମ ଅର୍ଥ ମୋକ୍ଷ-　　କାମ ହିଁ ପ୍ରତ୍ୟକ୍ଷ
ପାଇ ତୋହ କୋଳରେ
ଧନ୍ୟ ଧନ୍ୟ ଅମୂଲ୍ୟ ପ୍ରତିମାରେ
ଧାତା ରଚନାରେ ନାହିଁ ସଂସାରରେ ତୋ ସମ କେ ରାମାରେ ॥୪॥

ନବୁଦ୍ଧି ବବେକ　　ପ୍ରଭୁ କଲେ ତୋଖ
ରକ୍ଷା କେ ଧରଣୀରେ
ନୋକ ଗଣନାରେ　　ତୋ ପେଖ ସଂସାରେ
ମୁଁ ସିନା ବରଣୀରେ
ନଷ୍ଟ ନାଶ ଯିବ କଲେ ହେଲାରେ
ନୃପ କ୍ଷଜିବର ଶନ୍ତେ ନରନ୍ତର କୃଷ୍ଣ ପାଦ ତଳାରେ ॥ ୫ ॥



## ରାଗ-କାମୋଦୀ

ପ୍ରସନ୍ନଆନନଧନ ! ମଳିନ ନକର
ପଞ୍ଚଶର-ଶର-ଦର-ହର- ରାମାବର !
ପ୍ରିୟତମା ରେ
ପ୍ରଭୁପଣ ଟେକ ରଖ
ପ୍ରୀତି କାର୍ତ୍ତି ବଡ଼ ସୁଖ
ପରିରମ୍ଭ ଅବଲମ୍ବ କରି ଗୁଡ଼ ଦୁଃଖ । ୧ ।

ଫୁଲ୍ଲ ଅମଳ କମଳ ଦଳ ନେତ୍ରି ସନ୍ନ
ଫନ୍ଦା ମୋର କଣ୍ଠବର ବର ଗତି ଭୃଙ୍ଗ
ଫୁଟହାସି ରେ !
ଫାଇ କୋପ ତୋ ସହିଁ କ
ଫେଡ଼ ନ କହୁ କାହିଁକି
ଫଳେ ବୃଦ୍ଧି ବୃଷ୍ଟାମଣା କରି ଯେ ବିବେକ । ୨ ।

ବରାଙ୍ଗୀ ସୁମଙ୍ଗୀ ରସରଙ୍ଗୀ ହୃଦେ ଜଡ଼
ବିହର ମୋ କୋଳେ ଡୋଳେ ଗଳେ ଭୂଜ ଭିଡ଼
ବିଧୁ ମୁଖିରେ
ବିମ୍ବାଧର ଦିଅ ସୁଧା
ବୋଧ ହେଉ କାମ କ୍ଷୁଧା
ବିଳମ୍ବ ନକର ବର ଦୟାଳୟ ରାଧା । ୩ ।

ଭାବ ହାବ ଲାଭ ଲଭିବାକୁ ମୋର ମନ
ଭର୍ମାଙ୍ଗୀ ସୁମଙ୍ଗୀ ହେବ ହେଲେ ତୁ ପ୍ରସନ୍ନ
ଭାବ ନିଧିରେ
ହକଥିବ ତୋତେ ମୁହିଁ
ଭୃତ୍ୟ ଜନ ପ୍ରାୟେ ହୋଇ
ଭିନ୍ନ ନ କର ଅଭିନ୍ନ ମୋ ମାଗୁଣି ଏହି । ୪ ।

ମାନ ମୁଞ୍ଚ ଉଚ୍ଚ ଘଞ୍ଚ କୁଚ ସୁଶୋଭନା
ମୋତେ ସଞ୍ଚ ରତି ରଞ୍ଚ ଚଞ୍ଚଳନୟନା
ମଦାଳସିରେ
ମାର ମାରୁଅଛି ଦେଖ
ମୀନ ମୃଗନେତ୍ରି ରଖ
ମୁକୁନ୍ଦ ପଦାର ବିନ୍ଦ ସେବି ବର ସୁଖ ଗୋ । ୫ ।



## ରାଗ-ଓଡ଼ଣୀ କାମୋଦୀ

ଯ଼ୁବତୀ କୁଳ ରତନ
ଜାଣୁମଣି ଜାଣୁ ମୋର ମନ
ଝବଥିବା ଯାକେ ତୋତେ କେ ମୁଚ୍ଛିବ
ଯୋଗୀ ପ୍ରାୟେ ବନ୍ଧ ଠାରେ ମୋର ଧ୍ୟାନ
ଜମ୍ବୁନଦଗାତ୍ରି ସନ୍ନି !
ଜାଣି ଦୟା ନ କରୁ କମ୍ପାଇ
ଜଗତେ ସବୁରି ସମସ୍ତେ ଅଛନ୍ତି
ଜାଣ ତୋ ବିନୁ ମୋର ଆନ ନାହିଁ । ୧ ।

ରଙ୍କ ମୁଁ ତୁ ରତ୍ନାକର
ରାମା ! ଦୟାଧନେ ଝଦ୍ଧ କର
ରହିଥିବ ଯାଏ ଝବ ଥିବା ଯାଏ
ରଖ ହାଥପନ୍ତ ଦେବ ଦେନ ମୋର
ରମବତୀ ପ୍ରେମଶୀଳା
ରସେ ରସି ରାସ-ରସ ବଳା
ରତି ପତି ଅତି ଅମିତ କଳାଟି
ରକ୍ଷାକର ନୃପଜା କୋମଳା ବାଳା । ୨ ।

ଲହ୍ଲା ବପୁସି ଧନ !
ଲୋଳ ନେତ୍ର କେତେ ତେଜ ବନ
ଲୋକ ସିନା ମୁହିଁ କ ରକ୍ଷା ପାଇବ
ନ କଲେ ସେ କୃପା ପ୍ରଭୁ ଜନ
ଲାବଣ୍ୟ ପ୍ରତିମା ପ୍ରିୟା
ଲଛ ତୋ ପରା ବବେକୀ ଶ୍ରିୟା
ଲୀଳାବତୀ ହୋଇ ଲୀଳା ହେଲ ଏତେ
ଲଭହାନି ବନ୍ଧୁ ବୁଝି କର ଦୟା । ୩ ।

ବେଳକୁ ବେଳ ତୋହର
ବମ୍ବ ବଧୂକାଧର ଅଧୀର

ବାଣୀବଚନା ! ବଞ୍ଚନା କହୁନାହିଁ
ବିନା ଦୋଷେ ଧନ ! ବେଷ ବୁଝିକର
ବୋଧିଲେ ନ ଯିବୁ ବୋଧ
ବାଧ ଉପରେ ହେଲାଣି ବାଧ
ବିଧି ବିଧାନ ଗୋ ସବୁ ବୁଡ଼ିଲାଣି
ବନ୍ଧୁ ! କେବଳ ଅଛିଟି ବଧ ॥ ୪ ॥

ସରୂପ କହିଲେ ଶୁଣୁ ନାହିଁ
ସୁଜାଣ ବିବେକ ପ୍ରଭୁ ହୋଇ
ସଂସାରେ ଅପ- ଯଶ ସିନା ଲଭିବୁ
ଶ୍ୟାମାମଣି ! ନ ଯିବୁ ତୁ କାହିଁପାଇଁ
ସକଳ ଗୁଣେ ତୁ ପରିପୂର୍ଣ୍ଣ
ସେବି ତୋ ପାଦ ମୁଁ ହେଲେ ଶୀର୍ଣ୍ଣ
ଶୁଣିଲେ ଗୋପ- ବଧୂମାନେ ହସିବେ
ସଦା ଚନ୍ଦ୍ରେ ଘନଶ୍ୟାମ ବର୍ଣ୍ଣ ॥ ୫ ॥

## ରାଗ—କାମୋଦୀ

ସୁର ସୁନ୍ଦରୀ ସାର- ମଣ୍ଡନ ! ହର ହର-
ପର-ଶରର ଦର
କୃପା କର
ଶରଦ ଶଶୀ ମୁଖ ଟେକ ପରମ ସୁଖ
ଦେଇ ଜୀବନ ରଖ
କର ତୋର
ସାର ସରସିଜ ନେତ୍ର ! ରେ
ସୁବର୍ଣ୍ଣ ଗାତ୍ର ! ରେ ସୁପ୍ରେମ ପାତ୍ର ! ରେ
ସୁରତ ଦାତ୍ର ! ରେ ॥ ୧ ॥

ସକଳ ଗୁଣ ସୀମା ହେ ବୃଷଭାନୁ ଜେମା
ମୋ ଦୋଷ କର କ୍ଷମା
ମାନ ମୁଞ୍ଚ
ସୁଧା ପୂରିତ ହାସ କର ଗୋଟି ପ୍ରକାଶ
ରସେ ରସାଇ ରାସ-
ରସ ରଞ୍ଚ

ସଦା ସେବକ ମୁଁ ତୋର ରେ
ସ୍ପୃହା କର ରେ        ଶ୍ୟାମା ଉଦ୍ଧରରେ
ଶରଣ ତୋରରେ ॥ ୨ ॥

ହୋଇ ଅତି ବିନତି        ସହି ନ ପାରି ରତି
ରତିପତି ଉନ୍ମତି
ଦେବ ହରି
ହେଲେ ଉଚ୍ଛନ୍ନ ଦମ୍ଭେ        ନରହ୍ନ ଅବଲମ୍ବେ
କର ପ୍ରସାରି ରାଧା
ପାଦ ଧରି
ହୃଷ୍ଟି ହୋଇ ତୃଷ୍ଣା ରାମା ସେ
ହେଲା ସକାମା ସେ        ହରିଲା ବାମା ସେ
ହରମଧମା ସେ ॥ ୩ ॥

କ୍ଷକ୍ଷଦେ ରାଧା ସଙ୍ଗେ        ଶ୍ରୀକୃଷ୍ଣ କାମ ରଙ୍ଗେ
ମିଶି ତା ଅଙ୍ଗେ ଅଙ୍ଗ
ନତ୍ତହଲେ
କ୍ଷୁଦ୍ର ଭୁଜ ଭୁଜେଣ        କରନ୍ତି ଆଲିଙ୍ଗନ
ଅଧରୁ ସୁଧା ପାନ
କଲର ଖେଳେ
କ୍ଷେମ ଛଳେ କହ୍ନାଇ ସେ
କ୍ଷେମା ମନାଇ ସେ        ଗୁପ୍ତରେ ବହ୍ନି ସେ
ଗୁଞ୍ଜନ୍ତି ନାହିଁ ସେ ॥ ୪ ॥

କ୍ଷଣକୁ କ୍ଷଣ ରାଧା        କୃଷ୍ଣରେ ବଢ଼େ ଶ୍ରଦ୍ଧା
କ୍ଷୀର ନୀର ପରିଏ
ମିଶିଗଲେ
କ୍ଷିତୀଶ କ୍ଷନ୍ତିବର        ସେ ପାଦ ନିରନ୍ତର
ଧାଇ ପରମ ସୁଖ
ଲଭେ ଭଲେ
କ୍ଷମ କ୍ଷେମର କରଣ ସେ
କ୍ଷେମ ଧାରଣ ସେ        କ୍ଷୋଭ ବାରଣ ସେ
କ୍ଷିତି ଶରଣ ସେ ॥ ୫ ॥



# ଅଭିନ୍ନା ଚଉତିଶା

କଉଁ ବଦେଶୀ ଚତୁରୀ ଶିରୋମଣି ଚରିତ ଶତେ ଶଚୋଇରେ
କୁସୁମକାଳ କଳାକର କରନଣ କହଇ ବ୍ୟାକୁଳ ହୋଇରେ
ଅଭିନ୍ନା !
କେହ୍ନେ ବଞ୍ଚୁଥିବୁ ଦିନରେ
କଉଁଠାରେ ବସିକି ଝୁରୁଥିବୁ
କେହ୍ନେଥିବ ତୋର ମନରେ ॥ ୧ ॥

ଖୋସାଖୋସି ଦିନେ ଦିନକେ ସରଗେ ମୋ ଆଗେ ଦେଖାଉ ଆସିରେ
ଖୋସିଜାଣିମକି ମୋହୋପରି ବୋଲି ବୋଲି ଅଙ୍ଗେଯାଉ ମିଶିରେ
ଅଭିନ୍ନା !
ଖେଳାଇ ନୟନ ଖୋସ୍ଥରେ
ଖିଆଲଦେଲେ ମାଗାକି ଖୋସିଦେଇ
ଏ ପୁଣି କି ବୋଲି ଭାଷରେ ॥ ୨ ॥

ଗୋରା ଦେହ ନିତ କୁଙ୍କୁମ ଲେପନ୍ତେ ଉଠ୍‌ଯେ ଥାଇ ଝଟକରେ
ଗାଢ଼ ଆଲିଙ୍ଗନ ସୁରତରେ ଧନ ମୋ ମନ ଥାଉ ଅଟକରେ
ଅଭିନ୍ନା !
ଗଳାରହାର ତୁ ମୋର
ଗୁଣାଗଉର ! ତୋ ଗୁଣ ଗୀତକରି
ଗାଉଥିବି ନିରନ୍ତରରେ ॥ ୩ ॥

ଘାଗଡ଼ାପଡ଼ ଦିବ୍ୟହେମ ଶିକୁଳିଗୁନ୍ଥା ସରୁଧାନ ମାଳରେ
ଘଟଣ ହେମଉରଜେ ଲାଗିବାରୁ ଦିଶେ ଶତେଗୁଣେ ଝଲରେ
ଅଭିନ୍ନା !
ଘଡ଼କର ଭାବ ଯେତେନର
ଘେନଲେ ପାଷାଣ ଦ୍ରବ ହୋଇଯିବ
ହୃଦୟୁ ଗୁର ମୋ କେତେରେ ॥ ୪ ॥

ନଦେଉ ଆଗ ଚୁମ୍ବନ ମୁଁ ନ ଦେଲେ ଥରେ ଥରେ ଆଗ ଦେଉରେ
ନ ଘେନୁ ମୋହ ବଚନକୁ ଗୋଟିଏ ବଳିଆଇ ଆଗେ ଦେଉରେ
ଅଭିନ୍ନା !

ନିମିଷେ ଅନ୍ତର ନୋହୁରେ
ନତନୁ କେଳି ଲାଳସି ! ମଦାଳସି !
କି ଅପୂର୍ବ ଭାଷା କହୁରେ ॥ ୫ ॥

ଚନ୍ଦନପାଟି ଚନ୍ଦ୍ରାର୍ଦ୍ଧଭାଲପଟେ ଦିଶୁ ଯେ ଥାଇ ଗୃହୁସ୍ଥରେ
ଚାହିଁ ନ ଚାହିଁଲେ କେବଳ ଚାହେଁ ମୋ ହୃଦୟ ହୋଏ କାତରରେ
ଅଭିମନା !
ଚିରକାଳକୁ ମୁଁ ତୋ କିଣାରେ
ଚିକ୍କଣକେଶୀ ମୋ ଅଭାଗ୍ୟକାଳରୁ
କଲୁ ତୁ କରୁଣା ଊଣାରେ ॥ ୬ ॥

ଛନ୍ଦି ଶ୍ରୀଭୁଜେ ଶିରେ ଦେଇ ପ୍ରାଙ୍ଗଣେ ଦିନେ ଥିଲ ଉଦାସ ହୋଇରେ
ଛକି ଅନାଇ ମୁଁ ପଛଆଡ଼ୁ ଆଲିଙ୍ଗନ କଲି ଯାଇରେ
ଅଭିମନା !
ଛାଡ଼ଯା ବୋଲିଲୁ ହସିରେ
ଛାଡ଼ି ନାହିଁ ମନୁ ଯାହା ବୋଲିଅଛୁ
ଯାଇକହୁ ପଞ୍ଚଘଣ୍ଟରେ ॥ ୭ ॥

ଯାମିନୀଯାକ ଯେ ଜଗିବସିଥାଉ ଉନ୍ନିଦ୍ରେ ମୁଁ ଯିବାପାଇଁରେ
ଯତନ କରି ଚନ୍ଦନ ପଲଙ୍କ ତଳେ ପ୍ରଦୀପ ଘୋଡ଼ାଇରେ
ଅଭିମନା !
ଜାଣିନାହିଁ କି ତୋ ପ୍ରୀତିରେ
ଯାଉ ଜୀବଧନ ତୋ ଲାଗି ଜୀବନ
ଯୁଗେ ଯୁଗେ ରହୁ କୀର୍ତ୍ତିରେ ॥ ୮ ॥

ଝମ୍ପାବନ୍ଧା କଳା ସରୁଶାଢ଼ୀ ଧନ ! ନୋହିଲେ ନ ପିନ୍ଧୁ ପ୍ରଭାରେ
ଝଳଗଉର ! ତୋ ଝଳ ଶ୍ରୀଅଙ୍ଗକୁ ସେହି ଶାଢ଼ୀ ସିନା ଶୋଭାରେ
ଅଭିମନା !
ଝଳକୁଛି ସେକଥା ଚିତ୍ତରେ
ଝଳଗଉର ! ଦିନେ କୋଳେ ବସାଇ
ଯାହା ବୋଲିଅଛୁ ମତେରେ ॥ ୯ ॥

ନିଧୁବନ କାଳେ ଦିନେ ଖଟପରେ ଟେଗାଣି ମୁଖକୁ ଚାହାନ୍ତେରେ
ନତନୁ କେଳିଲାଳସୀ ଯାହା କଲୁ ବିପରୀତରେ
ଅଭିମନା

ନାସିକା ଘୁଡ଼ା ଫୁଲଇ ରେ
ନାହିଁ ନ ପାରଇ ଗେଲେ ବୋଲୁଥାଇ
ସୁରତ ମାଗିବା ପାଇଁ ରେ । ୧୦ ।

ଝେକ ଜାନୁରେ ବସାଇ ଚୁମ୍ବଦେଲେ ଝିକାଏ ନ ଝେକୁ ଶିର ରେ
ଝେକସ୍ତନେ ନଖମୂଳ ଝିପିଦେଲେ ରହ ବୋଲି ଧରୁ କରରେ
ଅଭିମ୍ନା !
ଝଳିଗଲା ତେତେ ସୁଖରେ
ଝଙ୍କଧର ଶଧୁ ଦୁହିଁଙ୍କୁ ଏକାଳେ
ଏକାବେଳେ ଦେଲା ଦୁଃଖରେ । ୧୧ ।

ଠିଆ ଯେ ହୋଇଥାଉ ଛନ୍ଦ ଚରଣ ଦ୍ୱାର ବନ୍ଧେ କର ଦେଇ ରେ
ଠାଠିକମୁଖୀ ଦେଖିଲେ ଦୂରୁ ମତେ ହସିଯାଉ ଆଡ଼େ ହୋଇ ରେ
ଅଭିମ୍ନା !
ଠାର ଶିଖି ଅଛୁ କେତେ ରେ
ଠାକୁରାଣୀ ପଣ ମୂର୍ତ୍ତିବନ୍ତ ହୋଇ
ଭଲ ମାନଥାଇ ଡତେ ରେ । ୧୨ ।

ଡେରଥାଇ କର୍ଣ୍ଣ ଝୁମକ ଝୁଣ୍ଟିଆ ନୂପୁର ନାଦକୁ ତୋର ରେ
ଡାଳିମ୍ବ ଦଶନା ଜାଣି ମୋ ପାଖକୁ ଆସୁଥାଉ କେତେ ଥର ରେ
ଅଭିମ୍ନା !
ଡରୁଥାଇ ଚଢ଼େ ମୁହିଁ ରେ
ଡମ୍ବରୁ ସୁନ୍ଦର କ୍ଷଣ କଟି ତୋର
ବାଟେ ଭାଜିଯିବା ପାଇଁ ରେ । ୧୩ ।

ଢାଳ ନୟନ କ କର ଆଡ଼େ ଗୃହିଁ ଶ୍ରୀମୁଖେ ଦେଲେ ଚୁମ୍ବନରେ
ଢଳ ପଡ଼ୁଥିଲେ ହୃଦକୁ ମୋହର ମୁଁ କରଇ ଆଲିଙ୍ଗନ ରେ
ଅଭିମ୍ନା !
ଢାଳେ ହେଁ ମୂର୍ଚ୍ଛିଲୁ ମତେ ରେ
ଢମ କହୁ ନାହିଁ ଢଳ ହଲ ନେଇ !
ଢୋକବ ଗରଳ ସତେ ରେ । ୧୪ ।

ଅବଧାନ ବନୁ ଆନ ବୋଲି ମତେ ଭୁଣ୍ଡେ ନ ବସାଇ ଥାଉ ରେ
ଆଗୋ ଏକ ବୋଲ ବୋଲୁଥାନ୍ତ ମତେ ବୋଲ ମୁଖେ ବାସ ଦେଉରେ
ଅଭିମ୍ନା !

ଏହା ରଖିଥିବୁ ମନରେ
ଆଉ ନ ପାରଇ ବୋଲିବାର ନାକ
ଦେଖିବ ଧନ ସପନେ ରେ । ୧୫ ।

ତୋ ଲାଗି ସକଳ ଦଣ୍ଡ ପରିତ୍ୟାଗୀ ହୋଇ ଅରଣ୍ୟ ପଶିବି ରେ
ତପସ୍ୱୀ ହୋଇ କେବଳ ତୋ ନାମ ମହାମନ୍ତ୍ର ଜପୁଥିବି ରେ
ଅଭିନ୍ନା !
ତେବେ ନୋହିବ କି ଗତରେ
ନିପୁର ସୁନ୍ଦରି ! ତୋହୋପରି କରି
କେ ଦେଉ ମୋତେ ସୁବଣ୍ଣ ରେ । ୧୬ ।

ଥିର କରି ବଚନେ ଥିରଗମନୀ ତୋ ଉରଜରେ ଦେଲି କର ରେ
ଥରେ ଚୁମ୍ବନ ଦେଇ ବନ୍ଧୁ ! ବୋଇଲି ହେଲକି ବନ୍ଧୁ ଏଥର ରେ
ଅଭିନ୍ନା !
ଥୋଇ ହୃଦୟରୁ ହାର ରେ
ଥାଉ କନା ବୋଲି ଯାହା କହୁ ବନ୍ଧୁ
ନଥିବ କି ତା ମନର ରେ । ୧୭ ।

ଦେହ ପାଣି ସାରି ବଚନେ ଅଗଣାରେ ଉଭା ହୋଇଥିଲୁ ଆସି ରେ
ଦେଇ ପଣନ୍ତ ମଥାରେ ମତେ ଦେଖି ସଦନକୁ ଗଲୁ ପଶି ରେ
ଅଭିନ୍ନା !
ଦେହଲୀ ନିକଟେ ଥାଇରେ
ଦିବ୍ୟ ଚକ୍ଷୁରେ କି ବସୁରି ଅଳପ
ହସିଲୁ ପାଲଟି ଗ୍ରୀବଁ ରେ । ୧୮ ।

ଧୀରଗମନାରେ ଧରି ତୋ ଶ୍ରୀକର ବିପରୀତ ମୁଁ ମାଗନ୍ତେ ରେ
ଧରଣୀ ମଣ୍ଡନା ! ସୁରସ ପଣ୍ଡିତା ! ସେହିମତ କଲୁ ମତେରେ
ଅଭିନ୍ନା !
ଧୀରେ ଆରମ୍ଭିଲି ରତିରେ
ଧରି ଚୁମ୍ବନ ଦିଅନ୍ତେ ତୋ ଶ୍ରୀମୁଖେ
କି ଭଙ୍ଗରେ କଲୁ ଗତିରେ । ୧୯ ।

ନାସିକା ପୁଡ଼ା ଟେକିଲୁ କରି ଭୁଯେ ହସି କହୁଥାଉ ବାର୍ତ୍ତାରେ
ନାହିଁ ନ ପାରିବ ବୋଲି ଗଲେ ବୋଲୁ ସୁରତ ମାଗିବା ଜାଣି ରେ
ଅଭିନ୍ନା !

ନିରତେ ତୋହର ଗୁଣି ରେ
ନୟନୁ ନୀର ଝର ଝର ଝରଇ
ନ ରୁଚଇ ଅନ୍ନପାଣିରେ । ୨୦ ।

ପିଠି କରି ଦିନେ ପ୍ରିୟେ ! ଶୋଇନାହୁଁ ଏବେ ହେଲୁ ଏତେ ଦୂରରେ
ଟରଶୁପାଣି କରିବେ ସତେ ପଦ୍ମପାଦେ ଲଗାଇବି ଶିରରେ
ଅଭିନ୍ମା !
ପାସୋର ନ ଯାଉ ଚିତ୍ତୁ ରେ
ପୂର୍ବ ପଣ୍ୟ ଯେଣୁ ସଙ୍ଗୀତପଠନ !
ପ୍ରାପତ ହୋଇଛୁ ମତେ ରେ । ୨୧ ।

ଫେଡ଼ି ନୀବିବନ୍ଧ ବାନ୍ଧୁଥାଉ କେତେ ଦେଖି ହୋଇଥାଇ ସୁଖୀ ରେ
ଫାଟି ନଯାଇ ରହିଛି ଛାର ଜୀବ ଏବେ ସେ ଛବି ନ ଦେଖିରେ
ଅଭିନ୍ମା !
ଫୁଟୁଛି ହୃଦୟ ମୋର ରେ
ଫ୍ଲ କାଳକାଣ୍ଡ ଛାର ହେଲା ଦଣ୍ଡେ
ତୋ ବିନୁ ବନ୍ଧୁ ଏଥର ରେ । ୨୨ ।

ବୋଲୁ ଯେ ଥାଉ ପିଣ୍ଡରେ ପ୍ରାଣଥିଲେ ଏ ପ୍ରୀତି ନୋହିବ ଭିନ୍ନରେ
ବେଳକୁ ବେଳ ରଖିବ ନାହିଁ ପରା ବୋଲି କଲୁ ଆଲିଙ୍ଗନରେ
ଅଭିନ୍ମା !
ବିହିକଲା ଏତେ ହରିରେ
ବୀଣାବଚନ ! ତୋ ବିନୁ ବିବାସରେ
ଏବେ ମରୁଅଛି ଝୁରିରେ । ୨୩ ।

ଭଜ ପଡ଼ୁଥାଇ ଲୋଟଣୀ ଜଙ୍ଘାରେ ସରୁ ଛୁଆଅନା ଗନ୍ଧରେ
ଭିନେ ପରି ଫୁଲେ ଗନ୍ଧ କରିଥିଲେ ଦିଶୁଥାଇ ମହାଶୋଭାରେ
ଅଭିନ୍ମା !
ଭଲ ତୋ ସୁନ୍ଦରପଣ ରେ
ଭାବିଲେ ଭାବନା । ଦିବସ ରଜନୀ
ସରିବ ନାକ ତୋ ଗୁଣରେ । ୨୪ ।

ମାଜିଲା ମଦନ ମୁକୁର ପରାଏ ବିରାଜୁଥାଏ ଶ୍ରୀମୁଖରେ
ମୁଁ ଦଣ୍ଡେ ଶ୍ରୀମୁଖ ବାରେ ନ ଦେଖିଲେ ମାଡ଼ି ପଡ଼ୁଥାଇ ଦୁଃଖରେ
ଅଭିନ୍ମା ।

ମୂର୍ଚ୍ଛିବା ପଦାର୍ଥ ନୋହୁରେ
ମୂନମୋହନ ! ତୁ ମୋହ ଲାଗି ସିନା
ପରେ ପରଭବ ସହୁ ରେ ।। ୨୫ ।

ଜଙ୍ଘା ଭଙ୍ଗି ମୁଁ ଯେ ବେଣୀ କରୁଥାଇ ଜାନୁରେ ବସାଇ ଆଣିରେ
ଜାଣୁ ମଣି ! ମନ ଜାଣି ଲଜ ପାଉ ଥରେ ହେଁ ନକହୁ ବାଣୀରେ
ଅଭିନ୍ନା !
ଯାହା ଗୃହଁ ମନ୍ଦେ ହସୁରେ
ଜମ୍ବୁନଦଗୋର ! ଯେବେ ଲେଉଟିବ
ଅନ୍ତର ନୋହିବ ପାଶୁରେ ।। ୨୬ ।।

ରମ୍ଭା ମନୋରମା ରତି ତିଲୋତ୍ତମା ଶଚୀ ଆଦି ଯେତେ ନାରୀରେ
ରମଣି ! ତୋ ରଙ୍ଗା ଚରଣ ତଳକୁ ଜଣେହେଁ ନୁହନ୍ତି ସରିରେ
ଅଭିନ୍ନା !
ରସେ ରସାଇଛୁ ମୋତେରେ
ରସବନ୍ତ ! ତୋହ ଯେନ ମୁଁ ରସିବ
ବୋଲି ବୋଲନ୍ତି ଜଗତେ ରେ ।। ୨୭ ।।

ଲେଖି ଯେ ଥାଉ ଲେଖ ଲକ୍ଷାରସକରେ ନାଗର ! ଅକ୍ଷରମାନରେ
ଲକ୍ଷେ ଥର ଶିରେ ଲଗାଇ ମୁଖରେ ଧଅଇ ଲକ୍ଷେ ଚୁମ୍ବନରେ
ଅଭିନ୍ନା !
ଲେଉଟିଲେ କେ ଦେବ ତୋତେରେ
ଲେଶେ ମୁଁ ପାଶରୁ ଅନ୍ତର ନୋହିବ
ଲେଉଟି ଆସିବ ଯେବେରେ ।। ୨୮ ।।

ବପଘାତ ଅନ୍ତେ ବେଶ କର ତୋତେ ବସାଇଲେ ଆଣି କୋଳରେ
ବନଯୂ ହୋଇ କର ଧରି ବୋଇଲି ଏବେ ହୋଉ ଆଉ ବେଳରେ
ଅଭିନ୍ନା !
ବଦନେ ଚୁମ୍ବନ ଦେଇରେ
ବୋଧ ନୁହ ବନ୍ଧୁ ଯେତେ ହେଲେ ବୋଲି
ବୋଇଲୁ ଗେଲାଇ ହୋଇରେ ।। ୨୯ ।।

ଶରଦ ନିଶିରେ ଧନେ ସରୋଜାକ୍ଷି ! ସ୍ତନାଙ୍ଗ ଚନ୍ଦନ ହୋଇରେ
ସିନ୍ଦୁରୀ ଶାଢ଼ୀ ଉପରଣ ଦେଇ ମୋ ଆଗେ ଉଭା ହେଲୁ ଯାଇରେ
ଅଭିନ୍ନା !

ସନ୍ତୋଷ ହେଲି ଅନାଇରେ
ଶିରଧା କରି ଆଲିଙ୍ଗନ କରି ତୋ
ମୁଖେ ଚୁମ୍ବ ଦେଲି ହେଳରେ । ୩୦ ।

ଶିଖର ଅଙ୍ଗୀ ଶ୍ରୀମୁଖ ମୋଡ଼ି ଦେଇ ଯାହା ବୋଲଅନ୍ତୁ ହସିରେ
ସେହିଦିନୁ ସେହି କଥା ଅହର୍ନିଶି ହୃଦେ ହେଉଥାଇ ଘୋଷିରେ,
ଅଭିନ୍ନା !
ସବୁ ସୁଖ ମୋର ତୁହିରେ
ସତେ ମହାପ୍ରଭୁ ରଖିଥିବେ ଶଙ୍କେ
ଫୁଟିଗଲ ଚନ୍ଦ ଘୋଡ଼ାଇ ରେ । ୩୧ ।

ସୁନ୍ଦର ତିଳ କୁସୁମ ନାସା ପୃଷ୍ଠେ ଶୋହେ ମୋତି ନାକଚଣାରେ
ସହଜେ କେତେ ସୁନ୍ଦର ଦିଶୁଥାଇ ଘଷା ବସା କାମ ଗୁଣାରେ
ଅଭିନ୍ନା :
ସଭିଙ୍କି ସଭିଏଁ ଜଣାରେ
ସୁକୃତ ନଥିଲା ଲୋକ ତା ଲୋକନ
କରିବା କଥା କି ଊଣାରେ । ୩୨ ।

ହୋଇ ସୁବେଶ ସୁରତ ସଦନରେ ମୋ ପାଶେ ହୋଉ ଉପବେଶରେ
ହରିଉରରୁ ବସନ ପରିରମ୍ଭ କଲେ ହେଉ ହସ ହସରେ
ଅଭିନ୍ନା !
ହରଷେ ମୋ ଗଳା ଭିଡ଼ୁରେ
ହେଲେ ରତି ରସେ ଅଣାୟତ୍ତ ବସେ
ଅଧରେ ଅଧର ପୀଡ଼ୁରେ । ୩୩ ।

କ୍ଷଣେ ନଦେଖିଲେ ଗବାକ୍ଷ ମାର୍ଗରେ ଗୃହୁଁ ଥାଉ ମୋତେ ଆସିରେ
କ୍ଷପାକର ମୁଖି ! ରଜନୀ ଦିବସେ ମୋ କଥାରେ ଥାଉ ରସିରେ
ଅଭିନ୍ନା !
କ୍ଷିତି ମଧ୍ୟେ ମୁହିଁ ସାରରେ
କ୍ଷେମେ କହେ ବିପ୍ର ଦାଶରଥି ଦାସ
ତୋତେ ତୁହି ପଟାନ୍ତର ରେ । ୩୪ ।



# ଅନୁରାଗ ରତ୍ନାକର ଚଉତିଶା

( ରାଗ—କାଳି )

କାଳିନ୍ଦୀକୂଳେ କଦମ୍ବମୂଳେ କୃଷ୍ଣ ରାଧାଙ୍କୁ ଦେଖି
କୃପା ସରାଗେ କହନ୍ତ ଅଟଗେ ହେ ଚନ୍ଦ୍ରଜିତ ମୁଖି !
କ ବୋଲି ତତେ ବୋଲିବ ମତେ ଏ କଥା କହୁକନା
ବାଳକ ଏହି ସଂଶୟ ବହି ହେଲି ଚଞ୍ଚଳମନା ॥ ୧ ॥

ଖୋଜ ଯେବେହେଁ ବୋଲିବ ସେ ନୁହେ ତୁ ମୋର ଫୁଲଗଭା,
ଖାଞ୍ଜନକତ— ନେବି ! ତେବେ ତ ଥୋକାଏ କାଳ ଶୋଭା ।
ଖଟେର ଖସାଇ ପକାଇ ଦେଇ ଅଣ ଆଦର କରି
ଖୀଣ ଉଦରି! କନକ ଗୋରି ! ଏହି କଥାକୁ ଡ଼ରି ॥ ୨ ॥

ଗଳାରହାର ବୋଇଲେ ହାର ପଦେ ରହିଲି କଥା
ଗୁଣ ଗଉରି ! ହୃଦୟହାରି ! ହୃଦେ ଦିଅଇ ବ୍ୟଥା ।
ଗୁଣି ଗୁଣିବା ବୋଲିବ ମୋର ଗନ୍ଧତିଳକ ତୁହି
ଗଲି ସେ ଭାବ ତିଳକେ ଯହୁଁ ତିଳକେ ଅଛୁ କାହିଁ ॥ ୩ ॥

ଘେନାଘେନରେ ବୋଲିବ ଘନ- ସାର ଚନ୍ଦନ ମୋର
ଘଡ଼କେ ଶୁଖି ଗୁଡ଼ପଡ଼ ସେ ଅଙ୍ଗରୁ ହୋଏ ଦୂର
ଘୃଣାକ୍ଷରକେ ଅନ୍ତର ନୋହି ମହାସୁଖକୁ ଦେବ,
ଘନଜଘନା ! ଘଟଣସ୍ତନା ! କହ ମତେ ଏ ଭାବ ॥ ୪ ॥

ନେତ୍ର ପ୍ରତିମା ବୋଲି ବୋଇଲେ ସହଜେ ନେତ୍ରସାର
ନିର୍ମଳକରି ସକଳ ଦେଖି ସବୁରି ମନୋହର
ନୋହଇ ଆଦ- ରଣ ବର୍ଷନେ ନିଜ ଦର୍ଶନ ସୁଖ
ନବକିଶୋରି ! କନକଗୋରି ! ଏହିତ ବଡ଼ ଦୁଃଖ ॥ ୫ ॥

ଚତୁରୀମଣି ! ପରାଣମଣି ବୋଲିବା ଅଭ୍ୟାସଇ
ଚିତ୍ତରେ ଅସି ସଂଶୟ ବସି ପୁଣି ତା ବିନାଶଇ ।
ଚୂରିପଦର ବନ୍ଧହାର ହେବାର ଗୃରିଯୁଗ
ଚଣ୍ଡାଳବହି କରି ଯେ ନାହିଁ କ୍ଷଣେ ହେବା ବିଯୋଗ ॥୬॥

ଛୁଡ଼ ତୋ ସଙ୍ଗ    ଯେବେ ଏ ଅଙ୍ଗ    ରହଇ ହୋଇ ଭିନ୍ନ
ଛନ୍ଦେ କେମନ୍ତେ    ବୋଲିବ ପ୍ରିୟେ    ମୁଁ ମୀନ ତୁ ଜୀବନ ?
ଛିଦ୍ରଦରଶୀ-    ମାନେ ଯେ ହସି    ଉଡ଼ାଇଦେବେ ଆଗ
ଛୁଟିଯାଉରୁ    ଅଧିକ ହୋଇ    ବାଧେ ତାହାଙ୍କ ବାଗ ॥ ୭ ॥

ଯେବେ ତଟିଏ    ତର ତରଣୀ-    ଠାରେ ନୁହନ୍ତା ହେଲା
ଜଗମୋହନ !    ତେବେ ବୋଲନ୍ତୁ    ମଦନ ନର୍ଦ୍ଦ ଭେଲା ।
ଯତନକର    ଯେବେ ବୋଲିବ    ଦବ୍ୟହଂସୁଲୀ ତୁଳୀ
ଯୁବତୀ-ରତ୍ନ !    ସେ କୋମଳକୁ    ତୋହ ଶ୍ରୀଅଙ୍ଗ ବଳି ॥ ୮ ॥

ଝଷକେତନ    କେଳିରତନ-    ଭଣ୍ଡାର ଅବା କେତେ
ଝଲଗଉର !    ଝଟାହକର    ତୁ ଦେଉ ଯେତେ ଯେତେ
ଝୀନବସନା    ବଚନଘେନା    ମହା ପୃଥୁଳସ୍ତନା
ଝାସି ଅନେକ-    ବାର ସାଗରେ    ତୋତେ ପାଇଛୁ ସିନା ॥ ୯ ॥

ଞଧନ ଧନ    ବୋଇଲେ ମନ    ଘେନଇ ଆନବାଟେ
ନେଇ ଝକବା    ଦେହ ରଖିବା    ଝଗୃରେ ସ୍ନେହ ତୁଟେ
ନୋହିଲେ ଅବା    ବୋଲିବ କାମ-    ଧ୍ୱଜ ଜୟପତାକା
ଞ୍ଝଟେ ଡ଼ଙ୍କେ    ପଛକୁ ପଡ଼େ    ହୁଅଇ ଏହି ଦକା ॥ ୧୦ ॥

ଟଙ୍କଧରଙ୍କ-    ବଇରି ଟୋପ-    ନଶ୍ରେଣୀ ଲକ୍ଷଦେଲେ
ଟାଣଦାରୁଟେ    ନିର୍ମାଣ ସେହି    ଯେତେ ଯତନ ହେଲେ
ଟେକେ ତୋ ଟେକ    ଟେକିଲେ କମ୍ପା    ଟିକାଏ ହେବ ଶେଷ
ଟାହି ନୋହଇ    ନତମ୍ବବନ୍ତ !    ମହେଶଙ୍କୁ ଅଶେଷ ॥ ୧୧ ॥

ଠଣ ମଧ୍ୟମା !    ସୁନ୍ଦର ସୀମା !    ତୋହୋ ପଟ୍ଟାଏ ତୁହି
ଠାଠିକକର    କହିବସିଲେ    ତୋତେ ସମାନ କାହିଁ ?
ଠାବ ନ କଲି    ମନ ମୋହୋର    ତିନି ଭୁବନ ଖୋଜି
ଠିକେ ତା କେତେ    କହିବ ଦୀନ-    କୃଷ୍ଣ ମାନସେ ହେଜ ॥ ୧୨ ॥

ଡ଼ାକ ବୋଲିବ    ତୁ ମୋ ମାନସ-    ମାନସ ରାଜହଂସୀ
ଡୋଳାଇ ତାହା    ସେହି ଅବମ-    ସତେ ବାହରେ ଆସି !
ଡ଼ାଳିମ୍ବ-ବୀଜ ଜିତ-    ଦଶନ ! ତେବେ    ଅନ୍ତରେ ହେଲି
ଡ଼ମ୍ବରୁ ମଧ୍ୟ    ବୋଇଲି କଥା    ବିଅର୍ଥ ହୋଇଗଲି ॥ ୧୩ ॥

ଡ଼ମ କହିବା    ମନ ମୋହିବା    ଏ ଅବା କଉଁ ଭଲ
ଡ଼ାଳେ ହେ ପ୍ରେମ    ଲେଭେ ଛଦ୍ମ    ବୋଲ ତରଙ୍ଗ ତୁଲ ।
ଢାଙ୍କୁଣି ଫେଇ    ଫଣୀ ଖେଳଇ    ଗୀତ ଗାଇଲା ପ୍ରାପ୍ତେ
ଢଗ ଢମାଳ    କପଟ କେଳ    ପଛେ ଦହଇ କାପ୍ତେ । ୧୪ ।

ଆରତ ବୋଲ    ଅନଙ୍ଗ ଗେଲ    ଥପ୍ସେ ନୋହଇ ସଖି !
ଅଧଇର୍ଯ୍ୟରେ    ଅନୁରାଗରେ    ସମସ୍ତ ହୋଏ ଲେଖି
ଏବେ ବୋଇଲା    ମୁଁ ମତ୍ତ ଫୁଲ-    ଲଟ ତୁ ଫୁଲ୍ଲ ଫୁଲ
ଅରବିନ୍ଦରୁ    କୁଟଜ ଯାଏ    ଅଟର ଚୁମ୍ବ ଗେଲ । ୧୫ ।

ତପନ ଇନ୍ଦୁ    ପ୍ରୀତି ଛଦ୍ମ    ପ୍ରାପ୍ତେ ଲାଗିଲା ମୋତେ
ତୋଷ୍ଠରୁ ଆର୍ତ୍ତି    ହେଲେ ଦହନ    କରଇ କର ଘାତ
ତାହାର ନାହିଁ    ଠାରେ ହେ ଯାହା    ତାହା କହିବ କେତେ
ତୃଷ୍ଣା ବୃଦ୍ଧିରେ    ରାବ ଦବାରେ    ମଧୁପ ଘେନ ମୋତେ । ୧୬ ।

ଥୟ ନୋହଇ    ଚନ୍ଦ୍ରମା କର-    ଭାବର ଘେନାଘେନ
ଥାଇ ଏ ଜନେ    ସେ-ଖ-ମଣ୍ଡଳେ    ହୃଦରେ ତାର ଘେନ
ଥାପନ୍ତ କବି-    ମାନେ ଏଥିକି    ଏ ପ୍ରୀତି ଏତେ କରି
ଥଳ ନପାଇଁ    ଜଳେ କି ଜଳ-    ଫେନ ଧଇଲେ ତରି ? । ୧୭ ।

ଦେହ ପୁଲକ    କେତେ ପୁଲକ    ଅନ୍ତର କରି ମଣି
ଦେଇକି ଲକ୍ଷ    ଥିଲେ ଦି ଲକ୍ଷ    ଅନ୍ତର କଥା ଆଣି
ଦର୍ଶନ ସୁଖ    ଶରୀର ଦୁଃଖ    ସୁଖକୁ ହୋଏ ହେତୁ
ଦୂରେ ଅଦୂରେ    ମଦନ ଶରେ    ଅଛୁଟି ଏଥି ହେତୁ । ୧୮ ।

ଧଇର୍ଯ୍ୟ ନିଧି !    ମଦନ ବ୍ୟାଧି    ଔଷଧି ଲେଖା କଲେ
ଧବଳ କର    କରେ ତାହାର    ପ୍ରଭା ବଢ଼ଇ ଭଲେ
ଧୃତ-ଧ୍ୱଂସିନି    ବୋଲିବି-ତୁମେ    ହୃଦରେ ଦିବ୍ୟ ବାଞ୍ଛା
ଧୀର ବଚନ ।    ବଚନ ସଙ୍ଗେ    ତୁଳିଲେ ଅତି ଊଣା । ୧୯ ।

ନିରନ୍ତରେ ହେ    ତୁ ମୋତେ ସ୍ନେହେ    ଦିବ କରାଉ ଯହୁଁ
ନିଷ୍ଟେ ମୁଁ ଚନ୍ଦ୍ର-    ମଣି ତୁ ଚନ୍ଦ୍ର    ବୋଲି ବୋଲିବି କାହୁଁ
ନିଶାରେ ବଧୁ    କରି ସେ ବଧୁ-    ମଣି ଆର୍ଦ୍ର କରେ
ନବ ତରୁଣୀ ।    ରମଣୀ ମଣି ।    ତୁ ନିଶି ଦିବସରେ । ୨୦ ।

ପଦ୍ମବାସି ! ପୀୟୂଷ ହାସି ! ପରମ ସୁଖରାଶି
ପଡ଼ିଲି ମୋତେ ପ୍ରମାଦ ତୋତେ ଡ଼ାକିବା କଥା ଆସି
ପୀତ-ବସନା ! ପୀନ ଜଘନା ! ପୀନର ସ୍ତନା ତୋତେ
ପିକବଚନା ବୋଲିବାକୁ ତ ଲାଜ ମାଡ଼ିଲି ମୋତେ । ୨୧ ।

ଫଳ ସମୟେ ତାର ଉଦୟେ ପଟ୍ୟୋଦ କାଟିଲି ହାତ
ଫେଡ଼ିବା କେତେ କହିବ ଯେତେ ଅବଗୁଣୀରେ ଖ୍ୟାତ ?
ସ୍ଫୁଟ ରହିତ ଅବଲମ୍ବିତ ବିରହୀ ଦୁଃଖ ଦାମୀ
ଫଳିତ ଏହି ପୁଣି ଉଠଇ ପଞ୍ଚ ପ୍ରାଣକୁ ଘେନି ! ୨୨ ।

ବିବେକ ଉଣା ହୋଇବ ସିଣା- ବଚନ ବୋଲିବାରେ
ବେଭାରେ ରାଗ ଘେନଲେ ରାଗ ହୁଅଇ ତାହା ଠାରେ
ବର୍ଣ୍ଣି ଉଚ୍ଚାର ପ୍ରେମ ସଞ୍ଚାର ବିଗ୍ରହ ତାର ନାହିଁ
ବାଜଇ କର- ରୁହ ପ୍ରହାର ପାଇଲେ ପୁଣି ସେହି । ୨୩ ।

ଭ୍ରୂଭଙ୍ଗୀ ଲୀଳା କଟାକ୍ଷ ମାଳା ଚନ୍ଦ୍ରରେ ନୋହେ ଦେଖି
ଭାବରେ ଦେନ ଡ଼ାକନ୍ତି ଧନ ! ପୂର୍ଣ୍ଣ ଚନ୍ଦ୍ରମା ମୁଖୀ !
ଭଜଇ କ୍ଷୀଣ ମୃଗ ଲକ୍ଷଣ ଦିବସେ ପାଣ୍ଡୁ ଭାବ
ଭାଷା କହିବା ମନ ମୋହିବା ଭାଗ୍ୟ କେ ତାକୁ ଦେବ ? । ୨୪ ,

ମୃଗ ଖଞ୍ଜନ ଚକୋର-ମୀନ— ନେତ୍ରୀ ବୋଲିବା କଥା
ମୋହୋ ମନକୁ ଆସଇ ନାହିଁ ହୁଅଇ ମହା ବ୍ୟଥା
ମଦନ ମଦେ ମାଡ଼ ତୁ ଯେତେ ବେଳେ ଘୁମାଇ ଗୁହୁଁ
ମହେଶ ଦମ୍ଭ ମହା ଆରମ୍ଭ ଲେଶେ ରହିବ କାହୁଁ ? । ୨୫ ।

ଯୋଗୀନ୍ଦ୍ର ମାନେ ଯୋଗ ଆସନେ ନିଷ୍ଠେ ଥିବେ ବସି
ଯେବେ ତୁ ହେଲେ ଗୁହିଁକୁ ଡୋଳେ ମଧୁର ମନ୍ଦ ହସି
ଯିବ ତରଳି ଅଙ୍ଗ ଆବଳି ଅନଳ ଜଉ ପ୍ରାୟେ
ଯିବ କି ଜୟେ କେବେ ହେଁ ଲୟେ ଜୀବନ ଥିବା ଯାଏ । ୨୬ ।

ରୋଲମ୍ବ ବୃନ୍ଦେ ବଧୂଳୀ ବନ୍ଦେ ପତଙ୍ଗ ଚଞ୍ଚୁ ଲାଗେ
ରଙ୍ଗର ଭଙ୍ଗ ହୋଏ ପତଙ୍ଗ ଦିବସ ମଧ୍ୟ ଭାଗେ
ରତନ ମଧେ ପ୍ରବାଳ ପଦ୍ମ ରାଗ ମାଣିକ୍ୟ ଲେଖି
ରଙ୍ଗ ଅଧର ପ୍ରାୟେ ତୋହର ଶୋଭା କାହିଁ ନ ଦେଖି । ୨୭ ।

ଲକ୍ଷ୍ୟହିଁ ଅବା  କି କରି ଦେବା  ବିବେକ ଦୂର କରି
ଲକ୍ଷଣବନ୍ତ  ହୋଇ ଅମୃତ  ଅଛୁ ତହିଁରେ ପରି
ଲୋଡ଼େ ମୋ ବୁଦ୍ଧି  ଲାବଣ୍ୟ ନିଧି  ସିଦ୍ଧି କରିବ କାହିଁ
ଲୋକ ପାଳକ  ବେଳୁଁ ଏତକ  ବିଗୁରି କରି ନାହିଁ । ୨୮ ।

ବଲ୍ଲଭ ! ତୋର  ବିନୁ କର୍ପୂର  ଚନ୍ଦନ ଆଦି ଯେତେ
ବିଷ ପରାୟେ  ପରତେ ହୋଏ  ଆଉ କହିବି କେତେ
ବଡ଼ ସମ୍ପତ୍ତି  ଥିଲେ ନୃପତି  ଅଭାବେ କିଛି ନୋହେ
ବିଷ୍ଣୁ ଭଗତ  ବିନୁ ଅଗତି  ଲୋକ କେବେହେଁ ଶୋହେ ?

ଶ୍ରୀହରି ବାଣୀ  ଶୁଣି ରମଣୀ-  ମଣି ବୋଇଲେ ହସି
ସରାଗ ଚିତ୍ତେ  ଡାକିବ ମୋତେ  ଆସ ଗୋ ରାଧା ଦାସି !
ଶ୍ରୀକର ଧରି  ମାଗୁଛି ହରି  ଏତେକ ଆଜ୍ଞା ଦେବ
ଶ୍ୟାମ ସୁନ୍ଦର  ତୁମ୍ଭ ପୟର  ସେବାରେ ଦିନ ଯିବ । ୩୦ ।

ସହସ୍ର କର  କରି ଅମର  ଗିରି ଛୁଇଁଲା ପ୍ରାୟେ
ଶ୍ରୀମୁଖୁ ମୋର  ନେଇ ଅନ୍ତର  ନୋହିବ ଥିବା ଯାଏ
ସବୁରି ମୁଖେ  ବୋଲିବେ ସୁଖେ  ରାଧା ଶ୍ରୀକୃଷ୍ଣ ଏକ
ଶ୍ରୀ ବୃନ୍ଦାବନ-  ମୃଗ ରାଜନ !  ଲୋଡ଼ା ମୋ ଏହି ଟେକ । ୩୧ ।

ଶ୍ରୀମୁଖେ ଯେତେ  କହିଲ ମୋତେ  କରୁଣାମୟ ବୋଲି
ସବୁ ପ୍ରକାରେ  ଏ ମହିମାରେ  ସହଜେ ବଡ଼ ହେଲି
ସାମନ୍ତ ଘେନା  ଘେନି ଭାବନା  ସହଜେ ଏହି ମତି
ସାର ରତନ  କେବେହେଁ ଆନ  କରେ ଝଟକ ଜ୍ୟୋତି । ୩୨ ।

ହରଷ ଭରେ  ପ୍ରେମ ବଶରେ  ରାଧା ମାଧବ ବେନି
ହସିଲେ ନିଶି  ପଲଙ୍କେ ବସି  କହି ଏ ଘେନାଘେନି
ହୃଦସାରସ  କରି ବିକାଶ  ନିତ୍ୟ କର୍ମକୁ ଗଲେ
ହରି ଦିଗରେ  ହଂସ ରଥରେ  ବସି ବିଜୟ କଲେ । ୩୩ ।

କ୍ଷମା ସାଗର  ନାଗର ବର  ନନ୍ଦନନ୍ଦନ ଲୀଳା
କ୍ଷଣକ ମନେ  ହେ ସାଧୁ ଜନେ  କଣ୍ଠରେ କର ମାଳା
କ୍ଷଣେ ଅନ୍ତର  ନକର କର  ଧରି କହୁଛି ଏତେ
କ୍ଷାର ପାମର  ଦୀନକୃଷ୍ଣର  ଭାବନା ଅବିରତେ । ୩୪ ।

—*—

# ରସକୁଲ୍ୟା ଚଉତିଶା

କହଇ ଗ୍ରାହ୍ମ ସଖୀ ଦୂତିକାକୁ
କଦମ୍ବ ମୂଳେ ଦେଖିଲି କୃଷ୍ଣଙ୍କୁ
କଳାକଳେବର ରଙ୍ଗା ଅଧର
କପାଳେ କସ୍ତୁରୀ ଚିତା ସୁନ୍ଦର ସେ,
କୁବଳୟା ଫଳ ନାସେ ଯେ
କାମ ବିକାର କଳିକ ପ୍ରାଣବନ୍ଧୁ
ଦେଖି ସୁଧାନନ୍ଦ ହାସେ ଯେ । ୧ ।

ଖୋସିଛୁ ଶିରେ ମୟୂର ଶିଖଣ୍ଡ
ଖଣ୍ଡ ସଘନରେ ଶଙ୍ଖ କୋଦଣ୍ଡ
ଖଞ୍ଜି ଅଲଙ୍କାର ଗୁଞ୍ଜରୀ ମାଳ
ଖଞ୍ଜି ପୁଞ୍ଜି ପୁଞ୍ଜି କାଇଁଚ ମାଳ ସେ
ଖିଲ ବ୍ରହ୍ମାଣ୍ଡ ଠାକୁର ଗୋ
କ୍ଷୀଣ ନୟନ ଅପାଙ୍ଗ ଶରେ ତନୁ
ଖଣ୍ଡ ଖଣ୍ଡ କଲା ମୋର ଗୋ । ୨ ।

ଗଣ୍ଡସ୍ଥଳେ ଲୁଲେ କୁଣ୍ଡଳ ବେନି
ଗ୍ୟାନ ଧ୍ୱଂସ ହୋଏ ଦେଖି ସଜନ ।
ଗୋବନ୍ଧ ଗଳାରେ ପ୍ରବାଳ କଣ୍ଠି
ଗୋପସୁତ ସଙ୍ଗେ କରିଛି ଗୋଷ୍ଠି ସେ
ଗଜ ମୁକୁତାର ହାର ଗୋ
ଗଳାରୁ ଜାନୁ ପରିଯନ୍ତେ ଲମ୍ବଇ
ବନ କୁସୁମର ମାଳ ଗୋ । ୩ ।

ଘଟଣ ସୁନ୍ଦର ତ୍ରିଭଙ୍ଗୀ ଅଙ୍ଗ
ଘନ ଘନ ବଂଶୀ ବାବେ ଶ୍ରୀରଙ୍ଗ
ଘୋଟିଲା ଅନ୍ତରେ ଅନଙ୍ଗ ଜ୍ୱର
ଘୂମାଇ ଘାରିଲା ମୋର ଶରୀର ସେ
ଘାଉକଲା ରତିବର ଯେ
ଘାଉଆ ହରିଣୀ ପ୍ରାୟେ ମୁଁ ହୋଇଲି
ଶୁଣି ତା ବେଣୁ ସୁସର ଯେ । ୪ ।

ନୟନେ ତା ରୂପ ଦେଖିଲ ଯାହା
ନ ପାରଇ କହି ବଚନେ ତାହା
ନ ରୁଚଇ ମୋତେ ସଦନ ସୁଖ
ନ ଦେଖି ଦେଖିଲି କଳା ଶ୍ରୀମୁଖ ସେ
ନିବେଦନା ମୋର ଘେନ ଗୋ
ନଟେଁ ପ୍ରାଣବନ୍ଧୁ ନେଇ ମୋତେ ରଖ
ଆଜ ହୁଁ ତୋର ଅଭିନ୍ନ ଗୋ ! ୫ ।

ଚଳ ସହଚରି ! ଗୃନ୍ଦ ଚହଟ !
ଚଉବର୍ଗ ଦାମ୍ଭୀ ମାପ ନିକଟ
ଚଞ୍ଚଳା ପତିଙ୍କ ପାଶେ ଜଣାଇଁ
ଗୃନ୍ଦେ ଘେନିଆ ପହନ୍ତେ ମଣାଇ ସେ
ଚତୁରାନନ ଯା ଦାସ ଗୋ
ଚନ୍ଦ୍ର ଶେଖର ପଲକ ନଟଳଇ
ଗୃହିଁ ଚନ୍ଦ୍ରଧର ବେଶ ଗୋ । ୬ ।

କ୍ଷୀନ ଉଦର କ୍ଷୀନ ରୋମାବଳୀ
ଛନ୍ନ ହୋଇବେ ଦେଖି ସୁରବାଳୀ
ଗୁଡ଼ିବେ ପତି ସୁତ ଗୃହ ବାସ
କ୍ଷଣେ ନ ଗୁଡ଼ିବେ ଶ୍ରୀକୃଷ୍ଣ ପାଶ ସେ
ଛଟକେ ତା ରୂପ ଦେଖି ଯେ
ଗୁର କୁଳକ୍ଷଣୀ ଗୁଡ଼ ମୁଁ ଅଇଲି
ଦୋଷ କ୍ଷମା କର ସଖି ଗୋ । ୭ ।

ଜମ୍ବୁନଦ ଜଣି ପୀତବସନ
ଦାମିନୀ ଜଳଦେ ଦିଶେ ଯେସନ
ଜଡ଼ିତ ବେନି ଫରହର ଉରେ
ଯୋଗୀନ୍ଦ୍ର ବୃନ୍ଦ ଦେଖି ଯୋଗ ଗୁଡ଼େ ସେ
ଯଉଁ ଶୋଭା ଜଗବନ୍ଧୁ ଯେ
ଯୁବତୀ ଜୀବନ କେତେକ ମାତର
ଦେଇ ରଖ କୃପାସିନ୍ଧୁ ଯେ । ୮ ।

ଝିମଣକେ ଦୃଷ୍ଟି ତହୁଁ ଚଳିଲା
ଝାଡକାରେ କୁଞ୍ଜବନେ ମିଳିଲା

ଝସ କେତନର ପିଅର ପାଶ
ଝଗଡ଼ କହଇ ରାଧା ସନ୍ଦେଶ ସେ
ଝରୁଅଛି ପ୍ରାଣ ସାହା ଯେ
ଝିନ ପତମା ତା          ପାଷାଣରୁ ଗରୁ ଯେ
ଝଡ଼ ପଡ଼େ ବେଦନା ବାହା ଯେ । ୯ ।

ନୟନରେ ନୀର ନ ରହେ ତାର
ନିରନ୍ତରେ ନାମ ଜପଇ ତୋର
ନ ରୁଚଇ ଅନ୍ନ ନ ମାଡ଼େ ନିଦ
ନତନୁର ଶରେ ଲଫୁ ଯେ
ନିଚେଁ ତିଆ ହତ୍ୟା          ଦୋଷକୁ ପାଇବୁ
ନାରୀ ଶିରୋମଣି ମଲେ ଯେ । ୧୦ ।

ଟାହି ପରାପ୍ତେ ନମଣ କହ୍ନାଇଁ
ଟାକ ବସିଥିବେ ତୋତେ ଅନାଇଁ
ଟଳି ପଡ଼ିବାକୁ ଅଛି କେବଳ
ଟାଣ ମନସିଜରାଜ ପ୍ରବଳ ଯେ
ଟାଣି ବନ୍ଧେ ପଞ୍ଚବାଣ ଯେ
ଟିକାଏ ଓଟପ୍ରାଧ          ନାହିଁନା ତାହାର
କରୁଅଛି ରଣଭଣ ଯେ । ୧୧ ।

ଠାକୁରେ ଜାଣିଲେ ରାଧା ସନ୍ଦେଶ
ଠିକ କହୁଛନ୍ତି ଦୂତିକା ପାଶ
ଠିକ ଦେହୁ ଆମ୍ଭେ ବାହୁଡ ଯୋଇ
ଠିକ କଥା କି କେ କହୁ ଦୂତାଇ ଯେ
ଠାକୁରାଣୀ ପଣେ ବଡ଼ ସେ
ଠାକୁର ଭିଖ-          ଘାନୁଙ୍କ କେମା ଦେଈ
ଆମ୍ଭେ ଜାଣୁ ଶିଶୁ ଖେଳ ଯେ । ୧୨ ।

ଡ଼ରଇ କେତେ କହୁ ବନମାଳୀ
ଡ଼େଇଁ କାଳନ୍ଦୀରେ ମର୍ଦ୍ଦିଲୁ କାଳୀ

ଡ଼ଂଶିଲ ଅଙ୍ଗେ ଭୁ ନାଶ
ଡ଼ରାଇ କହୁ ମୁଁ ବାଳୁତ ଶିଷ ଯେ
ଡ଼ରିଲୁ ନାହିଁ ଇନ୍ଦ୍ରକୁ ହେ
ଡ଼ୋଳେ ଦେଖିଲୁ ଗିରିବର ଧରଣ
ରଖିଲୁ ଗୋପବୃନ୍ଦକୁ ଯେ । ୧୩ ।

ଡ଼ମପରା ଏବେ ନ ମଣ ତାଳେ
ଡ଼ଳ ପଡ଼ିବ ଜାବ ଯିବାବେଳେ
ଡ଼ୋକବ ଯେବେ ତୋ ଅଧରୁ ସୁଧା
ଢ଼ଳ ନ ପଡ଼ିବ ଜାଇବ ରାଧା ସେ
ଡ଼ାଳେ ହୋଇଅଛୁ ଦୁଖୀ ହେ
ଢ଼ଳଢ଼ଳ ସୁଧା ତୋତହୁଁ ପିଇଲେ
ଜାଇବ ସେ ଚନ୍ଦ୍ରମୁଖୀ ଯେ । ୧୪ ।

ଅଣହେଳା ଏବେ ନକର ହରି !
ଏଣୀ ନୟନୀ ନଶ୍ୱେ ଯିବ ମରି
ଅଣ ଅପରାଧୀ ରାଧିକା ସଖୀ
ଅନଙ୍ଗ ବାଣ ବାରେ କର ଶାହ୍ମ ସେ
ଅଣ ମନୁଷ୍ୟ ରମଣୀ ହେ
ଅମୂଲ୍ୟ ପିତୁଳୀ ସୁଖେ ଭୋଗ କର
ଆଣିଦେବ ଏହ୍ୱକ୍ଷଣି ହେ । ୧୫ ।

ତ୍ମମ୍ଭେ ଯେବେ ନଶ୍ୱେ ନଯିବ ହରି
ତମିର ଅର୍ଦ୍ଧ ଆଣିମି ସୁନ୍ଦରୀ
ତୋଷ ହୋଇ ଆଜ୍ଞା ଦିଅ ଶ୍ରୀରଙ୍ଗ
ନିସ୍ପୃତ ହୋଇ ଲଭ ସଖୀ ସଙ୍ଗ
ତ୍ମରତେ ଆସିବ ତେବେ ଯେ
ନିଲ୍ଲୋଚନ ଶମ୍ଭୁ- ତାପକୁ ନ ଡରି
ତୋ ତନୁ ଲଭିବ ଯେବେ ଯେ । ୧୭ ।

ଥିରେଣ ହରି କହେ ମନ୍ଦ ହସି
ଥିବୁଁ ଆମ୍ଭେ କୁଞ୍ଜ କୁଟୀରେ ବସି
ଥିବେ କେହି ନାହିଁ ତାଙ୍କ ସଙ୍ଗରେ
ଥାଇଯୋଦନଆସ ବଶୀ ଅର୍ଦ୍ଧରେ ସେ

ଥିବୁ ପରିଜନ ଜାଗି ଗୋ
ଥାଇ ତୁ ନିଶି ଅର୍ଦ୍ଧେ ଘେନି ଆସିବୁ
ଶୋଇଲେ ସେ ନିଦ ଭାଗି ଯେ । ୧୭ ।

ଦୟାନିଧି ବାଣୀ ଶୁଣି ଦୂତିକା
ଦହକମ୍ନନଦ ତହୁଁ ଅଧିକା
ଦୁଃଖ ଜାଣି ସଖୀ ବେଗେ ଅଇଲା
ଦ୍ୱିରଦଗମନୀ ପାଶେ ମିଳିଲା ସେ
ଦେଖିଣ ଦୂତିକା ମୁଖ ଯେ
ଦିଗମ୍ବର ରିପୁ ତା ପଛୁ ନ ଡ଼ର
ଲଭିଲା ପରମ ସୁଖ ଯେ । ୧୮ ।

ଧରି ଚରଣ ପଚ୍ଚୁରଇ ରାଧା
ଧରଣୀଧର କି ବୋଇଲେ ସହି !
ଧ୍ରୁବ କରି କହ ସତ୍ୟ ବଚନ
ଧ୍ରୁବ ଆସିବେ କି ପଦ୍ମନୟନ ସେ
ଧୀରେ କହେ ସହଚରି ! ଯେ
ଧରଣୀଧରଙ୍କ ଯେତେ କଥାମାନ
କହିଲା ବହୁତ କରି ଯେ । ୧୯ ।

ନ ଜାଣୁ ଆମ୍ଭେ ସୁରତର ଭାବ
ନାଚ ଖେଳ ଜାଣୁ ଶିଶୁ ସ୍ୱଭାବ
ନାନା ପ୍ରକାର ମଣାଇଁ କହିଲି
ନିଷ୍ଟେ ସିଉକାର କର ବୋଇଲି ସେ
ନ ଆସିବେ ତୁମ୍ଭ କନ୍ତ ଗୋ
ନିଶି ଅର୍ଦ୍ଧେ ଘେନି ଯିବି ମୁଁ ତୁମ୍ଭଙ୍କୁ
କୁଞ୍ଜେ ଥିବେ ଶିଖିପତି ଗୋ । ୨୦ ।

ପୁଲକିଲା ତନୁ ଶୁଣି ଏ ବାଣୀ
ପ୍ରସନ୍ନ ମୁଖ ବଢସ ନଳିନୀ
ପ୍ରାପତ ନିଧିକି ଦରିଦ୍ର ହସ୍ତ
ପଦ୍ମବନେ କି ଉଦେ ଦିନନାଥ
ପଚ୍ଚୁରଇ ନିଶି କେତେ ଗୋ
ପାଶ ପରିଜନ ନିଦ୍ରାଗଲେ ସଖି
ସଜ କରାଇବୁ ମୋତେ ଗୋ । ୨୧ ।

ଫଗୁଣ ହୋଇ ମାଳ ପାଟେ ପିନ୍ଧ
ଫେଡ଼ି କବରୀ ଆନ କରି ବାନ୍ଧ
ଫାଇ ଅଲଙ୍କାର ଅଙ୍ଗେ ଭୂଷଣ
ଫୁଲ ଚନ୍ଦନ କର୍ପୂର ଖଞ୍ଜିଣ ସେ
ଫାଇ କୁଙ୍କୁମ ଲେପନ ଯେ
ଫୁଲ-ଧନୁଶର ରାଜା ସଙ୍ଗେ ଆଜ
ହୋଇବ ସୁରତ ରଣ ଯେ । ୨୨ ।

ବେଳ ଜାଣି ବେନି ସଖୀ ବାହାର
ବେଭାରେ ରଜନୀ ଅର୍ଦ୍ଧ ଅନ୍ଧାର
ବୃନ୍ଦାବନେ ବେଗେ ପ୍ରବେଶ ହୋଇ
ବନମାଳୀ ବନ ମାଳାଏ ନାଇ ଯେ
ବାଟ ଗୃହୁଁ ଛନ୍ତି ବସି ଯେ
ବଧୂବଦନୀକି ନିକଟେ ଦେଖିଣ
ମନ୍ଦ ମନ୍ଦ ହୋଇ ହସି ଯେ । ୨୩ ।

ଭେଟ ହୋଇଲେ ସେ ରାଧାମାଧବ
ଭଲ ବଳିଲା ଖେଦ ନାଦଭାବ
ଭୋଗିଲା ଭୃଙ୍ଗ ଭେଟିଲା ମାଳତୀ
ଭେଟେ ଭେଳକୀ ଲାଗିଲା ଦୁହିଁଙ୍କି ଯେ
ଭେଟାଇ ଦୁଷ୍ଟ ଅନ୍ତର ଯେ
ଭୋଗ ସଂଯୋଗେ ଭୋଗ ଅନୁସରଣ
ଭିଡ଼ିଲେ ଜଗୁ ସୋଦର ଯେ । ୨୪ ।

ମାଧବ ଅଙ୍ଗ ମରକତ ଗିରି
ମୃଦୁଳ ହେମ-ଲତିକା ଈଶ୍ୱରୀ
ମତ୍ତ କି ଶିଖଣ୍ଡୀ କୋଡ଼େ ହରିଣୀ
ମନ୍ଥେ ମତ୍ତଗଜ ବନ ନଳିନୀ ଯେ
ମହା ନନ୍ଦ ଚଉଷଠୀ ଯେ
ମଦନ ରାଜାର ମହା ବନ୍ଧ ତୋପେ
ପଡ଼ି ନପାରନ୍ତି ଉଠି ଯେ । ୨୫ ।

ଯୁବତୀ ରତନ ଜାଣେ ସିହାଣି
ଜାଣେ ରତି ରସ ନାଗର ରଙ୍ଗେଣ

ଯହୁଁ ରାସରସେ ରାଧା ଅଧିକା
ଜାଣେ ବିପରୀତ ରତି ନାୟିକା ଯେ
ଜଗବନ୍ଧୁ ହୃଦ ପଦ୍ମେ ଯେ
ଯେଉଁ ରତିରସ    ରସେ ରସବତୀ
ଖେଳଇ ଅତି ଉଲ୍ଲସେ ଯେ । ୨୬ ।

ରଙ୍ଗ ଅଧରେ ଚୁମ୍ବନ୍ତ ଅଧର
ରସପୂରିତ ଉରଜ ଭଣ୍ଡାର
ରତ ଉଚ୍ଛୁଳେ ଭୁଜେ ଭିଡ଼ାଭିଡ଼
ରସେ ଜଘନରେ ଜଘନ ଭିଡ଼ି ସେ
ରସ ଅପ୍ରମିତା ହୋଇ ସେ
ରମଣୀବର    ରସିକ ଶିରୋମଣି
ସାକ୍ଷୀ ସଖୀମତା ଦୂର ଯେ । ୨୭ ।

ଲକ୍ଷ୍ମୀ ଲକ୍ଷ୍ମୀଧର ଲଭିଲେ ଭାବ
ଲଜ ନ ପାଇଲେ ଦେବେ ଦୁର୍ଲଭ
ଲସିଲ ତନୁ ନୋହି ଲଗି ଭୁଲି
ଲସି କବରୀ ଉରଜରେ ଲୋଳି ସେ
ଲମ୍ବେ ଶମ୍ଭୁ ଶିରେ ପାଣି ଯେ
ଲକ୍ଷ୍ମୀଧର ଲଖ    ରେଖ ଲଗି ତହୁଁ
ଅର୍ଦ୍ଧ ଶୋହେ ନିଶାମଣି ଯେ । ୨୮ ।

ବନମାଳୀ ବଧୂବଦନ ରସ
ବିଶ୍ରାମିଲେ ଅଙ୍ଗେ ପିନ୍ଧିଲେ ବାସ
ବହୁତ ବିନୋଇ କହଇ ବାମା
ବହୁତ ଅପ୍ରାଧ କରି ମୋ କ୍ଷମା ଯେ
(ମୁଁ) ବହୁ ଭୂଆଷୁଣୀ ସିନା ଯେ
ବଡ଼ ମନ୍ଦ ମୋର    ଶାଶୂ ଯେ ନଣନ୍ଦ
ବାଦେ ଲଗିଥାନ୍ତି କନା ଯେ । ୨୯ ।

ଶ୍ୱାସ ଥିରକରି କହେ ସୁମୁଖୀ
ସ୍ନେହରେ କୋଳେ ଧର ପଦ୍ମ ଆକ୍ଷି
ଶ୍ୟାମ କରେ ଶ୍ୟାମ କବରୀ ସାଜ
ଶ୍ୟାମ କୁସୁମମାଳେ ତନୁ ରାଜ ଯେ

ସୀମନ୍ତେ ମୁକୁତା ଜାଲ ଯେ
ସରୁ ଅଳତା ଆନ କର ଛନ୍ଦଣ
ଭାଲେ ମୃଗମଦ ସାଜ ଯେ । ୩୦ ।

ସୁରତ ଜପୁ ପତ୍ରାବଳୀ ମାନ
ସୁଗନ୍ଧ ଦେଶ କଲେକ ଲେଖନ
ସରୁ ଚୁମ୍ବନ ଦେଇ ଚିବୁକରେ ଯେ
ସୁରଙ୍ଗ ଅଧର କଲା ଯେ
ଶ୍ୟାମ ସୁନ୍ଦର ଚିବୁକେ କର ଦେଇ
ଛଡ଼ାଇଲେ ନନ୍ଦବଳା ଯେ । ୩୧ ।

ଶଯ୍ୟାରେ ଦଶେ ଲଖ କ୍ଷତ ଚିହ୍ନ
ଶାମଳଲେ ଅଙ୍ଗେ ଗୃରୁ ବଦନ
ଶ୍ରବଣେ ଖଞ୍ଜିଲେ ତାଟଙ୍କ ବେନି
ସିନ୍ଦୂ ଫଳମାନ ହୃଦେ ମଣ୍ଡିଣି ଯେ
ଶଯ୍ୟାରେ ତୁ ଅର୍ଦ୍ଧ ଅଙ୍ଗୀ ଗୋ
ସରସଲୋଚନୀ ଦଣ୍ଡେ ନଗୁଡ଼ଇ
ଯୁଗେ ଯୁଗେ ପ୍ରାଣସଙ୍ଗୀଗୋ । ୩୨ ।

ହରିଣନୟନୀ ହରଷ ମନ
ହଂସଗମନୀ କହଇ ବଚନ
ହୋଇଥିବ ତୋ ଠାରେ ପରାଧିନୀ
ହୃଦେ ଜପୁଥିବ ତୋ ଗୁଣ ଗୁଣି ଯେ
(ତୁ) ହୋଇଥିବୁ ମୋତେ ସାହା ଯେ
ହୋଇଥିବ ତୋର ଜନ୍ମେ ଜନ୍ମେ ଦାସୀ
ଆଜ୍ଞା ଦିଅ ଚଉବାହା ହେ । ୩୩ ।

କ୍ଷୀରୋଦଶୀ ବାଣୀ ଶୁଣି ଗୋପାଳ
ଛଛନ୍ଦେ ରାଧା କୃଷ୍ଣ ଗୁଡ଼େ କୋଳ
କ୍ଷଣେ ନ ଗୁଡ଼ଇ ଭୁମ୍ଭ ପିରତି
ଗୁଇ ଯେହ୍ନେ ଥାଇ ବୃକ୍ଷର କତି ଯେ
କ୍ଷେମେ ଯାଅ ନିଜ ପୁର ଯେ
ଗୁର ଦାମୋଦର ଅପରାଧ କ୍ଷମା
କର କରୁଣା ସାଗର ହେ । ୩୪ ।



# ଶ୍ରୀ ରାଧା ବିରହ ଚଉତିଶା

(ରସକୁଲ୍ୟା ବାଣୀ)

କହନ୍ତ ରାଧା ଦୂତୀ କର ଧରି
କୁଞ୍ଜବନକୁ ଯାଅ ସହଚରି ।
କରି ଗଲେ ତନୁ କ୍ଷୀଣ ଆମ୍ଭର
କୃପାସିନ୍ଧୁ ହେଲେ ଗୋପୁ ବାହାର ରେ
କହିବଟି ଦୂତୀ ଯାଇଁ ଗୋ !
କେଉଁ ଦୋଷ ଧରି କମଳଲୋଚନ
କୁଞ୍ଜବନେ ଛନ୍ତି ରହି ଗୋ ॥ ୧ ॥

କ୍ଷଣେ ନ ଦେଖିଲେ ନନ୍ଦନନ୍ଦନ
ଖାଇବୁ ନିଷ୍ଟୟ ମହୁରା ପାନ
କ୍ଷୋଭସାଗରେ ଆମ୍ଭଙ୍କୁ ବସାଇ
ଖଗପତି ନାଥ ଗଲେ କପାଇ ରେ
ଖଣ୍ଡିଲେ ଗୋପ ସମ୍ପଦ ଗୋ !
କ୍ଷଣେ ନ ଦେଖିଲେ ନନ୍ଦର ନନ୍ଦନ
ନୟନେ ନମାଡ଼େ ନିଦ ଗୋ ॥ ୨ ॥

ଗହନ ବନେ ଯେବେ କଲେ ବାସ
ଗୋପାଙ୍ଗନା ନିଷ୍ଟେ ହୋଇଲୁଁ ନାଶ
ଗୁପତ ରଙ୍ଗମାନ ପାସୋରିଲେ
ଗହନ ଗୁଳ୍ମ ଲତା ଆବୋରିଲେ ସେ
ଗଲେ ପଡ଼ି ଧନୁଁ ହରି ଗୋ !
ଗଙ୍ଗାଧର-ରିପୁ ହୃଦୟୁ ଦହଇ
ଅତି ଗରୁ ଠାଣ କରି ଗୋ ॥ ୩ ॥

ଘଟଣ ମୁଖେ ଧଅନ୍ତି ଚୁମ୍ବନ
ଘେନିଗଲେ ଏତେ ପୀରତି ମାନ
ଘନ କୁସୁମ ଶରେ ଗଲେ ମାରି
ଘର ମଣିଲୁ ହୁତାଶନ ସରି ସେ

ଘୋର ହେଉଅଛୁ ଦେଖ ଗୋ !
ଘଡ଼ିଏ ବିଳମ୍ବ ନ କର ଦୂତି ! ତୁ
ଘେନିଆସ ବେଗେ ଯାଇ ଗୋ ॥ ୪ ॥

ଉଚିତ ବଚନ ଶୁଣ ସଜନି !
ଆଣି ଦିଅ ମୋର ପ୍ରାଣର ମଣି
ଅଳସ ନକରି ଚଳ ସଧୀର
ଆଣ ବେଗେ ଯାଇଁ ନନ୍ଦ କୁମର ସେ
ଆସିବେ କି ସତେ ହରି ଗୋ
ଅମ୍ବୁଜ-ଲୋଚନ ଚରଣ ଯୁଗଳେ
ଖଟିଥିବୁ ବ୍ରଜନାରୀ ଗୋ ॥ ୫ ॥

ଚମ୍ପା ବଉଳ ମାଳ ମାନ ଲଭା
ଚନ୍ଦ୍ର ଚୂଳକୁ ପାଉଥାଇ ଶୋଭା
ଚତୁର ନୟନ ସେ ଭାବଗ୍ରାହୀ
ଚତୁରୀ ଚିତ୍ତ ମୋହିଲେ ମଣାଇ ସେ
ଚଣ୍ଡିକର ସୁତାପଞ୍ଚ ଯେ !
ଚାମର ଆଳଟ ଧରି ଚଉପାଶେ
ଢାଳନ୍ତି ବ୍ରଜଯୁବତୀ ଯେ ॥ ୬ ॥

ଛନ୍ଦି ତଗର ବଉଳର ବାଦ୍ୟ
ଛନ୍ଦିଣ ନଯୋଗୀ ଖଟନ୍ତି ସଦ୍ୟ
ଛନ୍ଦି ଖାଲବର ବାନା ଉଡ଼ାଇ
ଛଛନ୍ଦେ ଗୋପରୁ ବାହାର ହୋଇ ସେ
ଗୁଡ଼ିଲେ ଗୋପ ସୁବେଶ ଗୋ
ଛୁଡ଼ି ଭିତରେ କେ ଆମ୍ଭଙ୍କୁ ରଖିବ
ଗୁଡ଼ିବୁ ଜୀବନ ଆଶ ଗୋ ॥ ୭ ॥

ଯେଉଁ ଦିନୁ ଗଲେ ନନ୍ଦନନ୍ଦନ
ଯୁବାଷ୍ଟିଷି ତନୁ ଦହେ ମଦନ
ଜାଣିଥାନ୍ତୁ ହେବେ ଯିବା ତାଙ୍କର
ଜଞ୍ଜାଳ କରି ରଖନ୍ତୁ ମନ୍ଦିର ସେ ।
ଯଶୋଦା ନନ୍ଦନ ହରି ଗୋ
ଜଗତ ବନ୍ଧୁଙ୍କୁ ମଣାଇ କହିବ
ଯାଅ ବେଗେ ସହଚରୀ ଗୋ ॥ ୮ ॥

ଝାଡ଼ ବନରେ ଯେବେ କଲେ ବାସ
ଝର ଗୋପାଙ୍ଗନା ହୋଇଲୁଁ ନାଶ
ଝଗଡ଼େ ଏଡ଼ିଲୁ ପତି ସଦନ
ଝୁରି ଝରତେ ହୃଦୟୁ ଦହନ ସେ;
ଝଡ଼ଇ ନୟନୁ ନୀର ଗୋ !
ଝୀନ ବସନ    ଅଶ୍ରୁଧାରେ ତିନ୍ତିଣ
ହୋଉଥାଇ ଜର ଜର ଗୋ ।। ୯ ।।

ନିଶାକାଳେ ଦିନେ ନନ୍ଦ କୁମର
ନୀବୀ ବନ୍ଧନ ମୁକ୍ତ କଲେ ମୋର
ନିୟମ ବଚନେ କହିଲେ ଯାହା
ନିଷ୍ଠୁର ମନେ ନ ପାଳିଲେ ତାହା ସେ ।
ନାଗରବର ମୁରାରି ଗୋ !
ନିୟମ ବଚନ    କହିଛନ୍ତି ନିଷ୍ଟେ
ନ ତେଜିବୁ ବ୍ରଜନାରୀ ଗୋ ।। ୧୦ ।।

ଟେକ କଥାମାନ ଯେତେ କହିଲେ
ଟିକାଏ ତାହି ମନେ ନ ଧରିଲେ
ଟାଳି ଗଲେ ଏଡ଼େ ପୀରତି ମାନ
ଟେକ ମନ୍ଦର ଧରି ସପ୍ରଦାନ ସେ
ଟଙ୍କଧର-ରିପୁ ତାତ ଗୋ
ଟୋକା ବେଳୁ କୃଷ୍ଣ    ଯାହା କହିଛନ୍ତି
ବିସୋର ନ ଯାଇ ଚିତ୍ତୁ ଯେ ।। ୧୧ ।

ଠାକୁର ହୋଇଣ ଏଡ଼େ ଛନ୍ଦୁନା
ଠାବ କେ କରିବ ତାଙ୍କ ମହିମା
ଠାଠିକ କରି କହିଥିଲେ ଯାହା
ଠାକୁର ହୋଇ ନ ପାଳିଲେ ତାହା ସେ
ଠଣ ସୁନ୍ଦର ମୁରାରି ଗୋ !
ଠୁଳ ନିଧି ଆମ୍ଭ    ପ୍ରାଣର ଈଶ୍ୱର
କେହ୍ନୁ ନେଲ ଚୋରି କରି ଯେ ।। ୧୨ ।।

ଡ଼ୋଳେ ନ ଦେଖିଲେ ନନ୍ଦନନ୍ଦନ
ଡ଼ହକ ପ୍ରାୟେ ମଣୁ ଯେ ସଦନ

ଡୋଳା ପିତୁଳ ହୋଇଲେ ଅନ୍ତର
ଡେଇଁ ପଡ଼ିବୁ କାଳନ୍ଦୀ ଜଳର ସେ ।
ଡାକଆଣ ନନ୍ଦଶିଷ ଗୋ ।
ଡମ୍ବରୁଧର ଶମ୍ଭୁ ତାତ ସୁନ୍ଦର
ନଟତ୍ୟ କରିବୁ ସୁବେଶ ଯେ । ୧୩ ।

ଢାଳେ ଯେବେ ନ ଆସିବେ ଶ୍ରୀହରି
ଢୋକିବୁ ବିଷ ଆମ୍ଭେ ବ୍ରଜନାରୀ
ଢମଟଣ ଗୁଡ଼ କହିବୁ ଦୂତ !
ଢାଳେ ନୟନେ ନିଦ୍ରା ନାହିଁ ରାତି ସେ
ଢାଙ୍କିଛୁ ଆମ୍ଭେ ନୟନ ଗୋ ।
ଢଳ ହଳ ହୋଇ ଦିଶୁ ଛୁ ନିରତେ
ତାହାଙ୍କ ଚନ୍ଦ୍ର ବଦନ ଗୋ । ୧୪ ।

ଆଣି ବହି ଗୋପନଗରେ ଯାତ
ଆଣି ତାଙ୍କ ଆମ୍ଭ କରି ଏକତ୍ର
ଅନନ୍ତ ମୂରତି ସେ ନରହରି
ଅଣ ଅପ୍ରାଧେ କଲେ ଏତେ ସରି ସେ ।
ଉମାପତି ରିପୁତାତ ଗୋ !
ଅଣିମା ଆଦି ଅଷ୍ଟନିଧି ସହିତେ
ହରିନେଲେ ଆମ୍ଭ ଶକ୍ତି ଯେ । ୧୫ ।

ତପନସୁତା ତୀରେ କଲେ ବାସ
ତରୁଣୀଗଣ ନିଷ୍ଟେ ହେବୁ ନାଶ
ତରୁ ଅଙ୍ଗ କାଷ୍ଟ ଯେସନେ ଦହି
ତେସନେ ମନ୍ମଥେ ହୋଇଲୁଁ ଦହି ସେ।
ତରୁଣୀ ରମଣୀବର ଗୋ !
ତ୍ରିଲୋଚନ ରିପୁ ଶରଘାତେ ତନୁ
ହୋଉଥାଇ ଜରଜର ଗୋ ! । ୧୬ ।

ଥାନ ଛାଡ଼ି ଯେବେ ଗଲେ ଶ୍ରୀହରି
ଥଯ୍ୟେ ବୁଦ୍ଧିମାନ ନେଲେ ଆମ୍ଭରି
ଥିଲି ଦିନେ କୃଷ୍ଣ ସଙ୍ଗେ ପୀରତି
ଥିବ କି ଆଉ ତାହାଙ୍କର ମତି ସେ

ଥିଲ ବିପକ୍ଷଗଣମାନ ଗୋ !
ଥଚ୍ୟେକର ମନ                    ଦେଲେ ପ୍ରହଲାଦ
ସ୍ତମ୍ଭ ହେଲେ ଉତପନ ଗୋ । ୧୭ ।

ଦୀନଜନ ବନ୍ଧୁ ଦୁଃଖୀ ସୋଦର
ଦରିଦ୍ରନିଧି ସୁବର୍ଣ୍ଣଙ୍କ ବର
ଦ୍ୱାସ୍ଥା ଯେବେ ନିଷ୍ଟେ ଗ୍ରହିଲେ ହରି
ଦିନ ବଞ୍ଚିବୁ କେହ୍ନେ ବ୍ରଜନାଥ ସେ ।
ଦଇବ ଏ ଦଣ୍ଡ ଦେଲ ଗୋ !
ଦୀନବନ୍ଧୁ ମୁଖ                    ନ ଦେଖି ସ୍ୱଜନ !
ଦିବସ ଅନ୍ଧାର ହେଲ ଯେ । ୧୮ ।

ଧ୍ୟାନେ ଗଜଚିନ୍ତା ଜାଣିଲେ ହରି
ଧୀରେ ଚକ୍ର ପେଷି ଗ୍ରାହା ନିବାରି
ଧନୁ ଉତ୍ସବ କାଳେ ଯାହା କଲେ
ଧେନୁକା ଶକଟା କେଶୀ ନାଶିଲେ ସେ ।
ଧନ୍ୟ ତାଙ୍କର ମହିମା ଗୋ !
ଧରିଅଛୁ ମନେ                    ସେହୁ କଥାମାନ
ଆଉ କି ଦେବା ଉପମା ଯେ । ୧୯ ।

ନାନାରୂପେ କୀର୍ତ୍ତି ଯେତେ ତାଙ୍କର
ନାହିଁ ସମାନ ଦେବା ତିନିପୁର
ନାଶିଲେ କି ଦୋଷେ ଆମ୍ଭଙ୍କ ହରି
ନ ସରଇ ଦିନ ଗୁଣ ସୁମରି ସେ
ନବୀନ ତନୁ ସୁଘନ ଗୋ !
ନବଘନ ତନୁ                    ଗୁରୁ ବଦନକୁ
ନଳିନ ବନଲୋଚନ ଯେ । ୨୦ ।

ପରମାନନ୍ଦ ଗୋପପୁରେ ଥିଲେ
ପ୍ରୀତି ନାନାମତେ କରନ୍ତି ଭଲେ
ପ୍ରମାଣ କଥା କହିବଟି ଯାଇଁ
ପ୍ରୀତିରେ ଅପ୍ରୀତି କଲେ କିପାଇଁ ସେ ।
ପରମ ପୁରୁଷ ସେ ତ ଗୋ !
ପରମାନନ୍ଦ                    ଯେତେ ନିକ ଆସିବେ
ପ୍ରତେ ଯାଉନାହିଁ ଚିତ୍ତ ଯେ । ୨୧ ।

# ଚଉତିଶା ସଞ୍ଚୟନ

ଫୁଲ୍‌ପଣକୁ ନୋହେ ସମସର
ଫୁଲ ମାଳରେ ଦେହ ଥାଏ ପୂର
ଫାଇ ଦୁଃଖରେ ଆମ୍ଭଙ୍କୁ ଭସାଇ
ଫାନ୍ଦେ ପକାଇ ଗଲେ ଭାବଗ୍ରାହୀ ସେ
ଫଳିଲା କର୍ମ ଆମ୍ଭର ଗୋ !
ଫୁଲ ସମୟରେ ପ୍ରଫୁଲ୍ଲ ଫଳରେ
ଫୁଲ ଶରେ ଗଲେ ମାରି ଯେ । ୨୨ ।

ବଧୂବଦମା ବାଣୀ ଘେନ ଦୂତି
ବୃନ୍ଦାବନ ଚନ୍ଦ୍ର ସନ୍ନିଧେ ଯାନ୍ତି
ବଳୟ କଙ୍କଣ ଖଞ୍ଜିଲେ କର
ବେଶ ବସନ ହୋଇ ତତପର ସେ
ବମ୍ବାଧର ପାଶେ ଯାଇଁ ଗୋ !
ବ୍ରଜବଲ୍ଲଭଙ୍କ ଚରଣେ ବନ୍ଦୋଇ
ବନୋକ୍ତ ବାଣୀ କହଇ ଯେ । ୨୩ ।

ଭଲ ସୁଫଳ ମୋ ହୋଇଲା ଜନ୍ମ
ଭଗତ ବନ୍ଧୁଙ୍କୁ କଲି ଦର୍ଶନ
ଭକ୍ତ ଯୋଗୀ ଯାକୁ ଭେଟ ନ ପାଇ
ଭାବରେ ବଶ କରିଛନ୍ତି ଗୋଈ ସେ
ଭକତବନ୍ଧୁ ସୋଦର ହେ
ଭଲଯୋଗେ ଆସି ଦର୍ଶନ ପାଇଲି
ଭବସିନ୍ଧୁ ହେଲି ପାର ଯେ । ୨୪ ।

ମାନଭର ହୋଇ କହନ୍ତି ଦୂତି
ମୋତେ ପେଷିଛନ୍ତି ବ୍ରଜଯୁବତୀ
ମାର ଶରେ ତନୁ ଦହେ ତାଙ୍କର
ମଦନ ବାଣେ ହୋଇଲେ ଅନ୍ତର ସେ
ମାଧବ ଚଳ ବହନ ହେ !
ମୋହିନୀମାନଙ୍କୁ ମଧୁରସ ଦେଇ
ପ୍ରବୋଧନା କର ମନ ଯେ । ୨୫ ।

ଜଗତବନ୍ଧୁ ଯଶୋଦାଙ୍କ ସୁତ
ଜାଣିଲେ ଗୋପୀଙ୍କ ଆରତ ଚିତ୍ତ
ଯିବା ବୋଲିଣ ହୋଇଲେ ଅନ୍ତର
ଯୁକ୍ତ କର ଧରି ଚଳେ ସଧୀର ସେ
ଯମୁନା ତଟେ ଗମନ ଗୋ
ଯୁବତୀମାନେ ଯୋଗ ନିଦ୍ରା ତେଜିଣ
ଯାଇ କରନ୍ତି ଦର୍ଶନ ଯେ ।। ୨୬ ।।

ରାଜୀବଲୋଚନ ହୋଇ ସୁବେଶ
ରସବତୀ ପୁରେ ହେଲେ ପ୍ରବେଶ
ରସ ରାସ ରସ କରି ଶ୍ରୀପତି
ରାଇଲେ ସକଳ ବ୍ରଜ ଯୁବତୀ ସେ
ରତ୍ନାକରସୁତା ପତି ଯେ !
ରଜନୀ ସମୟେ ରସ ରାସ ରସେ
ରାଧା ସଙ୍ଗେ କଲେ ପ୍ରୀତି ହେ ।। ୨୭ ।।

ଲଳିତ ବସନ୍ତ ବହେ ସୁଘନ
ଲଜ୍ଜା ତେଜିଲେ ସର୍ବ ଗୋପୀଗଣ
ଲହୁଲୀ ବପୁସୀ ହୋଇ ସୁବେଶ
ଲକ୍ଷ୍ମୀଧର ପୁରେ ହେଲେ ପ୍ରବେଶ ସେ
ଲଲଟେ ଯୋଡ଼ିଣ କର ଯେ !
ଲକ୍ଷ୍ମୀପତିଙ୍କି ଲାବଣ୍ୟେ କହୁଛନ୍ତି
ହେଲୁ ତୁମ୍ଭ ପରିଗୃର ଯେ ।। ୨୮ ।।

ବଧୂବଦନୀଙ୍କ ବଚନ ଶୁଣି
ବୃନ୍ଦାବନ ଚନ୍ଦ୍ର କହନ୍ତି ବାଣୀ
ବଲ୍ଲଭ ତୁମ୍ଭେ ବିମନ ନକର
ବାମନ କୋଟି ଭଣ୍ଡାର ତୁମ୍ଭର ସେ ।
ବୋଲୁଛନ୍ତି ଭଗବାନ ଯେ !
ବଲ୍ଲଭୀମାନଙ୍କୁ ବିମ୍ବାଧର ପୁଟେ
ବୋଧି ଦିଅନ୍ତି ଚୁମ୍ବନ ଯେ ।। ୨୯ ।।

ଶ୍ରୀଯୁବାପତି ସଙ୍ଗେ ସୁମୁଖୀ ଜନ
ସୁସ୍ୱର ରାଗେ କରନ୍ତି ଗାୟନ
ସରୁ କ୍ଷୀଣ ବାସ ଅଙ୍ଗେ ବେଢ଼ାଇ

ଶୀତଳ ମଣୋହ୍ର କରନ୍ତି ନେଇ ସେ
ଶର୍ବରୀ ହୋଇଲା ଶେଷ ଗୋ !
ଶାଠ ତାମ୍ବୁଳ ବଢ଼ଆ ଲାଗି ଆଦ୍ୱ
ଅଙ୍ଗେ ଶ୍ରୀଖଣ୍ଡି ଚନ୍ଦନ ଯେ । ୩୦ ।

ସବୁ ଗୋପାଙ୍ଗନା ହୋଇଣ ମେଳ
ଶ୍ୟାମ ସୁନ୍ଦରଙ୍କୁ କରନ୍ତି କୋଳ
ସଙ୍ଗେ ଗୋପାଙ୍ଗନା ହୋଇଣ ମେଳ
ସଙ୍ଗେ ସହଚରୀ କରନ୍ତି କୋଳ ସେ
ସମସ୍ତେ ହୋଇ ସନ୍ତୋଷ ଯେ
ସଙ୍ଗେ ରାଧା ପ୍ରିୟ ବଲ୍ଲଭୀ ଯେନଣ
ସବେଟର କରନ୍ତି କୋଳ ସେ । ୩୧ ।

ହରଣୀ ନୟନା ହରି ସଙ୍ଗତେ
ହରଷ ହୋଇ ଖଟିଲେ ସଙ୍ଗତେ
ହସ ରାସ ରସ କରି ଶ୍ରୀପତି
ହରଷ ହୋଇଣ ବ୍ରଜ ଯୁବତୀ ସେ
ହରଷ ହୋଇ ସମସ୍ତ ଯେ !
ହରି ହରି ଧ୍ୱନି ସମସ୍ତେ କରନ୍ତେ
ଉତ୍କଳର ଭାନୁ ସୁତ ଯେ । ୩୨ ।

କ୍ଷନିଙ୍କର ଆଦ୍ୟ ପୁରୁଷୋତ୍ତମ
କ୍ଷିତିକ ମଣ୍ଡଳା ଯାହାର ନାମ
କ୍ଷୀରାବ୍ଧି ତନୟା ପତି ଚରଣ
କ୍ଷକ୍ଷନ୍ଦେ କେଶବ ପଶେ ଶରଣ ସେ
କ୍ଷମାକର ମୋର ଦୋଷ ହେ !
କ୍ଷାମୁରେ ଜଣାଣ କରୁଛି ନରତେ
ମୁଁ ତୁମ୍ଭ ଭୃତ୍ୟର ଦାସ ସେ । ୩୩ ।



# କାଦମ୍ବିନୀ ଚଉତିଶା

କୃଷ୍ଣ କଂସ ପୁରେ ରହି
କହନ୍ତି କଳିକା ଉଦୟେ ଗୃହିଁ
ରେ କାଦମ୍ବିନି !
କି କରୁଥିଲ ମୋ ସହି ?
ରେ କାଦମ୍ବିନି । ୧ ।

ଖିତ୍ରୋଦଶୀ ମୋହ ଜନୁ
ଖୀଣ କରଥିବ ଅମୂଲ୍ୟ ତନୁ
ରେ କାଦମ୍ବିନି !
ଖୀଣ ଲଭ ଦିନୁ ଦିନୁ
ରେ କାଦମ୍ବିନି । ୨ ।

ଗଗନେ ତୋ ଶୋଭା ଗୃହିଁ
ଗଳାରେ ମୋହାର ଗଳା ମିଳାଇ
ରେ କାଦମ୍ବିନି !
କହଇ କେତେ ଗେଲଇ
ରେ କାଦମ୍ବିନି ! । ୩ ।

ଘନ ପୀନ ପୟୋଧରୀ
ଘନ୍ତ ଘଡ଼ିକେ ତା ଭାବ ସୁମରି
ରେ କାଦମ୍ବିନି !
ହୃଦୟ ହୋଏ ବିଦାରି
ରେ କାଦମ୍ବିନି ! । ୪ ।

ନବୀନ ରତି ରସରେ
ନାହିଁ ନାହିଁ ନାହିଁ ନାହିଁ ପାକରେ
ରେ କାଦମ୍ବିନି !
ନାହିଁ ନାହିଁ ତନୁ ପୂରେ
ରେ କାଦମ୍ବିନି ! । ୫ ।

ଛଡ଼ୋଇବ କହୁଁ ସୁଖ
ଚମ୍ବୁଥିଲେ ଚମ୍ବୁଥାଇ ମୋ ମୁଖ
ରେ କାଦମ୍ବିନି !
ତାକୁ ଦେଲି ଏତେ ଦୁଃଖ
ରେ କାଦମ୍ବିନି ! । ୬ ।

ଛଇଳାମଣି ହରଷେ
ଗ୍ଲୁତ ସୁପାତ୍ରରେ ପଦ୍ମକେଶ ରସେ
ରେ କାଦମ୍ବିନି !
ବିପରୀତ ରତି ଶେଷେ
ରେ କାଦମ୍ବିନି ! । ୭ ।

ଜଳଦ ଘୋର ଗର୍ଜନ
ଜାଣୁମଣି ଶୁଣି ହସ୍ତ ଉଚ୍ଛନ
ରେ କାଦମ୍ବିନି !
ମୋ ସଙ୍ଗେ ହୋଇଲ ଲୀନ
ରେ କାଦମ୍ବିନି ! । ୮ ।

ଝଷକେତନ ସମରେ
ଝଲ ଗୋଷ୍ଠୀ ବଳା ଝମକବାରେ
ରେ କାଦମ୍ବିନି !
କାମକୁ କାତର କରେ
ରେ କାଦମ୍ବିନି ! । ୯ ।

ନତନୁ ଭଯୁ ଗ୍ଲଡ଼ିବ
ନଖିନା କଳାମେଘୀ-ଶାଢ଼ୀ-ଆଘ
ରେ କାଦମ୍ବିନି !
ସତେ ମୁଁ ଥରେ ଫେଡ଼ିବ ?
ରେ କାଦମ୍ବିନି ! । ୧୦ ।

ଟେକସ୍ତନା ରତି ସଜ
ଟିକାଏ ମନରୁ ନ ଗଲୁ ଆଜ
ରେ କାଦମ୍ବିନି !
ସେ ସୁଖ ଜାଣେ ମନୋଜ
ରେ କାଦମ୍ବିନି ! । ୧୧ ।

ଠୂଳ ଗୃହ୍ମଚନ୍ଦ୍ର ମୂର୍ଖ
ଠାର ମତେ ଯାହା ଅଛି ସେ କହ
ରେ କାଦମ୍ବିନି !
ସେ ସୁଖ ସଂସାରେ ନାହିଁ
ରେ କାଦମ୍ବିନି ! । ୧୨ ।

ଡ଼ାହୁକ ଡ଼ାକ ଡ଼ମରେ
ଡ଼ମ୍ବରୁ ମଝା କାମ ହିଁ ଓଝାରେ
ରେ କାଦମ୍ବିନି !
କ ସୁଖ ଜାତ ନ କରେ
ରେ କାଦମ୍ବିନି ! । ୧୩ ।

ଢ଼ମପଣ ମୁହିଁ କଲି
ଢାଳେ ହେଁ ଧନକୁ ଗୁଡ଼ି ଅଇଲି
ରେ କାଦମ୍ବିନି !
ଆହା ଏହା ଯେ ଅର୍ଜ୍ଜିଲି
ରେ କାଦମ୍ବିନି ! । ୧୪ ।

ଅନଙ୍ଗ ଶର ବଶରେ
ଆଜନ୍ମ ସୁ ।ଭଳ ଅପସରେ
ରେ କାଦମ୍ବିନି !
ପଡ଼ିଥିବ ଅବଶରେ
ରେ କାଦମ୍ବିନି ! । ୧୫ ।

ତରୁଣୀମଣି ସୁରତ
ତାରତମ କଲେ ଇନ୍ଦ୍ର ସମ୍ପତ୍ତି
ରେ କାଦମ୍ବିନି !
ହେବ ତିଳାନ୍ତକ ରତ
ରେ କାଦମ୍ବିନି ! । ୧୬ ।

ଥରେହେଁ ନୋହେ ମୁ ରୁଷ୍ଟି
ଥାଉ ଯା ଥାଉ ଯା ବୋଲି ବୋଲୁଛି
ରେ କାଦମ୍ବିନି !
ମାଖ ଫେଡ଼ନ୍ତେ ମୃଗାକ୍ଷୀ
ରେ କାଦମ୍ବିନି ! । ୧୭ ।

ଦାରୁଣ ଫୁଲ କୋଦଣ୍ଡ
ଦୂରକର ଦୟା ଦଣ୍ଡକୁ ଦଣ୍ଡ
ରେ କାଦମ୍ବିନି !
ଦଣ୍ଡ ଥିବ ତାର ପିଣ୍ଡ
ରେ କାଦମ୍ବିନି ! । ୧୮ ।

ଧନକୁ ଯାମିନୀ ଶେଷେ
ଧଇଲେ ଧୀରେ ମୁଁ ସୁରତ ଆଶେ
ରେ କାଦମ୍ବିନି !
ନାହିଁ ନାହିଁ କରି ହସେ
ରେ କାଦମ୍ବିନି ! । ୧୯ ।

ନିର୍ମଳ ଚନ୍ଦ୍ର କିରଣେ
ନିତମ୍ବିନୀ ଯେନି ଚନ୍ଦ୍ର ପ୍ରାଙ୍ଗଣେ
ରେ କାଦମ୍ବିନି !
ମାତଇ ମଦନ ରଣେ
ରେ କାଦମ୍ବିନି ! । ୨୦ ।

ପୃଥୁଳ ନିତମ୍ବବତୀ
ପୀନ ପୟୋଧରୀ ଶାନ୍ତ ଅଶାନ୍ତ
ରେ କାଦମ୍ବିନି !
ମଣୁଥିବ ନିତ ପ୍ରତ
ରେ କାଦମ୍ବିନି ! । ୨୧ ।

ଫାଇ ଘନାଘନ ଗୁହିଁ
ଫୁରୁଣାରେ ଗଣ୍ଠେ ପ୍ରେମ ଫୁଲଇ
ରେ କାଦମ୍ବିନି !
ଆସେ ରତି ସଜ ହୋଇ
ରେ କାଦମ୍ବିନି ! । ୨୨ ।

ବିପୁଳ କୁଚରେ ତାର
ବସାଇଲେ ଶୀଷ କଣ୍ଟକଶାର
ରେ କାଦମ୍ବିନି !
ମଦନେ ହୋଏ କାତର
ରେ କାଦମ୍ବିନି ! । ୨୩ ।

ଷାବବର୍ଣ୍ଣ ସୁଖରାଶି
ଷାଳୁଥିବ ଗଣ୍ଡେ କର ନବେଶି
ରେ କାଦମ୍ବିନି !
ମୋହର ଗୁଣ ଅହର୍ନିଶି
ରେ କାଦମ୍ବିନି ! । ୨୪ ।

ମେଘେ ବିଜୁଳି ଝଟକ
ମନ୍ଦାଳମ୍ବୀ ଗୃହେଁ ଲଭିବ ଦକ
ରେ କାଦମ୍ବିନି !
ହରାଉଥିବ ବିବେକ
ରେ କାଦମ୍ବିନି ! । ୨୫ ।

ଯୋଷି ବନ୍ଧୁଥିବ କାମ
ଜପୁ ଜପୁ ଗୋଷ୍ଠ ଯୋଗୀନ୍ଦ୍ର ନାମ
ରେ କାଦମ୍ବିନି !
ଯାଉଥିବ ବସି ଧାମ
ରେ କାଦମ୍ବିନି ! । ୨୬ ।

ରଖିବ କି କରି ଜୀବ
ରମଣୀ ରତନ ଷ୍ୱବ ମୋ ଷ୍ୱବ ?
ରେ କାଦମ୍ବିନି !
କି କଲି ଆହା ଦଇବ !
ରେ କାଦମ୍ବିନି ! । ୨୭ ।

ଲେଖେଶ ମୁଁ ହେଲେ ଅନ୍ତର
ଲେଖଇ ପଟେ ସ୍ୱରୂପ ମୋହର
ରେ କାଦମ୍ବିନି !
ଏବେ ହେଲି ଏତେ ଦୂର
ରେ କାଦମ୍ବିନି ! । ୨୮ ।

ବିକଚ ଫୁଲ କଦମ୍ବ
ବିଲୋକ ନ କରି ରସ କଦମ୍ବ
ରେ କାଦମ୍ବିନି !
ନ କରିବ ଦୟା ଲମ୍ବ
ରେ କାଦମ୍ବିନି ! । ୨୯ ।

# ଚଉତିଶା ସଞ୍ଚୟନ

ଶୁଣି ଏ ମୟୂର ରଡ଼
ସୁନ୍ଦରୀ ଯାଉଥାଇ ଅଙ୍ଗେ ଜଡ଼
ରେ କାଦମ୍ବିନି !
ଏବେ ଯିବ ନାଡ଼ ଗୁଡ଼
ରେ କାଦମ୍ବିନି ! । ୩୦ ।

ସୁବେଶ ହୋଇ ସୁକେଶୀ
ସଙ୍କେତ ସ୍ଥାନେ ସେ ମିଳଇ ଆସି
ରେ କାଦମ୍ବିନି !
ମନ୍ଦ ମନ୍ଦ ହୋଇ ହସି
ରେ କାଦମ୍ବିନି ! । ୩୧ ।

ଶୁଅଇ ନାହିଁ ପାଲଟି
ଶ୍ରୀ ଭୁଜରେ ଉଡ଼ୁଥାଇ ବମ୍ୱୋଷ୍ଟୀ
ରେ କାଦମ୍ବିନି !
ଚନ୍ଦ୍ର ଯା ହୃଦୟୁ ଫାଟି
ରେ କାଦମ୍ବିନି ! । ୩୨ ।

ହର-ବଇରି ଶରରେ
ହରାଇ ଯେବେ ଚେତନା କାତରେ
ରେ କାଦମ୍ବିନି !
ପଡ଼ିଥିବ ଅବନୀରେ
ରେ କାଦମ୍ବିନି ! । ୩୩ ।

କ୍ଷୀର ସିନ୍ଧୁ ସୁତା ପଣ୍ଡ
ଛଛନ୍ଦରେ କରି ବଦନ ଚନ୍ଦ୍ର
ରେ କାଦମ୍ବିନି !

—✳—

# କଳିଗମନ ଚଉତିଶା

## ରାଗ—କାଳୀ

କଳିଗମନ ଯେ ଦିନେ ପ୍ରିୟେ କହିଲ ତୋର ଆଗେ
କୁସୁମ ଧନୁ ଧରି ମଦନ ଥିଲାଟି ମୋର ଆଗେ
କି ଗୁଣେ ସଖି ହେଠ ବଦନ ଶୋଇଛୁ ଭୂମି ଲେଖି
କାମଦେବକୁ ଗଞ୍ଜି ମୋ ଭୟେ ତୋ କୁଚକୁମ୍ଭ ଦେଖି । ୧ ।

ଖେଦ ସମୁଦ୍ରେ ବୁଡ଼ିଲ ପ୍ରିୟେ ମୋ ସଦଜ୍ଞାନ ନାହିଁ
ଖରନିଶ୍ୱାସ କି କେ ଗଞ୍ଜୁଛୁ କପୋଳେ କର ଦେଇ
ଖସିପଡ଼ୁଛି କନ୍ଦି କବରୀ କୁସୁମ କେର ଶୋଭା
ଖାଇବ ବୋଲି ଗ୍ରାସିଛି ରାହୁ ବଦନ ଇନ୍ଦୁ ଲେଖା । ୨ ।

ଗଳାରହାର କାଢ଼ିଣି ପ୍ରିୟେ ନଅଡ଼ଅଛୁ ଭୁମ୍ବ
ଗହବ କରି ପଣନ୍ତ ପାରି କି ଗୁଣେ ଅଛୁ ଶୋଇ
ଗରବ କରିଥିଲ କାମକୁ ତୋତେ ଦେଖିବା ଯାଏ
ଗୋଡ଼ାଇ ଧନୁରେ ଗୁଣଦେଇ ଟଙ୍କେ ମଦନରାୟେ । ୩ ।

ଘାରି ହେଉଛି ଶରୀର ମୋର କି ରତି ଶରଘାତେ
ଘୋଡ଼ାଇ ମୁଖ ଶୋଇ ଯେ ଅଛୁ କଥା ନ କହୁ ମୋତେ
ଘାଉ ହରିଣୀ ପ୍ରାୟେକ ପ୍ରିୟେ ମନେ କରିଛୁ ଚିନ୍ତା
ଘଞ୍ଚ ଅଞ୍ଚଳେ କୁଚଯୁଗଳେ ଲଗାଇ ପ୍ରାଣକାନ୍ତା । ୪ ।

ନବଯୁବତୀ ହୋଇଣି ପ୍ରିୟେ ଯେତେକ ଛନ୍ଦ ମୋର
ନରହେ ଚିତ୍ତ କାହାରି ତହିଁ ମୁଖ ନ ଦେଖି ତୋର
ନ ଯିବ ଆଜି ବେଳେ କାହିଁକି ନୋହିବ ପରବାସୀ
ନୟନ ଟେକି ନ କହ କିକେ କାହାକୁ ଅଛୁ ରୁଷି । ୫ ।

ଚନ୍ଦ୍ର ଅଧିକ ବଦନ ତୋର ବୋଲୁ ଯେ ଥାଇ ମୁହିଁ
ଚୁନ୍ଦର କଥା ମନରେ ବ୍ୟଥା ରଜନୀ ଦୁଃଖ ଦେଇ
ଚନ୍ଦନ ପଙ୍କ ଲାଗନ୍ତେ ପ୍ରିୟେ ଚମ୍ପକ ଉଠେ ହୁଆ
ଚୁହୁଁ ଚୁହୁଁଣ ଏଡ଼େ ନିର୍ଦ୍ଦୟା ହୋଇଲୁ ପ୍ରାଣ ପ୍ରିୟା । ୬ ।

ଛାଡ଼ିଣ ପ୍ରିୟେ ଯହୁଁ ଦନୁ ତୋ କଲଲୁଁ ପରବାସ
ଛନ୍ଦେ ଦନ ନେଉ ଯେ ଥାଇ ବଳାଇ ତୋତେ ଆଶ
ଛାଡ଼ି କରକ ଏତେ ସେନେହ ଛାଡ଼ିବୁ ବୋଲି ଏତେ
ଛଟକେ କାମ ମୋତେ ମାରଇ ମାରଇ ନକ ତୋତେ । ୭ ।

ଯେ ଦନୁ ପ୍ରିୟେ ଉପେକ୍ଷି ତୋତେ ଗମନ କଲି ଏକା
ଯେଣେ ଚାହିଁଲେ ତେଣେ ମଦନ ଦିଅଇ ମୋତେ ଦେଖା
ଜଗତଯାକ ଦଶନ୍ତ ମୋତେ ସବୁହେଁ ଯୁବାନାରୀ
ଜୀବନ କହୁଁ ରହିଣଅଛି ତୋ ଗୁଣ ଅନୁସରି । ୮ ।

ଝରୁଛି କଣ୍ଠ ସ୍ୱରୁଛି ମୋର ବିରହ ଜର ଘାଏ
ଝରୁଛି କଣ୍ଠ କପୋଳୁଁ ଝାଳ ନ ଦେଖି ସଖି ! ତୋଏ
ଝାଡ଼ି କରେଣ ରଖ ଗୋ ପ୍ରିୟେ ! ସୁରତ ଦାନଦେଇ
ଝିମିଟେ ଆଉ ଗେଲେ ରେ ପ୍ରିୟେ ମୋତେ ପାଇବୁ କାହିଁ ।୯

ନିର୍ଦ୍ଧୟା କରି କହୁଛି ପ୍ରିୟେ ଶୁଣ ତୁ ମୋର ବାଣୀ
ନିଷ୍ଠୟ କରି ରମଣୀ ତୁଲେ ନାହିଁଟି ଭେଟ ପୁଣି
ନିଷ୍ଠୁର ଚିତ୍ତ ଧରିଣ ପ୍ରିୟେ ଶୋଇଛ ପିଠି ଆଇ
ନିର୍ଲଜ୍ଜ ଚିତ୍ତ ନ ରହେ କାହିଁ ତୋତେ ଦେଖିବାପାଇଁ ।୧୦।

ଟେକିଣ ମନ ଅଛଇ ମୁହିଁ ତୋତେ ଦେଖିବାପାଇଁ
ଟାଣକ ପଣ କରିଛୁ ପ୍ରିୟେ ଏଡ଼ିକୁ କସ ପାଇଁ
ଟଙ୍କାର କରି ଥିଲି କାମକୁ ତୋହର ମୁଖ ଦେଖି
ଟାଣେ ବିନ୍ଧୁଛି ମଦନରାୟେ ପାତୁକ ବାରେ ଦେଖି । ୧୧ ।

ଠାଠିକ କରି କହୁଛି ପ୍ରିୟେ ମନେ ନ ଧର ରୋଷ
ଠିକ ସ୍ୱରୂପ କହୁଛି ପ୍ରିୟେ ମନେ ନାହିଁ ମୋ ଦୋଷ
ଠରାଠରି ନୁହଁ ଗୋ ସଖି ସଖୀଙ୍କ ମୁଖ ଚାହିଁ
ଠିକ ସଜନୀ ବୋଲିବେ ନିଜ ବଲ୍ଲଭ ଭେଜ ନାହିଁ । ୧୨ ।

ଡ଼ମ୍ବରୁ ମଣ୍ଡା ଧରିଣ ପ୍ରିୟେ ହୋଇଲି ହରପ୍ରାୟେ
ଡ଼ରେ ପଳାଇ କୁସୁମ ଧନୁ ଧରି ମଦନରାୟେ
ଡୋଳାର ପଙ୍କ ଲାଗୁ ଗୋ ପ୍ରିୟେ କହ ମୋ ମୁଖ ଚାହିଁ
ଡାଳିମ୍ବମଞ୍ଜି ଦଶନ ଯେନି ହୃଦୟ କାଟ ସେହି । ୧୩ ।

ଢକ୍କା ବଜାଇ କହୁଛୁ ପ୍ରିୟେ ତୁ ବଡ଼ ଅନୁରାଗୀ
ଢୋଲ ଝମକ ଦିଅଇ କାମ ତୁ ବଡ଼ ଅନୁରାଗୀ
ଢଳଢଳ ନୟନ ଦୁଃଖର ଅରୁଣ ଚକ୍ଷୁ ଡୋଳା
ଢାଳେ ହେଁ ସଖି ! ମରିବ ଆଉ ନକର ଅଣଦେହଳା । ୧୪ ।

ଅଣଖ ଆଡ଼େ ହୋଇଣ ପ୍ରିୟେ ଏବେ କହୁଛୁ ଫୋଡ଼
ଅଣ ଅପରାଧେ ବନ୍ଧୁଛି କାମ ଧନୁରେ ଶର ଯୋଡ଼
ଅଣ ଅପ୍ରାଧୀ ଅଟଇ ପ୍ରିୟେ ଦୋଷ ମୋ କର କ୍ଷମା
ଅଣ ଉତ୍ତର କେବେ ନ ଦେଉ ତରୁଣୀ ଗଜଗମା । ୧୫ ।

ତରୁଣୀ କୁଳ ରତନ ପ୍ରିୟେ ଅଟୁ ତୁ ଗୁଣନିଧି
ତରିବ ବୋଲି କାମ ସାଗରୁ ତରୁଣ ତୋର ବୁଦ୍ଧି
ତୋହର ତୂନୀ ହୋଇବା ଦେଖି ଫୁଟୁଛି ମୋର ହିଆ
ତାପ ଧରାଇ ମଦନ ପ୍ରିୟେ ହୋଇଛି ଦ୍ୱାରେ ଠିଆ । ୧୬ ।

ଥଳ ନପାଇ ମଦନ ଜଳେ ଯାଉଛି ମୁହିଁ ଭାସି
ଥିବର ପଣ କର ଗୋ ସଖି ଭୁଜ ମୋ ଧର ଆସି
ଥିର ଗରବ ତୋ କୁଚ ଭେଳା କରିଣ କରେ ପାର
ଥିବ ଯାବତ ଶରୀରେ ଜୀବ ଖଟିଣ ଥିବା ତୋର । ୧୭ ।

ଦରିଦ୍ର ନିଧି ପାଇଲା ପ୍ରାୟେ ହୋଇଛି ମନ ମୋର
ଦେଖିଲି ଯେତେ ବେଳେ ଗୋ ସଖି ! ଚନ୍ଦ୍ର ବଦନ ତୋର
ଦର୍ଶନ କଲି ବେଳେ ଗୋ ସଖି ମନ ମୋ ନାହିଁ ଭ୍ରାନ୍ତ
ଦୁଃଖ ପାଇଲି ମୃତକ ପକ୍ଷୀ ମନେ ନୋହିଲି ଶାନ୍ତ । ୧୮ ।

ଧୂଳି ଧୂସର ହୋଇଣ ପ୍ରିୟେ ଅଧମ ଅଛୁ ଶୋଇ
ଧୀର ମଣିରେ ! ଫାଟଇ ହିଆ ତୋ ନାରଖାର ଗୁହିଁ ।
ଧରଣୀ ତଳେ ତରୁଣୀ ଯେତେ ନୋହନ୍ତି ତୋତେ ସରି
ଧରିଣ ଦାନ୍ତେ ତୃଣ ପ୍ରାୟେ ହନନ୍ତ ଯେନ ମୋରି । ୧୯ ।

ନୂଆ ବୟସି ! କୁଟିଳ କେଶୀ ! ପଞ୍ଚ ପ୍ରାଣ ତୁ ମୋରି
ନଟେଁ ଭର୍ମାଙ୍ଗି ! ନୋହିଲେ ସାହା ଯିବ ଗରବ ସରି
ନତନୁ ହାଥେ ମରିବ ଧନ ଦେଖି ମରଣ ମୋର
ନବମାତାଙ୍ଗୀ ! ଜାଇବୁ ଯେବେ ହୃଦ ପଥର କର । ୨୦ ।

ପୁଚ୍ଛ ତୁ ସଖୀ ! ସଂସାରେ ଯେତେ ତରୁଣୀ ଛନ୍ତି ରହି
ପ୍ରାଣବଲ୍ଲଭ ଉପରେ ଏତେ ନଥାନ୍ତି ରୋଷ ବହି
ପ୍ରତିଜ୍ଞା କରିଥିଲ କାମକୁ ତୋହର ମୁଖ ଦେଖି
ପାଇବ ବାରେ ଚନ୍ଦ୍ରମା ମୁଖ ଜୀବନ ହୋଉ ସୁଖୀ । ୨୧ ।

ଫେଡ଼ଣ କଥା ନ କହୁ କିକେ ମନେ କରିଛୁ ଆଣି
ଫେଡ଼ଣ ହୃଦ ଭିତରେ କାମ ପ୍ରାଣ ନେଲାଣି ହାଣି
ଫୁରୁଣା ଥିଲା ସବୁ ସରିଲା ତୋହର ମାନ ହେତୁ
ଫାନ୍ଦେ ପକାଇ ଅବସ୍ଥା ମୋର ହରଇ ମୀନକେତୁ । ୨୨ ।

ବରଷା ଋତୁ ଆସନ୍ତେ ସଖି ! ପରବାସରୁ ଆସି
ବଲ୍ଲଭ ଆସି ଗୃହେ କହନ୍ତେ ନଥାନ୍ତି ଏତେ ରୁଷି
ବୋଲୁ ଯେ ଥାଉ ମୋ ମୁଖ ଗୃହିଁ ତୋ ତହୁଁ ଆନ ନାହିଁ
ବୁଝିଲି ଏବେ ଯେତେକ ପ୍ରିୟେ କାହାର ନୋହେ କେହି । ୨୩ ।

ଭୃତ୍ୟର ଭୃତ୍ୟ କରିଣ ପ୍ରିୟେ ଦେଖିଣ ଥାଉ ତୁହି
ଭରସା କରିଥିଲି କାମକୁ ଡରିବ ଆଉ ନାହିଁ
ଭରମ ଅଙ୍ଗି ! ଅବନୀ ଶୋଭା ଭାଙ୍ଗିଲୁ ଭୃତ୍ୟ ଆଶ
ଭରସା ଗଲା ମୀନକେତନ ଦେଲାରେ କେତେ ତ୍ରାସ । ୨୪ ।

ମଦନ ଦେବ ଶରରେ ଧନ ମନ ମନ୍ଥଇ ମୋର
ମାଇଲେ ମୋତେ ମାନିନୀ ଈଶ ! କି ପଡ଼ିରୋଷ ତୋର
ମନୋଜ ଗୁଣ କି ଆଚମ୍ବିତ ଦେଖିଲି ଏବେ ମୁହିଁ
ମୋହର ମନୁ ଜାତ ହୋଇଛି ମୋତେ ମାରିବା ପାଇଁ । ୨୫ ।

ଯୁବା ବୟସ କାନ୍ତ ଗୋ ପ୍ରିୟେ ! ଦାସ କରିଛୁ ତୋର
ଜମ୍ବୁନଦକୁ ଜିତ ବରଣୀ ସଜ କେତକୀ ଗୋର !
ଜାଣି ନଜା ଶିବଦେଶେ ସଖି ! ରହିଲି ଦିନା କେତେ
ଜୀବ ଯାବତ ଶରୀରେ ଥିବ ଗ୍ରୁଡ଼ିବ ନାହିଁ ତୋତେ । ୨୬ ।

ରମଣୀ କୁଳ ରତନ ପ୍ରିୟେ ! ଅଛୁ ତୁ ଗୁଣଗ୍ରାହୀ
ରାତ୍ର ଦିବସ ଗୁଣି ଅଇଲି ତୋତେ ଦେଖିବା ପାଇଁ
ରୋଷ କରିଣ ବିମନ ଏତେ ହେଉଛୁ କାହିଁ ପାଇଁ
ରହିଣ କମ୍ପା ଶରୀର ଅଛି ବକ ଆକାର ହୋଇ । ୨୭ ।

ଲୁଗୃଇ ମୁଖ ଶୋଇଣ ଅଛୁ କଥା ନ କହୁ ମୋତେ
ଲୋଡ଼ୁ ଯେ ଥାଉ ନ ଥିଲାବେଳେ ମିଛକୁ ମିଛ ଯେତେ
ଲାଜ କରିବା ବନ୍ଧୁ କାମ ଆକୁଳ ହୋଇ ଦେଖି
ଲାବଣ୍ୟ ମୁଖ ରଖରେ ସଖି ! ଅମୃତ ରସ ଦେଇ । ୨୮ ।

ବସୁସନାଶି ଏତେ଼ ଚଉଁରି ବୁଝିଲ ନାହିଁ ଗୋରି
ବଲ୍ଲଭ ଆସି ଗୃହୁ କହନ୍ତେ ବହୁତ ରୋଷ କରି
ବୁଡ଼ିଲ ଆଜ କାମ ସାଗରେ ଉଦ୍ଧରି ଧର ସହି !
ବଡ଼ ନିଷ୍ଠୁର ହୋଇଣ କାମ ଧନୁରେ ଗୁଣ ଦେଇ । ୨୯ ।

ଶିରୀଷ ଫୁଲ ଶରୀର ତୋର ଅଟୁ ତୁ ସୁକୁମାରୀ
ଶରୀର ଏତେ଼ ନିଷ୍ଠୁର କରି ଧରିବ ନାହିଁ ନାରୀ
ଶିରେ କୁସୁମ ଖୋସିଣ ପ୍ରିୟେ ବୋଲୁ ଯେ ଥାଉ ମୋତେ
କିବ ପାଷାଣୁ ଅଧିକ କରି ଧଇଲ ଆଜ ତୋତେ । ୩୦ ।

ଶୋଇଲ ଠାରୁ ଉଠି ଗୋ ପ୍ରିୟେ ଦିଅ ତୁ ମୋତେ ଗାଳି
ଶିରରେ ଦେଇ ଯାଅ ଗୋ ପ୍ରିୟେ ଅମୃତ ରସ ଢାଳି
ସବୁ ତରୁଣୀ ମିଳିଣ ପଛେ କରନ୍ତୁ ଉପହାସ
ସତେହେଁ ଭୃତ୍ୟ ଜନଙ୍କୁ ପ୍ରିୟେ ଲାଗୁ ସକଳ ଦୋଷ । ୩୧ ।

ସହସ୍ରେ ଶର ଧରିଣ ନୃପ ମୟୂଣ ଅଛି ବେଢ଼ି
ସଜ କେତକୀ ଗୋରି ! ମୁଁ ଆଶ୍ରା କାହିଁ ନ ପାଏ ଲୋଡ଼ି
ସାହସ କରି ରହିଛୁ କି କେ ମନରେ ରୋଷ ବହି
ହୃଦରୁ ବାଣ ମଦନ ରାଜେ ବାରେ ତୁ କରି ହାହି । ୩୨ ।

ହୃଦୟେ ହାର କରିଣ ପ୍ରିୟେ ତୋଳିଣ ଭୁଜେ ଭିଡ଼ି
ହରି ବଇରି ସନ୍ତାପ କଲା ହେଲେ ହେଁ କରି ପାରି
ହୋଇଲ ତୋର ଭୃତ୍ୟର ଭୃତ୍ୟ ଦୋଷ ମୋ କର ଛେମା
ହେଲେ ଉତ୍ତର କି କେତେ ଦେଉ ତରୁଣୀ ରାଜକେମା । ୩୩

କ୍ଷିତି ନୃପତି ହୋଇ ତୋ ଦାସ ଅଟଇ ପ୍ରିୟେ ମୁହିଁ
କ୍ଷଣକେ ସୁଖ ଦେବା କଞ୍ଚିତ ଉଚ୍ଚୁର କସ ପାଇଁ
କ୍ଷିତି-ମୋହନ ! ପାଷାଣେ ଗୃତ ବାନ୍ଧି ଶିଖିଲୁ କାହୁଁ
କ୍ଷିତିଦେ କହେ ନୃସିଂହ ରାୟେ ବାଉନ କାବ ଯାଉ । ୩୪ ।



# କମଳବଦନୀ ଚଉତିଶା

କମଳବଦନୀ କହେ ଦୂତୀ ଆଗେ ଯାଇ,
କେଉଁ ଅପରାଧ କଲି ଗୋ କୃଷ୍ଣ ନେଉଛି ନ ଗୃହିଁ । ୧ ।

ଖଳ ଲୋକଙ୍କର ବୋଲ ଶୁଣିଲେ କି ସ୍ନେହୁ,
ଖାଇବି ଗରଳ ବିଷ ଗୋ, କଥା ମୋ ବାରେ ରହିଥାଉ । ୨ ।

ଗୁରୁଜନ ଗଞ୍ଜଣା ବଚନ ନିଶି ଦିନ,
ଗୋବିନ୍ଦ ଭରସା କରି ଗୋ ଅଙ୍ଗେ କଲି ଆବରଣ । ୩ ।

ଘର ବର ବେନି କୋଳେ ହେଲି ନିରମାଖୀ,
ଘାଉଆ ଜନ୍ତୁଙ୍କ ପ୍ରାପ୍ତେ ଗୋ ଚିତ୍ତ ମୋ ଅବିରତେ ଦୁଃଖୀ । ୪ ।

ନିଷ୍ଟପ୍ତେ କହୁଛି ଦୂତି ନିର୍ଣ୍ଣୟ ବଚନ,
ନାରାୟଣ ବିଚ୍ଛେଦେ ଗୋ ମୁଁ ତେଜିବି ଜୀବନ । ୫ ।

ଚରଣ ଛୁଆଇଁ ସତ୍ୟ କରାଇ ଆମ୍ଭନ୍ତ
ଚିତ୍ତରେ ବିଚ୍ଛେଦ କ[illegible]କେ ଗୋ ଏବେ କଲେ ଗୋପୀନାଥ । ୬ ।

ଛାର ସ୍ତ୍ରୀର ଜାତି ଆମ୍ଭେ ସେ କ୍ଷମାସାଗର,
କ୍ଷମା ଯଦି ନ କରିବେ ଗୋ ଆମ୍ଭେ ହୋଇବୁ କାହାର । ୭ ।

ଯାଅ ତୁ ବହନ ଦୂତି କହିବୁ କୃଷ୍ଣଙ୍କୁ,
ଯୁବତୀ ଅବଳା ବଧ ଯେ ଦୋଷ ଲାଗିବ ତାଙ୍କୁ । ୮ ।

ଝୀନବାସ ଗୃହୁ ଅଙ୍ଗେ ନ ପାରଇ ବହି,
ଝିମିଟେ ରଖିଛୁ ପ୍ରାଣ ଗୋ ଧ୍ୟାନ କରି ଜାବଗ୍ରାହି । ୯ ।

ଅଣ ଅପରାଧେ ଯେବେ ମନେ କଲେ ରୋଷ,
ଅଦୃଷ୍ଟ ଚିନ୍ତିବା ସଖି ଗୋ କାହାକୁ ବା ଦୋଷ । ୧୦ ।

ଟାଣ ପଣ ଯାହା ଲାଗି କରିଥିଲୁ ମନେ,
ଟାକଣି ବିଧାତା କଲା ଗୋ ଏବେ ଭିନେ ଭିନେ । ୧୧ ।

ଠାବ ଯାର ନ ପାବନ୍ତ ବ୍ରହ୍ମା ତ୍ରିଲୋଚନ,
ଠୁଳ ତପେ ପାଇଥିଲୁ ଗୋ କର୍ମେ ପୁରୁଷ ରତନ । ୧୨ ।

ଡ଼ାକ ସୁଧା ରସ ଦେଇ କଣିଛନ୍ତି ଯାରେ,
ଡ଼କା ଦମ୍ଭତ ଗ୍ରହ୍ମ ହସ୍ତେ ଗୋ ଏବେ ସମର୍ପିଲେ ମୋରେ । ୧୩

ଢୋକଲ ଗରଳ ପ୍ରାୟେ ଘାରୁଅଛି ଦେହ୍ନ,
ଢଳ ପଡ଼ବାକୁ ପ୍ରାଣ ଗୋ ସାହାସେ ଅଛି ରହ୍ନ । ୧୪ ।

ଆଣି ପଞ୍ଚଶର ବାଣ ବସାଇ ମଦନ,
ଅଣ ଅପରାଧେ ଦହେ ଗୋ ଅଙ୍ଗେ ଅନଙ୍ଗ ଦାରୁଣ । ୧୫ ।

ତ୍ରୈଲୋକ୍ୟ ଠାକୁର ପାଶେ ଯାଅ ପ୍ରାଣସହ୍ନ,
ତଥ୍ୟ କର ଜଣାଇବୁ ଗୋ ମୁଁ ତୋତେ ଅଛି ଯାହା କହ୍ନ । ୧୬ ।

ଥିର କର ଚିତ୍ତ ଭେଟ ହୋଇବ ସୁଦନ.
ଥିବ ସଙ୍ଗେ ଭୃତ୍ୟପଣେ ଯେ ଦ୍ଦୀନ ଠାକୁର ଚରଣ । ୧୭ ।

## —ଯଥା ରାଗ—

ଦୂତକା କହଇ ଶୁଣ ପ୍ରାଣ ସହ୍ନ
କାତରେ ନ ହାଳ ଚିତ୍ତେ
ଦୀନ ଜନ ବନ୍ଧୁ ଗ୍ରୁମୁଁ ରେ ଜଣାଇ
ଆଣି ଭେଟାଇବ ତୋତେ ।
ଦୃଢ଼ ହୃଦୟେ,
ଦନ ରହ୍ନଥାଅ ଭୁ ତ କୃଷ୍ଣ ଲୟେ । ୧୮ ।

ଧୀରଗମନୀକ ଧଇର୍ଯ କରାଇ
ଦୂତକା ଚଳଣ ଯାଇ,
ଧାତକାରେ ଯାଇ ପ୍ରବେଶ ହୋଇଲେ
ଯହିଁଛନ୍ତି ଭାବଗ୍ରାହୀ ଯେ ।
ଧୂରୁଂ ଦର୍ଶନ
ଧାଇଁ ସୁଫଳ କଲା ତା ଲୋଚନ । ୧୯ ।

ନାରାୟଣ ଦେଖି ହୃଦେ ମହା ସୁଖୀ
ଦୂଷ୍ଟକ ବୋଲନ୍ତି ବଚନ;
କଶି ସମୟେ ଯେ ମୋ ପୁରେ ଅଇଲ
ଏଥିର କହ ସନ୍ଧାନ ଯେ;
ନେଇ କର ଧରି ପାଶେ ବସାଇ । ୨୦ ।

ପଦ୍ମ ମୁଖ ଜାଣି ଏମନକ ଶୁଣି
ଦୂତିକା କହଇ ବଚନ,
ପୁଷ୍ପ ନନ୍ଦନର କେଉଁ ଅପରାଧ
କି ଦୋଷେ କଲ ଅଭିମାନ ଯେ,
ପରାପର
ପ୍ରଭୁ ପକ୍ଷରେ କେଉଁ ବଇର । ୨୧ ।

ଫେଡ଼ କହୁଅଛୁ ମନର ବାରତା
ନ ବର୍ତ୍ତଇ ଚନ୍ଦ୍ର ବଦନୀ
ଫଗୁଣୀ ଉପେକ୍ଷି ଚିନ୍ତାଭରେ ଦୁଃଖୀ
ସାହସେ ଅଛୁ ଦେହ ଘେନି ।
ଫେଡ଼ି କହୁଛୁ
ଫେରିଯିବା ଯାଏ ପ୍ରାଣ ରଖିଛୁ । ୨୨ ।

ବୋଲଇ କହ୍ନୁ ବନମାଳୀ ଆଗେ
ବଡ଼ ଲୋକ ବୋଲି ଜାଣିଲି,
ବନ୍ଧୁ ବାନ୍ଧବଙ୍କ କୁଳରେ ଦୁର୍ବାଦ
କରାଇ ରହିଲେ ନଟବାଳ,
ଯେ ବୋଲନ୍ତ
ବଟେ ତେଜିବ ପ୍ରାଣ ବିଷ ଭକ୍ଷି । ୨୩ ।

ଭାବୁ ଅଛୁ ବସି ତୁମ୍ଭ ପଦ୍ମ ପାଦ
ତାମନେ ବିଚ୍ଛେଦ ନାହିଁ,
ଭାବ ତୁମ୍ଭ ନାମ ମନରେ ନମନ୍ତ
ସାହାସେ ଅଛୁ ଦେହ ବହି,
ଭାବୁଛୁ
ଭୁମି ଚରୁଅଛୁ କୋଧଭରେ ଦୁଃଖୀ । ୨୪ ।

ମନେ ଚିନ୍ତା ଖେଦ ଦୁଜେ ପରମାଦ
ପୀଡ଼ଇ ଅନଙ୍ଗ ଦାରୁଣ,
ମଳୟ ପବନ ପୂଲକଇ ଘନ
କେତେ ସହିବ ତା ଜୀବନ,
ମନ ମଥ
ମାତି ହୃଦରେ ଦହୁଛୁ ଅନ୍ତରତ । ୨୫ ।

ଜୀବନ ଅଗ୍ନି ତୃଣବନେ ଦହୁଛି
କାମଦେବ ପଞ୍ଚ ଶରରେ
ଜପି କୃଷ୍ଣ ନାମ ଜଳଧାର କର
ଜଣିଛି ତାହାକୁ ସମରେ
ଯିବାଯାଏ
ଜୀବ ଥିବ ଜକ ତାର ଦେହେ । ୨୬ ।

ରାଧାର ସନ୍ଧାନ ଶୁଣି ଭଗବାନ
ବୋଲନ୍ତି ଶୁଣ ଗୋ ସହଚରୀ
ରତର ଉଲ୍ଲାସେ ଗଲ ତାର ପାଶେ
ଲତେକ ହୃଦେ ପ୍ରହାରି
ରସମୟୀ
ରୋଷ କ ଲାଗି ଗଞ୍ଜେ ଥିଲ ବନ୍ଧ । ୨୭ ।

ଲାଞ୍ଛନ ହୋଇ ସେ ନସତ ହୁଅଇ
ନ ଘେନିବା ତାଙ୍କ ଦୋଷ
ଲଯ୍ୟେ କଲ ସଦ କୃଷ୍ଣ ପଦ୍ମପାଦ
କାମାଇ କରିବ ନବାଶ ।
ଲଯ୍ୟେ ଘେନ
ଲାଜ ପଛେ ଥୋଇ କର ଗମନ । ୨୮ ।

ବୋଲନ୍ତି ଶ୍ରୀପତ ଶୁଣ ଆଗୋ ଦୂତ
ତଥ୍ୟ କଲ ଯେବେ ସଜନୀ
ବିଳମ୍ବ ନକର ବେଗେ ଯିବା ଚଳ
ଉଛୁର ହେଉଛି ରଜନୀ
ବେଗେ ଗମନ
ବଜେ କଲେ ସେ ରାଧାର ସନ୍ଧାନ । ୨୯ ।

ଶ୍ୟାମ ସୁନାଗର ସୁଖର ସାଗର
ସଦନେ ହୋଇଲେ ପ୍ରବେଶ
ସଙ୍ଗେ ଚନ୍ଦ୍ରାବଳୀ ଘେନ ବନମାଳୀ
ମିଳିଲେ ରାଧିକାର ପାଶ
ଶଶୀ ମୁହାଁ
ଶୋଇ ମିଛେ ହୋଁ ନୟନ ବୁଜଇ । ୩୦ ।

ସଖୀ କର ଧର ସଖୀ ଚନ୍ଦ୍ରାବଳୀ
ଫଳକୁଁ ତୋଳଲେ ଭୁଜରେ
ସକଳ ଦୋଷ କ୍ଷମା କର ବୋଲିଣ
ସମର୍ପି ଦେଲେ କୃଷ୍ଣ ହସ୍ତେ
ସୁଖେ ବୋଲାଇ
ସଖୀ ଆପଣା ଭୁବନକୁ ଚଳାଇ । ୩୧ ।

ଶ୍ୟାମ ସୁନାଗର ସୁଖର ସାଗର
ହରଷେ ବୋଲନ୍ତି ବଚନ
ସକଳ ତାପ ମୋ ହୃଦରେ ବେଦନା
ନ ଦେଖି ତୁମ୍ଭର ବଦନ
ସଖୀ ସୁମୁଖୀ
ସବୁ ଦଗଧେ ତୋ ରୂପ ଗୁଣ ନ ଦେଖି । ୩୨ ।

ହରିଣି ନୟନୀ କୃଷ୍ଣକଥା ଶୁଣି
ହରଷେ ବୋଲଇ ବଚନ
ହରିଲା ତାପ ମୋ ହୃଦର ବେଦନା
ଦେଖିଣ ତୁମ୍ଭର ବଦନ
ହରି ଶୁଣିଣ
ହୃଦେ ଚିପିଣ ଦେଲେ ଆଲିଙ୍ଗନ । ୩୩ ।

ଛଇଳୀ କିଶୋରୀ ଘେନି ବନମାଳୀ
ଛନ୍ଦେ କରନ୍ତି ବିଳାସ
ଗୁରୁ ମୂଢ଼ ହୀନ ପତିତପାବନ
କ୍ଷେମା କରିବାରେ ମୋର ଦୋଷ
କ୍ଷମା ସାଗର
କ୍ଷମା କର ଦୋଷ ମୋହୋର । ୩୪ ।



ଦୁଇଟି ଛନ୍ଦରେ ଏ ଚଉତିଶାଟି ଲିଖିତ । 'ଖ' ପର୍ଯ୍ୟନ୍ତ ଗୋଟିଏ, ଦ ଠାରୁ କ୍ଷ ପର୍ଯ୍ୟନ୍ତ ଅନ୍ୟ ଗୋଟିଏ ।

# କୃଷ୍ଣ ବିରହ ଚଉତିଶା

କମଳ ଲୋଚନ କୃଷ୍ଣ ମନ ଅନୁରାଗେ
କହନ୍ତି କୋମଳ ବାଣୀ ଉଦ୍ଧବର ଆଗେ
କୁରଙ୍ଗୀ ନୟନୀ ରାଧା ବିରହ ଅନଳେ
କୁସୁମ ବିଶିଖ ମୋତେ ଦହୁଅଛି ବଳେ । ୧ ।

ଖେଳି କଉତୁକ ଆଦି ନାନା ବିଧ ରସ
ଖଣେ ହେଁ ମନକୁ ମୋର ନ କରେ ଉଲ୍ଲାସ
ଖଞ୍ଜନନୟନୀ ଗୁଣ ଗୁଣି ନିଶି ଦିନ
ଖେଦ ଜଳଧିରେ ମୋର ନିମଜ୍ଜିଲା ମନ । ୨ ।

ଗହନେ ବିପିନେ ଭିଖ ଭାନୁ ସୁତା ସଙ୍ଗେ
ଗାଢ଼େ ମୁଁ ରସିଲି ନାନା ରତି ରସ ରଙ୍ଗେ
ଗାଢ଼ ଆଲିଙ୍ଗନ ରାମା କରୁଥିଲା ଯେତେ
ଗରଳ ପ୍ରାୟେକ ସେବେ ଘାରୁଅଛି ମତେ । ୩ ।

ଘାରଇ ବିଷମ ଶର ପଞ୍ଚ ମୋର ଅଙ୍ଗ
ଘୋର ବିଷାଇଲା ଶରେ ଯେସନ କୁରଙ୍ଗ
ଘନ ବନେ ରାମା କରିଅଛି ଯେତେ ଭାବ
ଘେନିଲେ କି ନିମିଷେ ରହିବ ମୋର ଜୀବ । ୪ ।

ନୀରଜ-ନୟନୀ ବିନୁ ନ ରୁଚଇ ଆନ
ନ ସହଇ ଅଙ୍ଗେ ମୋର ପବନ ଚନ୍ଦନ
ନିଶାକର କିରଣ ପାବକ ସମ ବହ୍ନି
ନ ରହିବ ଜୀବ ମୋର ନ ଦେଖିଲେ ସହ୍ନି । ୫ ।

ଚନ୍ଦ୍ରମା-ବଦନୀ ମୋତେ ଦେନି ଏକ ଦିନ
ଚୁମ୍ବି ମୋ ଅଧର ଯାହା ବୋଇଲା ବଚନ
ଚଞ୍ଚଳ ନୟନୀ ବିନୁ ନ ରହଇ ଜୀବ
ଚମକଇ ଚିତ୍ତ ମୋର ଚିନ୍ତାଇ ତା ଭାବ । ୬ ।

ଛାଡ଼ିଣ ଅଇଲି ଦିନୁ ଶଶିମୁଖୀ ରାଧା
କ୍ଷଣକ୍ଷଣକେ ମଦନ କରୁଅଛି ବାଧା
ଛାଡ଼ିବ ଜୀବନ ପୂର୍ଣ୍ଣ ଚନ୍ଦ୍ର-ମୁଖୀ ବିନୁ
କ୍ଷଣେ ନ ରହିଣ ଛାଡ଼ି ଯା ରେ ମୋର ତନୁ । ୭ ।

ଯେତେ ଦିନ ନ ଦେଖିଲି ଚନ୍ଦ୍ରମା ବଦନ
ଜୀବନ ଦହଇ ମୋର ଦାରୁଣ ମଦନ
ଜୀବନ ରହିଛି ସ୍ନେହ କଥା ମନେ ଘେନି
ଜୀବନ ଗଲେ ଦେଖିବ କୁରଙ୍ଗନୟନୀ । ୮ ।

ଝର ଝର ନୟନରୁ ବହୁଅଛି ନୀର
ଝସ କେତୁ- ଶର-ଘାତେ ଅବଶ ଶରୀର
ଝୁରଇ ପରାଣ ଗୁଣି ସୁମୁଖୀ-ସେନେହ
ଝାସିବ ଅନଳେ ନଷ୍ଟେ ତେଜିବ ମୁଁ ଦେହ । ୯ ।

ନଳିନ-ନୟନ-ମୁଖୀ ନ ଦେଖି ମୋ ମନ
ନ ସହଇ ସୁଶୀତଳ ସୁଭନ ପବନ
ନିଶି ନିମିଷକ ନବ କୋଟି ଯୁଗ ସମ
ନେବ ଜୀବ ବୋଲି ମୁଁ ବିଚାରୁଅଛି କାମ । ୧୦ ।

ଟହ ଟହ ଭସ୍ମ ହୀନ ବିମ୍ବାଧର ଜ୍ୟୋତି
ଟଳିବ ତା ଦେଖି ମୁନି ଜନଙ୍କର ମତି
ଟାଣ ମନସିଜ ଶରେ ଅଥିର ମୋ ତନୁ
ଟଳିବ ଜୀବନ ଶଶିମୁଖୀ ରାଧା ବିନୁ । ୧୧ ।

ଠୁଳ କରି ସକଳ ଲାବଣ୍ୟ ଆଣି ଧାତା
କଠିନ କରି ନିର୍ମାଣିଲା ସୁନ୍ଦର ଅଙ୍ଗ ତା
ଠଣ ସରସିଜ ମୁଖ ନ ଦେଖିଲି ଦିନୁ
ଠିକେ ବିଷମ ବିଶିଖ ଦହଇ ମୋ ତନୁ । ୧୨

ଡ଼ହକ ହେମ ବରଣୀ ନୟନେ ନ ଦେଖି
ଡ଼ଙ୍କଧର-ଶତ୍ରୁ ବାଣେ ହୋଇଲି ମୁଁ ଦୁଃଖୀ
ଡ଼ୋଳେ ଯେଉଁ ଦିନ ମୁଁ ଦେଖିବି ତାର ମୁଖ
ଡ଼ୋଇବ ମନେ ମୋର ଅଛି ଯେତେ ଦୁଖ । ୧୩ ।

ଢ଼ାଳେ ସେ ସୁମୁଖୀ ମୁଖ ନ ଦେଖିବ ଯେବେ
ଢ଼ମ କହୁନାହିଁ ପ୍ରାଣ ତେଜିବ ମୁଁ ତେବେ
ଢ଼ମାଳ ବୋଲଣି ଗ୍ରମା ବୋଲଅଛି ଯାହା
ଢ଼ାଳେହେଁ ନରହେ ଜୀବ ସୁମରିଲେ ତାହା । ୧୪ ।

ଅମଳ କମଳ ନେତ୍ର ନ ଦେଖି ତାହାର
ଅଣଆୟତ୍ତ ହୋଇଲା ଏ ମୋର ଶରୀର
ଅନ୍ତରୁ ଅନଳ ମୋର ଦହୁଅଛି ଦେହ
ଅବଶ୍ୟ ତେଜିବ ଜୀବ ନ ଦେଖିଲେ ସହି । ୧୫ ।

ତାହାର ଅଧରୁ ମଧୁ ଯେ କରିବ ପାନ
ତ୍ରିଦଶ ସୁନ୍ଦରୀରେ ତା ନ ରସିବ ମନ
ତରୁଣୀ ରତନ ରାଧା ନ ଦେଖିବ ଯେବେ
ତ୍ରିଭୁବନ ଅନ୍ତ ପଣ ନ ଯୋଗାଇ ତେବେ । ୧୬ ।

ଥିର ହୋଇ ସଂସାର ରଚନା ଗୁଢ଼ ବିହ୍ନି
ଥିରେ ବସି ବହୁ ଯୁଗେ ନିର୍ମାଣିଲା ବିହି
ଥଳ ସରସିଜ ତାର ଶ୍ରୀଚରଣ ବେନି
ଥିଲାକାଳେ ନିରନ୍ତରେ ହୃଦେ ଥାଇ ଧେନି । ୧୭ ।

ଦାରୁଣ ଦଇବ ଦୁଃଖୀ ହେଲା ଏତେ ଦିନେ
ଦୀନ ହୋଇଅଛି ମୁହିଁ ସଖୀର ବିହୁନେ
ଦଇନ କରୁଛି ଶୁଣ ଏ ମୋର ବଚନ
ଦେଖାଅ କମଳମୁଖୀ ରଖ ମୋ ଜୀବନ । ୧୮ ।

ଧଇର୍ଯ୍ୟ ମୋ ଧସୁଅଛି କୁସୁମ ବିଶିଖ
ଧରିଅଛି ଜୀବ ତା ଚିନ୍ତଣ ପଦ୍ମମୁଖ
ଧରି କୋଳେ ସଖୀ ମୋତେ ବୋଲଅଛି ଯାହା
ଧରିବ ଜୀବନ କାହୁଁ ପାସୋରିଲେ ତାହା । ୧୯ ।

ନିରନ୍ତରେ ମନସିଜ କରଇ ପ୍ରହାର
ନ ଦେଖିଲା ଦିନୁ ଚନ୍ଦ୍ରବଦନ ତାହାର
ନ କରି ବିଳମ୍ବ ମିତ ଯାଅ ବେଗ ହୋଇ
ନିମିଷେ ତା ବିନୁ ମୋର ଜୀବ ନ ରହଇ । ୨୦ ।

ପଞ୍ଚଶରଘାତ ଆଉ ନ ସହିବ ଦେହି
ପାଶଲେ ଉଦ୍ଧର ବାରେ ଘେନଆସ ଯାଇଁ
ପରଭୃତବରମାଙ୍କ ଦେଖିବ ମୁଁ ଯେବେ
ପାପିଷ୍ଠ ମଦନ ଭୟ ତେଜିବ ମୁଁ ତେବେ । ୨୧ ।

ଫ୍ରୁଣା ହୋଇଣ ଶଶିମୁଖୀ ରାଧା ସଙ୍ଗେ
ଫାଇ କାଳ କେତେ ମୁଁ ରମିଲି ନାନା ରଙ୍ଗେ
ଫାଟଇ ହୃଦୟ ମୋର ପଡ଼ିଲେ ସେ ମାନ
ଫାନ୍ଦରେ ପଡ଼ିଲେ ଶିଶୁ କୁରଙ୍ଗ ଯେସନ । ୨୨ ।

ବିଳମ୍ବ ନ କର ମିତ ଚଳସି ବହନ
ବିଧୁମୁଖୀ ଆଗେ ମୋର କହ ନିବେଦନ
ବିକଳ ହୋଉଛି ମନ ତା ମୁଖ ନ ଦେଖି
ବିନତି କରଣ ମୋର ଆଣ ପ୍ରାଣସଖୀ । ୨୩ ।

ଭ୍ରୂଜେ ଭ୍ରୂଜେ ଭିଡ଼ ମୋତେ କୁରଙ୍ଗ-ଶାବାକ୍ଷି
ଭାବଭରେ ଯେତେକ ବଚନ କହିଅଛି
ଭାଳୁଅଛି ରଜନୀ ଦିବସେ ବସି ତାହା
ଭେଦିଲା ମରମେ ମୋର ଗାଢ଼େ ରତି ନାହା । ୨୪ ।

ମାଳତୀ ନ ପାଇ ଯେହ୍ନେ ମଧୁକର ଦୁଃଖୀ
ମୋର ମନ ତେସନ ନ ପାଇ ଶଶିମୁଖୀ
× × × ×
× × × × । ୨୫ ।

× × × ×
× × × ×
ଯାର ବିନୁ କ୍ଷଣେ ହେ ନ ରହେ ମୋର ତନୁ
ଯୁଗ ଜାଣିଣ ଯାପେ ନିମିଷ ଅନୁମାନୁ । ୨୬ ।

ରସାଣିଲା କନକ ସମାନ ତାର କାନ୍ତି
ରଯ୍ୟଣୀ-ନାଥକୁ ନିନ୍ଦାକରେ ମୁଖ-ଭାନ୍ତି
ରତିପତି-ଚାପ ଜିଣି ଭୂରୁ ଯୁଗ ଶୋହେ
ରମଣୀ ରତନ ରାଧା ମୁନି ମନ ମୋହେ । ୨୭ ।

ଲଳନା ରତନ ଦିନେ ଲତାନ୍ତରେ ଯାଇଁ
ଲୁଚିଲା ମୋହର ମନ ଜାଣିବାର ପାଇଁ
ଲୋଡ଼ି ଲୋଡ଼ି ରୋଦନ ମୁଁ କଲି ଯେତେବେଳେ
ଲାଜ ତେଜି ଶଶିମୁଖୀ ଧରି ମୋତେ କୋଳେ । ୨୮ ।

ବୃନ୍ଦାବନେ ବିପୁଳଜଘନୀ ଏକ ଦିନ
ବିବିଧ ବିଳାସ ରସେ ତୋଷିଲା ମୋ ମନ
ବସାଇ ଜାନୁରେ ରାମା ଯାହା ବୋଲିଅଛି
ବିସ୍ମରି ସେ କଥା ମୋର ଜୀବନ ଯାଉଛି । ୨୯ ।

ସରସିଜ ପତ୍ର ମୁଖୀ ବଚନ ମାଧୁରୀ
ସ୍ମରଣ ଶରୀର ମୋ ହୋଉଛି ବିଦାରି
ସଂଶୟ ବଚନ ତୋତେ କହୁଅଛି ମିତ
ଶଶିମୁଖୀ ବିନୁ ପ୍ରାଣ ତେଜିବି ନିଶ୍ଚିତ । ୩୦ ।

ସରୋଜନୟନା ସଙ୍ଗ ତେଜିଲାର ଦିନୁ
ସତ ଯେ ବିରହ ଜ୍ୱରେ ଦହୁଛି ମୋ ତନୁ
ସୁମୁଖୀ ସେନହମାନ ସୁମରି ମନରେ
ସତତ କୁସୁମଶର ପଡ଼ଇ ଅନ୍ତରେ । ୩୧ ।

ଶୁଣ ଶୁଣ ମିତ ତୁ ଯେ ମୋହର ବଚନ
ସରସିଜମୁଖୀ ପାଶ କରସି ଗମନ
ସଖୀର ଆଗରେ ମୋର କହିଯାଇଁ ବାଣୀ
ସତେ ହେ ନିର୍ଦ୍ଦୟା ମୋତେ ନ କରୁ ତରୁଣୀ । ୩୨ ।

ହରିର ବଚନ ଶୁଣି ଉଦ୍ଧବ ହରଷ
ହୋଇଣ ବାହାର ବେଗେ ଗୋପରେ ପ୍ରବେଶ
ହରିଣନୟନୀ ରାଧା ନିକଟକୁ ଯାଇ
ହରଷେ ହରି ସନ୍ଦେଶ କହିଲା ମଣାଇଁ । ୩୩ ।

କ୍ଷେତ୍ରବର ନୀଳାଦ୍ରି-ନାୟକ ଦୀନବନ୍ଧୁ
କ୍ଷମାଶୀଳ ଶରଣ-ରକ୍ଷଣ କୃପାସିନ୍ଧୁ
କ୍ଷୀରାବ୍ଧି-ନନ୍ଦିନୀ-ପତି ରୁଚିର ଚରଣ
କ୍ଷକ୍ଷଦେ ଗୋକୁଳ ଚନ୍ଦ୍ର ପଶିଲା ଶରଣ । ୩୪ ।



# କୁମୁଦକାନ୍ତ ଚଉତିଶା

( ରାଗ—କଉଶିକ )

କୁମୁଦକାନ୍ତ କଳାପୂର୍ଣ୍ଣ ଆନନ କୋକନଦ ପ୍ରାୟେ ଶୋଭନ
କମଳପାଣି ଗଣ୍ଡଭାଗେ ସଂଯୋଗ କରିଅଛୁ ଅଧୋ ଲପନ
କାନ୍ତେ କୋପିତ କଟାକ୍ଷେ ତା ଅଧର ସୁରଙ୍ଗ,
କନ୍ଦର୍ପ କେଳି କଳହଂସୀ କି ଆଶେ ହେମ ପଙ୍କେ ବନୁ ଝରଙ୍ଗ ।୧।

ଖଞ୍ଜନନୟନ ଖେଦ ରେ ଅରୁଣ ଖଟ୍ବାଙ୍ଗଧର ରିପୁ ଶର
ଖଗପତି ନାଥ ବପୁ ବିଦାରିକି ଶୋଣିତ ଅଙ୍କିତ ଶୋଭାର
ଖରେ ଲୋତକ ଖଣିକ ଭୁଟେ ମୋତି ସର,
ଖୀରୋଦଗୀ ଅଙ୍ଗ ଅନୁରାଗ ନୀର ଖେଦଜଳେ ମିଶି ଉଚ୍ଛୁଳ । ୨ ।

ଗନ୍ଧତିଳକ କେଉଁ ଗୋପାଙ୍ଗନାର ଗୋବିନ୍ଦ କପୋଳେ ଅଙ୍କିତ
ଗାଢ଼ ଆଲିଙ୍ଗନ କୁଚର କୁଙ୍କୁମ ହୃଦୟ ମଧ୍ୟରେ ବିଦିତ
ଗରୁସେନେହା ଧନ୍ୟ କେ ଗୋପାଙ୍ଗନା ତାର,
ଗୋବିନ୍ଦ ସଙ୍ଗେ ଅନୁଭବ ସଂଯୋଗେ ବିଭବ କରିଛୁ ବାହାର ।୩।

ଘେନିଲ୍ଲ ମାନ କ୍ରୋଧ ଶ୍ରୀ ଭ୍ରୁ ଆନନ୍ଦ ଘଞ୍ଚ ନର୍ତ୍ତ୍ୟଯ୍ଯି ଭ୍ରୁ ଲତା
ଘୋଟିଲା ମାନ ଅନୁରାଗ ଚନ୍ଦ୍ରକୁ ଘନଘୋର ମେଘେ ଅଙ୍ଗତା
ଘୋଷେ ଅମିୟ ମୃଦୁ ବଚନ ମଧୁଧାରା,
ଘେନ ବିନୟ ମନେ ଆନ ନ ଧର ମୋର ହୃଦୟ ହାରାବଳୀ ।୪।

ନୀଳ କୁଟିଳ କୁନ୍ତଳ ଶୁକ ଶିରୀ ନନ୍ଦସୁତ ନବଘନ କାନ୍ତ
ନିଶି ନୀଳମେଘେ କି ଏ ଉଡ଼ୁଗଣ ନିକର କୁସୁମ ଶୋଭନ୍ତ
ନିରଦୟା ଗୋ ସ୍ବଭାବେ କୁଟିଳ ଜନର
ନିଶ୍ଚେ ମତ୍ତଗଜ ଆଞ୍ଚୁ କର୍ଣ୍ଣୀରବ ରହିଅଛୁ ତବ ଭାଲର । ୫ ।

ଚଞ୍ଚଳ ତୋର କର୍ଣ୍ଣଧାଏ ଅଳକା ଚରେକି ମଧୁକରମାଳା
ଚକୋରପନ୍ତି ସୁଧାରସ ପାନେ କି ଚନ୍ଦ୍ରାର୍ଦ୍ଧ ଭାଲେ କରେ ଲୀଳା
ଚାରୁକପୋଳେ ମୃଗମଦ ଛଟା ଆଭାସେ
ଚତୁର ଜନ ଚିତ୍ତବନ୍ଦୀ କାରଣେ ଗୁପଧରର କାଏ ପାଶେ ? ।୬।

ଛୁରେନ୍ଦ୍ର ସୁତ ବମ୍ବ ବଡ଼ମ୍ବନକୁ କ୍ଷମ ମୁଖ କାନ୍ତ ମୁକୁର
ଛୀନ ଦଶଇ ଅଞ୍ଜନ ବାର ଲଗି ଛିଦ୍ର ଆଖିଣ ଦହେ ମାର
ଛୁଡ଼ି ଚାପ ଗୋ ଛଳ ତେଜ ଦଅ ଚୁମ୍ବନ
ଛୁଡ଼୍ ଶରାସନ ଛକ୍ଷଣ ନାଗର କ୍ଷୋଭ ପାଉ ମନେ ମଦନ । ୭ ।

ଜଗତ ଜିଣି ମଦନ ଜୟେ ଧନୁ ଜାଣି ରହିଲା ତୋ ଭ୍ରୂ ରହି
ଯୁବା ଜନଙ୍କୁ ତୋ ମୋହନ ନାଗର ଜାଣି ନ ସେବଲେ ନ ଜୀଇ
ଜଗତରେ ଗୋ ଜାଣି ତୁ ଜାଣୁ ଶିରୋମଣି
ଜୀବ ଭଂସିଲା ତୋ ଭ୍ରୂ ରହି ସର୍ପିଣୀ ରଖ କହି ବିଷ ବାରୁଣୀ । ୮ ।

ଝଲ ଝଲକେ ମଦନ ଜୟୀ ଶର ଝଲକୁ ଅଛି ବାତ କୁଳ,
ଝଲକ ଅଛି ରୋମ ମୂଳେ ନାଗର ବିପୁଳ ପୁଲକେ ଶରୀର
ଝଡ଼ି ଶିଶୁ ଗୋ ଧାଉ ବଣ ମୃଗ ଲୋଚନ
ଝମଣ୍ଟେ ଚୁହାଁ । ଭାବ ଅନୁରାଗେଣ ଝଡ଼ୁ ମଦନ ଶରାସନ । ୯ ।

ନାସାବରେ ଲୁଲେ କୁବଳୟ ଫଳ ନିର୍ମଳ ଜ୍ୟୋତି ସେ ଆଭାସି
ନିଶାନାଥ ପଦ ଆଶେ କି ଅଧରୁ ନେବ ପୀୟୂଷ ଗତ ଶଶୀ;
ନାସା ଫୁଲାଇ ନୟନ ବଙ୍କିମେ ଅନାଇ
ନିର୍ଦ୍ଧୟପଣ ଛାଡ଼ି କହ ସୁନ୍ଦରୀ କେବଳ ଦରହାସ ହୋଇ । ୧୦ ।

ଠହ ଠହ ଉସ୍ତାନ୍ତର ବିମ୍ବାଧରେ ଠେକ ଅମିୟ ପୂର୍ଣ୍ଣ ସଞ୍ଚୀ,
ଠାଳ ମନସିଜ ଗରଳ ମନରୁ ଦଶନ ବାସ ସୁଧା ଦେଇ
ଠେକ ଗୁପ ଯେ ଗୋଠାଣି କର୍ଣ୍ଣଯାଏ ମ······ଣି
ଠାଳିବନକ ଜୀବନ ବୋଲି ପୃଚ୍ଛେ ଶ୍ରବଣ ପାଶେ ଚୂତ ବାଣ । ୧୧ ।

ଠଣ ବାଣଜ ପଦ୍ମରାଗ ବେଷ୍ଟିତ ଠିକେ କୁଣ୍ଡଳ ସୁଧା ରସି.
ଠିକ ବଉଣ ଦଶନ ଦିଶୁ ହସ ଠାବେ ମୋର ଅଙ୍ଗ ଦଂଶସି
ଠିକ ଚତା ଗୋ ଦେଖି କାମ ହୋଇ ବିମନ,
ଠକ ନମଣ ଜୀବନ ଯିବାବେଳେ ଠାବରେ ହୁଅ ପରସନ୍ନ । ୧୨ ।

ଡ଼ମ୍ବରୁଧର ତପହତ ପଲକେ ଡୋଳେ ଦେଖିଲେ ବଧୂ ତୋର
ଡ଼ହ କଷ ହେବ ମଣିମୟ ବର ତାଠଙ୍କ ଉଦିତ ଶ୍ରୁତିର
ଡୋଳେ ଧୀରେ ଗଣ୍ଡେ ତୋ ଏ ପ୍ରଭି ବିମ୍ବତା
ଡ଼ଙ୍କଧର ରିପୁ ରହୁବରେ ଚକୁଚନ୍ଦ ନିବାଣିତ୍ରିକ ଧାତା । ୧୩ ।

ଢ଼ାଳ ଅମିୟ ସୁଲଳିତ ବଚନ ମୂକ ସେ ହେଉ କଳକଣ୍ଠ
ଢ଼ମାଳି ପ୍ରାୟେ ନମଣି ପ୍ରାଣସଖି ଢ଼ାଳ ଜୀବ ଯିବା ନିକଟ
ଢ଼ମ କରୁଛୁ ଏ ତୋର କସ ଆଭରଣ
ଢ଼ାଳେ ଜୀବଗଲେ ଅକୀର୍ତ୍ତି ଲଭିବୁ ଦୁଷିବେ ତୋତେ ନାରୀଗଣ ।୧୪।

ଅଣକଣ୍ଟକ ବିସନାଳ ତୋ ବାହୁ ଅଣଚମ୍ପକାଙ୍ଗୁଳି ଦଶେ
ଅଣଜାନ୍ତି ଦଳ ଦଶନହ ଜ୍ୟୋତି ଅନଙ୍ଗରାୟେ ଶର କସେ
ଅଣାଙ୍ଗସାର ଓଧର ଧର ମୋତେ,
ଅଣାପୂର୍ଣ୍ଣ ଜଳେ ବୁଡ଼ିଲି ସୁମୁଖି ହାହା ମୋତେ କର ଭୁରତେ ।୧୫।

ତୁଙ୍ଗ ବର୍ତ୍ତୁଳ ପୀନସ୍ତନ ଉପରେ ଥିତ ମୋତି ସରି ଜାହ୍ନବୀ
ତୋ ବପୁ ଦେଶ ରୋମାବଳୀ କାଳିନ୍ଦୀ ତା ସଙ୍ଗ ପୁଣ୍ୟ ଥିଲେ ଲଭି
ତୋଟପୁ କୁଚ ଗୋ ସଙ୍କଟେ ମୋ ମନ ରହିଲା,
ତୁ ହେନକପଟୀ ଅଞ୍ଚଳେ ଢାଙ୍କିଛୁ ତା ଶାଖୀ ମୋ ଆଗେ କହିଲା ।୧୬।

ସ୍ଥୂଳ ତୋ ନିତମ୍ବ କୁମ୍ଭୀ କୁମ୍ଭ ସ୍ଥଳ ଥାନେ କଣ୍ଠୀରବ ରହିଲା
ସ୍ଥାନ ଚକ୍ଷୁ ତୋତେ ଜଗୁଲି ବୋଲି ନିକ ନିବଳି ତା ମଧ୍ୟ ବାନ୍ଧିଲା
ଥିର ନୁହେ ଗୋ ଯେଣୁ ତୋ ଚଞ୍ଚଳ ନୟନ,
ଅନାଇଅଛି ତୋର ଗୁଣେ ଜୀବନ ସ୍ଥୂଳ କଥା ନୁହଇ ବମନ ।୧୭।

ଦହ କନକ କଦଳୀ ବିପରୀତ ଯୁଗଳ ଊରୁ ତୋର ସଖୀ
ଦରକତ ପଦ୍ମ ତୋର ପାଦ ବେନି … … … ରହି
ଦିଅ ହୃଦେ ଗୋ ତୋର ପାଦ ତଳ କମଳ
ଦେଖି ଗମନ ହଲକେ ରାଜହଂସୀ ମିଳିବେ ମାନ ସରୋବର ।୧୮।

ଧାତା ରଚନା ଏ ପ୍ରତ୍ୟକ୍ଷେ ଜଗତ ଜାଣି ଯୋଗୀ ଜନେ କହିଲେ
ଧରଣୀ ଆଦି ନିୟୁ ପୁର ସର୍ଜନା କରି ତୋ ରୂପ ନିର୍ମାଣିଲେ
ଧୈର୍ଯ୍ୟ ତରୁ ଗୋ ଛେଦିବାକୁ ତୁ ଯେ କୁଠାର
ଧ୍ୱଂସି ହୋଇଲାନି ଆପଣା ଗୋଚର ରୂପ ଦେଖି କୁଶକେତୁର ।୧୯।

ନିରନ୍ତରେ ଧାତା ନିତ୍ୟ କର୍ମ ତେଜି ନାରୀ କଟେ ଜଣେ ବଳାଇ
ନିର୍ମାଣକଲା ଅନେକ ମତେ ତୋତେ କରି ଦିବସେ ଦୁଃଖ ପାଇ
ନବ ପଞ୍ଚ ଗୋଟେ କେ ଯାତ ନାମ ବିଦିତ
ନାରୀ ଶିରୋମଣି ଗୁଣେ ସମକର ଗୋପପୁରେ କଲା ବିଦିତ ।୨୦।

ପଞ୍ଚଦହ ହେମ ପତ୍ରସରେ ମିଶି ଯେତି ତୋ ପିଣ୍ଡ ନିର୍ମାଣିଲା
ପ୍ରମୋଦଖାତରେ ଖଗ୍ରାଇଁ ସୁଧା ଦେଇ ପ୍ରମୋଦ ଯେନ ରସାଣିଲା
ପରସନ ଗୋ ବଦନ ଦେଖି ତୋ ମଦନ
ପଞ୍ଚସାୟକ ତୋହ ତହୁଁ ଯେନଣ ତିନପୁରେ ବିଜେ ରାଜନ ।୨୧।

ଫୁଲ୍ଲାରବିନ୍ଦ ତୋ ତନୁ ପରିମଳ ଫଂଟେଣ ଦୁକୂଳ ବିକାଶି
ଫାନ୍ଦେ ପଡ଼ିଲ ଫେଡ଼ଦଅ ସୁମୁଖି ! ସୁଗତି ମତ୍ତ ରାଜହଂସୀ
ଫରଲ ମୁଖଚନ୍ଦ୍ର ତୋ ଉର୍ଦ୍ଧ୍ୱ କର
ଫିଟ୍ଟ ଏକା ମଆଚ୍ଛନ୍ଦ ଅନ୍ଧକାର ଲଭଇ ତୋ ମୁଖ ସାଗର ।୨୨।

ବିଧୁବଦନୀ ବାମାମଣି ବିମନ ବଇରି ନ ବଢ଼ାଅ ସହି
ବଙ୍କିମ ବିକାର ଗୃହିଁବାର ସଙ୍ଗେ ବଙ୍କ ହୋଇଲା ତୋର ତହିଁ
ବାମା ଆଜ ଗୋ କେତେ ଅଭିମାନ ମନରେ
ବେଣ୍ଢରେ ଚଉ ବନ୍ଦୀକରି ରଖିଛୁ ଏ ତୋହର ଗୁଣସାଗରେ ।୨୩।

ଭାବ ଦେଇ ଭୃଙ୍ଗ ମନ ବନ୍ଦୀକଲୁ ଭଲା ମାଲତୀ ଫୁଲ ସହି
ଭାବ ଭରି ଗୁଣେ ମୁଦିଲୁ ସୁମୁଖି ! ଭାବେ ଭଜିଲ ତୋର ତହିଁ
ଭିନ୍ନ କରିଛୁ ଭରାନ୍ତ ଗ୍ଥର ଗ୍ଥଡ଼ି ନାହିଁ
ଭୂଇଁ କୂଳଁ ଜଳେ ହସ୍ତ ଭରୁଅଛୁଁ ତୋବିନୁ ମନେ ଆନନାହିଁ ।୨୪।

ମହୀ ମଣ୍ଡନୀ ମାଧବର ବିନଦୟେ ମନ କୁମୁଦ ବିକାଶିଲା
ମଳୟାନଳ ସ୍ପରଶରେ ଯେସନ ରସାଳତରୁ ମୁକୁଳିଲା
ମାନ ଘନ ଯେ ଅନୁରାଗ ଚନ୍ଦ୍ର ଗ୍ଥଡ଼ିଲା
ମୃଦୁ ଲାବଣ୍ୟ ଅନୁରାଗ ବଚନ ପବନରେ କରି ଉଡ଼ିଲା ।୨୫।

ଯୁବାଜନ ମଣି ଜାଣୁ ଶିରୋମଣି ଜଗୁ ଜାଣୁ ଜାଣୁ ସିହାଣ
ଯତନେ ପାଦତଳେ ପଡ଼ି ବିନୟୁ ଜଗତ ଜନର ପରାଣ
ଯୁବା ସୀମନ୍ତୀ ଜାଣି ତା ପାଦ ଧୂଆଇଲା,
ଯଶୋଦା ନନ୍ଦନ ଜୀବର ଜୀବନ ତେଣୁ ତ ମାନ ସଞ୍ଚାଇଲା ।୨୬।

ରବି ଚଳଣି ଚୁମ୍ବକ ଲୋହ ଶଶୀ ସିନ୍ଧୁ ସମ୍ମେଟ ଉଛୁଳିଲା
ରମଣୀମଣିମାନ ଅନୁରାଗେଣ ରସ ଚନ୍ଦ୍ରମା ଉଦେ କଲା
ରସେ ରୋମାଞ୍ଚ ରଙ୍ଗେ ତା ତନୁ ପୁଲକିଲା
ରତି ଲାଳସେ ହୃଦୟେ ଦମକଣ କଣ୍ଠୁଂ ଦ୍ରବଣ ଶୁଖିଲା ।୨୭।

ଲୋଭ ଲାଳସେ ସୁଧାକରଆନନା ଲକ୍ଷେ ଅନୁରାଗେ ଭିଡ଼ିଲା,
ଲାବଣ୍ୟ ମ୍ରକତ ତରୁ ଉପରେ ତା କନକ ଲତାକି ଜଡ଼ିଲା,
ଲାବଣ୍ୟ କହେ ଅମିୟ ମୃଦୁବାଣୀ,
ଲତାଭିତରେ କି ଅଣ୍ଡିରି କୋକିଳ ଋତୁ କାଳେ କରେ ସୁବାଣୀ ।୨୮।

ବଳହ ବିମ୍ବାଧର ଧରି ସୁମୁଖୀ ବଳାତ ଅଧର ଯୁଗଳ
ବିପୁଳ ପୁଲକ ବେପଥୁ ଜୃମ୍ଭଣ ଭୟେ କାମ ହୁଏ କାତର
ବନିତା-ମଣି ଅତ୍ୟନ୍ତ ସାନନ୍ଦେ ରସିଣ,
ବୋଲେ ବିଧୁମୁଖୀ ବଙ୍କିମେ ଅନାଇ ଖଞ୍ଜନ ଗଞ୍ଜନ ନୟନ । ୨୯ ।

ସମ୍ଭାଷଣ ଶୁଣି ଶ୍ରୀହରି ଆନନ୍ଦ ସରସେ ସେନେହ ବଳିଲା,
ଶ୍ରୀଭୁଜେ ଧରି କୋଳକୁ ଆକୋଶନ୍ତେ ସ୍ୱଭାବେ ଶାବ ଉଶ୍ୱାସିଲା,
ସାର୍ଦ୍ଧ କରେ ଯେ ଚେରଷ୍ଟା ହାରିଲା ସିହାଣୀ
ଶ୍ରୀଫଳ କୁଚ ପଦ୍ମ କରେ ଗୃପିଣ ଶିଶି ଗୃର କରେ ରମଣୀ । ୩୦ ।

ଶ୍ରୀଧର ସଙ୍ଗେ ଶଶିମୁଖୀ ଶୃଙ୍ଗାର ଭୟେ କାମ ହୁଏ କାତର,
ଶିରେ ଶିରେ ଉରେ ଉରେ ଭିଡ଼ାଭିଡ଼ି ବେନି ବାରି ନୁହେଁ ଶଯ୍ୟାର
ଷଷ୍ଟି ଗୁରି ଯେ ବିବିଧ ବନ୍ଧ ପରକାର,
ଶାନ୍ତ ନୋହି ରାଧା ବିପରୀତ କଲା ଧନ୍ୟ ଅନୁରାଗ ରାମାର । ୩୧ ।

ସାଗରେ ନିଶ୍ଚଳ ଶତେ ବାର ରଶି ଏ ବର ମାଗିବ କେ ସବ,
ଶେଷ ନାଗର ସହସ୍ରେ ମୁଖ ଆଣି ଏ ତୋର ବଦନ ଚୁମ୍ବିବ,
ସହସ୍ର ଭୁଜ ହୋଇ ତୋର ଅଙ୍ଗ ଭିଡ଼ିବ,
ସହସ୍ର ଲୋଚନ ଶକ୍ର ତ ହୁଅସି ତୋତେ ଗୃହିଁ ଦୁଃଖ ଏଡ଼ିବ । ୩୨ ।

ହରିଲେ ପ୍ରଭୁର ମଦନ ଆରତ ହରଣ ନୟନ ନିବର୍ତ୍ତି,
ହରି ଅଧର ସୁଧା ପାନ କରିଣ ରାଧା ହିଁ ହୋଇଲେ ତୃପତ,
ହସିବାକୁ ହିଁ ଶଉର୍ଯ୍ୟ ହୋଇବ କାହାର
ହୃଦକୁ ଗୃହିଁ ସ୍ତମ୍ଭୀଭୂତ ହୋଇଲେ ଲେଖ ରେଖାପାତ ଜରର । ୩୩।

ଛଇଳ ପ୍ରଭୁ ଚଢ଼ାଇଲେ ବିମନ ଗ୍ରୁଇଲେ ମୃଗ ମଦଯନ୍ତ୍ର,
ଛନ୍ଦିଲେ ରାଧାର କବରୀଭାର ସେ କ୍ଷମାସାଗର ପଦ୍ମନେତ୍ର,
ଗ୍ରୁଢ଼ିବାକୁ ହିଁ କଷ୍ଟେ କଷ୍ଟେ ହୁଏ ବିଗୃର;
କ୍ଷୁଦ୍ର ବୁଦ୍ଧି ଦାସ ନାରାୟଣ ବୋଲେ ଅନୁଭବର ଏ ବିଗୃର । ୩୪ ।



# ଦୂତୀ ଚଉତିଶା

କହନ୍ତି ରାଧିକା ଦୂତୀ ଶୁଣ ମୋର ଆଣି,
କାଳନ୍ଦୀରେ ସ୍ନାନ କରି ବୁଡ଼ାଇଲି ପାଣି,
କାଖେ କୁମ୍ଭ ଘେନ ମୁଁ ଆସିବାର ବେଳେ,
କୋଟିଏ କନ୍ଦର୍ପ କଳା ଊଭା ତରୁ ମୂଳେ,
ଦୂତୀସ୍ୱେ ଗୋ
ମୁହିଁ ଦେଖିଲି କଦମ୍ବ ତରୁ ମୂଳେ,
ସେହି ନନ୍ଦ ନନ୍ଦନକୁ ଆଣି ଦେନା ବଳେ । ୧ ।

ଖଞ୍ଜିଛି ଚୂଡ଼ାରେ ଦୂତୀ ନାନା ପୁଷ୍ପମାନ
ଖଗପତି ନାଥ ଶୋଭା ଅତି ବିଚକ୍ଷଣ,
ଖଣ୍ଡୁଆ ପଟମା ପାଟ ପିନ୍ଧିଅଛି ଟାଣି,
ଖେଦ ମୋ ବଳଲା ଶାନ୍ତ ଦେବୁ କିନା ଆଣି
ଦୂତୀସ୍ୱେ ଗୋ । ୨ ।

ଗଳାରେ ଶୋଭଇ ତାର ଗଣ୍ଠି ଆଉ ସୂତା,
ଗଜ ଦନ୍ତ ଶ୍ୱେତ ନେତ କନକ ପଇତା,
ଗନ୍ଧ ପୁଷ୍ପ ବନମାଳା ହୃଦରେ ଲମ୍ବଇ
ଗହନ କାଳିଆ ମେଘେ ବିଜୁଳି ଖେଳଇ
ଦୂତୀସ୍ୱେ ଗୋ । ୩ ।

ଘଟଣ ଦିଶଇ ତାଙ୍କ ଶ୍ରୀମୁଖମଣ୍ଡଳ
ଘାରି ହୁଏ ଦେହ ମୋର ଅତି ଅସମ୍ଭାଳ ।
ଘଡ଼କେ ଚେତନା ପାଇ ଘରକୁ ମୁଁ ଆସି
ଘର ବର ନ ରୁଚଇ ଝୋଷୁ ଅଛି ବସି,
ଦୂତୀସ୍ୱେ ଗୋ । ୪ ।

ନିର୍ମାଖି କରିଛି ତାଙ୍କୁ କେଉଁ ସେ ଦଇବ
ନୟନେ ଦେଖିଲି ନାହିଁ ଏମନ୍ତ ଅପୂର୍ବ,
ନୀଳ ଜୀମୂତ ତନୁ ନୂଆ ବୟସ ।
ନୋହିଲେ କି ହୋଇ ଅଛି ଏମନ୍ତ ସୁବେଶ
ଦୂତୀସ୍ୱେ ଗୋ । ୫ ।

ଚୂଡ଼ାର ଉପରେ ତାଙ୍କର ମୟୂର ଚନ୍ଦ୍ରିକା
ଚୂନ୍ଦର ଉପରେ ଆସି ଚୂନ୍ଦ ହୁଏ ଦେଖା ।
ଚମ୍ପା ବଉଳ ମାଳ ବାନ୍ଧିଅଛୁ ବାଙ୍କେ
ଚଉପାଶେ ଭ୍ରମର ଉଡ଼ଇ ଝାଙ୍କେ ଝାଙ୍କେ
ଦୃଷ୍ଟେ ଗୋ । ୬ ।

ଛଛନ୍ଦେ ଦେଖାଇ ଆଜ ମଦନ ମୂରତି,
ଛୟେ ଗଲା ପାପ ମୋର ଦୁଃସହ ଦୁର୍ଗତି ।
କ୍ଷମା ସାଗର ହରି ମହିମା ଅପାର,
କ୍ଷଣେ ନ ଦେଖିଲେ ମୁହିଁ ମନ୍ଦରୁ ବାହାର
ଦୃଷ୍ଟେ ଗୋ । ୭ ।

ଜଗତ ଜୀବନ ହରି ଯଶୋଦା ନନ୍ଦନ,
ଯମୁନାରେ ପଶି କଲେ କାଳୀୟ ମର୍ଦ୍ଦନ ।
ଯାହାର ମହିମା କଥା କହୁ ନ ସରଇ,
ଯୁବତୀମାନଙ୍କୁ ରସେ ଗରବ ଗଞ୍ଜଇ ।
ଦୃଷ୍ଟେ ଗୋ । ୮ ।

ଝୀନ ବସନ ପାଟ ପିନ୍ଧିଥାଇ ଟାଣି,
ଝଟ ଝଟ ଝଗଜଇ ରତ୍ନ ଓଢ଼ଣି ।
ଝୁମ୍ପା ଝୁମ୍ପା ପାଟ ଥୋପି ବେଣୀରେ ଲମ୍ବାଇ
ଝମକ ଚଳନେ ପାଦେ ନୂପୁର ବାଜଇ ।
ଦୃଷ୍ଟେ ଗୋ । ୯ ।

ନୁଛୁ ହୋଇ ଯାଇ ତାଙ୍କ ସୁନ୍ଦର ପଣକୁ,
ନୟନେ ଦେଖିଲୁ ନାହିଁ ଏମନ୍ତ ଜଣକୁ ।
ନୀଳ ମେଘ ପ୍ରାୟେ ତନୁ ଅଟନ୍ତି ସୁବେଶ,
ଲଲାଟେ କସ୍ତୁରୀ ଟିକା ବଉଳର ବାସ
ଦୃଷ୍ଟେ ଗୋ । ୧୦ ।

ଟେକଣ ନୟନେ ଦୃଷ୍ଟି ଚାହିଁଲେ ମୋତେ,
ଟହ ଟହ ହସୁଛନ୍ତି କହି ହୋଇ କେତେ ।
ଟାଣପଣ ସବୁ ମୋର କେଣିକି ଏହା ଗଲା,
ଟଳ ପଡ଼ୁଥିଲି ମୋତେ ଦଇବ ରଖିଲା ।
ଦୃଷ୍ଟେ ଗୋ । ୧୧ ।

ଠିଆ ହୋଇଛନ୍ତି କୃଷ୍ଣ ତ୍ରିଭଙ୍ଗି ମା ହୋଇ,
ଠିକେଣ ମୁରଲୀ ଗୋଟି ଅଧରେଣ ଦେଇ ।
ଠାଠିକେ ଦେଖିଲି ଆଜ ଠାକୁରଙ୍କ ସଜ
ଠଣ ସୁନ୍ଦର ଶୋଭା ମତ୍ତ ଗଜରାଜ ।
କୃଷ୍ଣପ୍ରେ ଗୋ । ୧୨ ।

ଡାଳରନ୍ଧ୍ର ଶୁଆ ଗୋଟି କହୁଅଛି କଥା,
ଡାଳିମ୍ବ ବୀଜର ଦନ୍ତ ସୁରଙ୍ଗ ମୁକୁତା
ଡମ୍ବରୁ ସଦୃଶ ମଧ୍ୟ ସିଂହବର ଠାଣି,
ଡଙ୍କ ଛୁଇଁଲେ ଯେହ୍ନେ ଅନଙ୍ଗ ଗୃହାଣି ।
କୃଷ୍ଣପ୍ରେ ଗୋ । ୧୩ ।

ଢାଳି ନୟନ କୃଷ୍ଣ ଅନାଇଲେ ମୋତେ,
ଢାଳେ କାମଶର ବାଣ ବିନ୍ଧୁଅଛି ମୋତେ,
ଢମପଣ ସବୁ ମୋର କେଣିକି ଗୋ ଗଲା
ଢଳି ପଡ଼ୁଥିଲି ମୋତେ ଦଇବ ରଖିଲା,
କୃଷ୍ଣପ୍ରେ ଗୋ । ୧୪ ।

ଆଣି ଯେବେ ଦେବୁ ସଖୀ କହ ସତ୍ୟ କରି,
ଅଣହେଳା କଲେ ମୋତେ ଯାଉଅଛି ମରି ।
ଅଣ ଆୟତ୍ତ ସଖୀ ହେଲା ଯେ ମୋର କାୟେ,
ଆଣି ଯେବେ ଦେବୁ ହରି ଛୁଇଁଯାଅ ଗାୟେ ।
କୃଷ୍ଣପ୍ରେ ଗୋ । ୧୫ ।

ତ୍ରୈଲୋକ୍ୟମୋହନ କୃଷ୍ଣ ତ୍ରିଭୁବନ ସାର,
ତାହାଙ୍କ ମହିମା ଯେ ଦେବଙ୍କୁ ଅଗୋଚର ।
ତେଡ଼େ ବଡ଼ ଦୈତ୍ୟଙ୍କୁ ରାମ ସେ ମାରନ୍ତି,
ତାରିଲେ ଗୋକୁଳ ପୁରେ ନନ୍ଦ ଯେ ନୃପତି ।
କୃଷ୍ଣପ୍ରେ ଗୋ । ୧୬ ।

ଥିର ଯେ ଅଧୀର କୃଷ୍ଣ ଯେ ଆଜାନୁ ବାହୁ,
ଥିରକରି ବକାସୁର ମାଇଲେ ଯେ ସେହୁ ।
ଥଳେ ବିଷ ଭରିଣ ଯେ ପୂତନା ଆଇଲା,
ଥିରକରି କ୍ଷୀରପାନେ ଜୀବନ ଶୋଷିଲା ।
କୃଷ୍ଣପ୍ରେ ଗୋ । ୧୭ ।

ଦୁଇ କର୍ଣ୍ଣେ ଶୋଭେ ତାଙ୍କ ମକର କୁଣ୍ଡଳ
ଦୟୁଣା ତୁଳସୀ ମାଳ ଲମ୍ବେ ପାଦ ତଳ
ଦାଣ୍ଡ ଦାଣ୍ଡ ବିରାଜଇ ହୃଦର ପଦକ
ଦିଶଇ ଚନ୍ଦ୍ରମା ପ୍ରାୟେ ସର୍ବ ହୁଁ ଅଧିକ
ଦୃଷ୍ଟୟେ ଗୋ । ୧୮ ।

ଧେନୁକା ମହିମା ଦୃଷ୍ଟି ଜାଣୁ କିନା ମନେ
ଧ୍ୟାୟେ କରୁଛନ୍ତି ଯାକୁ ଯୋଗୀ ଜନମାନେ ।
ଧଇଲେ ମନ୍ଦର ଗିରି ହାରିଲେକ ଇନ୍ଦ୍ର
ଧନ୍ୟ ନାମ ଦେଲେ ତାଙ୍କ ଗୋପରେ ଗୋବିନ୍ଦ
ଦୃଷ୍ଟୟେ ଗୋ । ୧୯ ।

ନାଗରୀ ମୋହନ ଦୃଷ୍ଟି ନଟବର ବେହ
ନାହିଁ ତାକୁ ମହିମା କହିଲେ ନ ସରଇ
ନୀପ ମୂଳେ ବସି ଦୃଷ୍ଟି ଅନାଇଲେ ମୋତେ
ନେଲେ ସେ ପରାଣ ହରି କି କହିବି ତୋତେ
ଦୃଷ୍ଟୟେ ଗୋ । ୨୦ ।

ପତିତ ପାବନ ପ୍ରଭୁ ସେ ପରମାନନ୍ଦ
ପର ଅପର ନାହିଁ ତା ସ୍ୱରୂପେ ଗୋବିନ୍ଦ
ପତିତ ତାରଣ ସେ ଯେ ହୁଅନ୍ତି ଆନନ୍ଦ
ପାପ ମୋର କ୍ଷୟେ ଗଲା ଭେଟିଲି ଗୋବିନ୍ଦ
ଦୃଷ୍ଟୟେ ଗୋ । ୨୧ ।

ଫୁଲ ମାଳମାନ ଦୃଷ୍ଟି ପାଉଅଛି ଶୋଭା
ଫୁଲେ ମଣ୍ଡି ଅଛି ଅଙ୍ଗ ଶିରେ ରଙ୍ଗ ଗଭା
ଫୁଲେ ଫୁଲେ ଶୋଭା ବର୍ଣ୍ଣ ପାଉଛି ଶ୍ରୀ ଅଙ୍ଗ
ଫାନ୍ଦରେ ପଡ଼ିଲା ଆଜ ଫେଡ଼ିବେ ଅନଙ୍ଗ
ଦୃଷ୍ଟୟେ ଗୋ । ୨୨ ।

ବଡ଼ ହିଁ ମହିମା ଦୃଷ୍ଟି ବୟସରେ ସାନ
ବଡ଼ ବଡ଼ ଦଇତଙ୍କୁ କଲେ ସେ ନିଧନ
ବାଳୁତ କାଳରୁ ବଳ ଜାଣି ଛଳେଁ ତାର
ବାମ ପାଦେ ଶକଟା ଭାଞ୍ଜିଣ କଲେ ଚୂର ।
ଦୃଷ୍ଟୟେ ଗୋ । ୨୩ ।

ଭକତ ବତ୍ସଳ ସେ ଗୋ ଭାଗ୍ୟ ବିବାରଣ
ଭଜନ୍ତି ଭକତ ଜନ ଅଭୟ ଚରଣ
ଭକତ କରୁଛି ଦୂତି ଆଣି ଦେବୁ ମୋତେ
ଭୁଞ୍ଜାଇବ ଯେଉଁ ଧନ ଭାବନା ନିମନ୍ତେ
ଦୂତୀଶୟେ ଗୋ । ୨୪ ।

ମଦନ ମୋହନ ରୂପ ଶ୍ରୀ ନନ୍ଦ ନନ୍ଦନ
ମନ୍ଦ ମନ୍ଦ ବାୟୁ ଅଛି ଫୁଲ ଯେ ଚନ୍ଦନ
ମୋହନ ମୂରଲୀ କରେ ମନ୍ଦ ମୃଦୁ ହସି
ମୂର୍ଚ୍ଛାଗତ ଗଲି କାଖୁ ଖସିଲା କଳସୀ
ଦୂତୀଶୟେ ଗୋ । ୨୫ ।

ଯେବଣ ଦିନରୁ ଦୂତି ଯଶୋଦା ଜାତ କଲା
ଜଗତ ଜନମାନଙ୍କ ପାପ କ୍ଷୟେ ଗଲା
ଯାହାର ମହିମା ସଖି ଦେବେ ଅଗୋଚର
ଜୟେ କରି ମାରନ୍ତି ସେ ଅନେକ ଅସୁର
ଦୂତୀଶୟେ ଗୋ । ୨୬ ।

ରାଧା ରାଧା ବୋଲି ଦୂତି ବାଉ ଅଛି ବେଣୁ
ରସିଲା ମଦନ କଥା ଘାରିଲା ମୋ ତନୁ
ରହି ନ ପାରଇ ମୁଁ ଯେ ଲୋକଙ୍କର ଲାଜେ
ରହିବ ମରମ କଥା ମରମର ମାଝେ
ଦୂତୀଶୟେ ଗୋ । ୨୭ ।

ଲମ୍ବିତ ହେଉଛି ଦୂତି ଶ୍ରୀକୃଷ୍ଣର ଆଗେ
ଲହରୀ ପଉବନ ମୋର ଲାଗିବ ଶ୍ରୀ ଅଙ୍ଗେ
ଲଜ୍ଜା ଛାଡ଼ିଣ ଦୂତି କହୁଅଛି ତୋତେ
ଲେବୁ ତୁ ଗଳାରୁ ହାର ଦେବଇଁ ତୁରିତେ
ଦୂତୀଶୟେ ଗୋ । ୨୮ ।

ବିସ୍ମରିଣ କହି ସଖି ଯେ ତୋର ମନକୁ
ବୋଇଲେଣ ଯିବ ଆଜ ନିକୁଞ୍ଜ ବନକୁ
ବାଲ୍ୟତ କାଳରୁ ବଳ ଜାଣଇତ ମୁହିଁ
ବାହୁ ବଳେ କଂସକୁ କାଟ ପ୍ରାୟେ ମଣଇ
ଦୂତୀଶୟେ ଗୋ । ୨୯ ।

ସଂସାର ସାଗର ଗୋ ଦୂତି ଏ ସୁଖ ସାର
ସଂସାରରେ ଦେଖିନାହିଁ ଏମନ୍ତ ସୁନ୍ଦର
ଶରଧା ବଳିଲା ମୋର ଶ୍ରୀମୁଖଙ୍କୁ ଦେଖି
ସାଧୁ ଜନମାନ ସବୁ ଶରଣ ଛନ୍ତି ଟେକି
ଦୂତୀସ୍ବେ ଗୋ । ୩୦ ।

ସବୁ ଲକ୍ଷଣ ଗୋ ଦୂତି ଶ୍ରୀ ଅଙ୍ଗେ ଅଛି ପୂରି
ଶରଦ ପୂର୍ଣ୍ଣିମା ଯେସନେ ରଜନୀ ଆଲୋକ କରି
ସୂର୍ଯ୍ୟ ଉଦେ ହେଲେ ଯେସନେ ହୁଅଇ ଦିବସ
ସେହିମତି ଶୋଭା ପାଉଛନ୍ତି ହୃଷୀକେଶ
ଦୂତୀସ୍ବେ ଗୋ । ୩୧ ।

ଶ୍ୟାମ ସୁନ୍ଦର ରୂପ ତ୍ରିଭୁବନେ ଶୋଭା
ସଙ୍ଗ ପୁର ନାରୀ ଗଣେ ରୂପ ଗୁଣେ ଲୋଭା
ଶତ କୋଟି ଚନ୍ଦ୍ର ଜିଣି ଶ୍ରୀ ମୁଖ ଉଜ୍ଜ୍ବଳ
ଶୀଘ୍ର ହୋଇ ଘେନିଆସ ଯାଇ ନନ୍ଦ ବାଳ
ଦୂତୀସ୍ବେ ଗୋ । ୩୨ ।

ହରଷ ହୋଇଣ ଦୂତୀ ଗଲାକ ଚଳାଇ
ହରିଙ୍କି ନିକୁଞ୍ଜ ବନ ଆଣିଲା ମଣାଇ
ହରି ହେଲେ ଭେଟା ଭେଟି ରାଧିକା ସଙ୍ଗର
ହରଷ ହୋଇଲେ ରାଧା ପଲଙ୍କ ଉପର
ଦୂତୀସ୍ବେ ଗୋ । ୩୩ ।

ଛ ଛନ୍ଦେ ଗୁଡ଼ିଲା ଅଙ୍ଗ ଅନଙ୍ଗର ବାଧା
ଛ ଛନ୍ଦେ ଶ୍ରୀକୃଷ୍ଣ ରତି କଲେଟି ଶରଧା
ଛ ଛନ୍ଦେ ଗାଇଲା କବି ସଦାନନ୍ଦ ରସି
ଛ ଛନ୍ଦେ ଶ୍ରୀରାଧା କୃଷ୍ଣ ପୀରତିରେ ଭାସି
ଦୂତୀସ୍ବେ ଗୋ । ୩୪ ।



# ଚଉତିଶା ଚଉତିଶା

## ବିଷ୍ଣୁ ଦାସ

କମଳ ଦଳ ଲୋଚନୀ          ରଙ୍ଗ ଚନ୍ଦ୍ର ବଦନୀ
କରୀନ୍ଦ୍ର ଗାମିନୀ ମୁନି ମୋହିନୀ
କୃଶୋଦରୀ ରୂପବତୀ          କୁଟିଳ ଚିକ୍କଣ କେଶୀ
କନ୍ଦର୍ପ କେଳି ଲାଳସୀ ପିକବଚନୀ
କାମିନୀରେ ଶୁଣି ତୋ ମୁଖ
କାମଦେବ କାଣ୍ଡେ ନିତ୍ୟେ ଦେଉଛି ଦୁଃଖ । ୧ ।

ଖଞ୍ଜନଲୋଚନୀ ସଖୀ          ରସିକ ଆନନ୍ଦ ସୁଖୀ
କ୍ଷଣେ କି ମନରୁ ତୋର ହୁଏ ମୁଁ ରୁଷ୍ଟି
ଖଣ୍ଡି ସେ ସୁଖ ବିଧାତା          ଖଟାଇଲା ବନ୍ଧୁ ଚିନ୍ତା
କ୍ଷଣେହେଁ ନ ଛାଡ଼ୁ ମୋତେ ସ୍ମରୁ ମୃଗାକ୍ଷି
ଖଟିଥିବି ନିରତେ ତୋତେ
ଖଣ୍ଡେନ୍ଦୁ ଶିଖର ଏହା କରିବ ମୋତେ । ୨ ।

ଗୁପତ ବଚନୁ ତୋର          ଶୁଣିଲେ ହୃଦୟୁ ମୋର
ଘାର୍ଣ୍ଣି ହେଉଥାଇ ପ୍ରିୟା ମଧୁରଭାଷୀ
ଗେଲେ ଗୁହାଁବା ନୟନ          ଦହଇ ମୋର ଜୀବନ
ସୁଖରେ ଗୁଣ ରତନ ଯୁବତୀରାଶି
ଗୁ ରୁ ତୋର ଯେତେ ସେନେହ
ଗୁପତ କ୍ରୀଡ଼ାରେ କର କଣିକୁ ଦେହ । ୩ ।

ଘନସ୍ତନୀ ଘନକଣି          ସମୟେ ଚିନ୍ତିଲେ ତୋତେ
ମଦନ କରଇ ମୋତେ ଅତି ଆତୁର ।
ଘୋଷୁଥାଇ ବିବାକଣି          ଅନୁବରତରେ ବସି
ଅଧରେ ଉପରେ ଦେବା ଚୁମ୍ବନ ତୋର
ଘେନ ତୋର ବଚନୁ ଗୁଣ
ଘାରି ହେଉଥାଇ ନିରନ୍ତରେ ପରାଣ । ୪ ।

## ଚଉତିଶା ସଞ୍ଚୟନ

ନିରନ୍ତରେ ନୟନରେ ତୋ ରୂପ ଥାଇ ହୃଦରେ
ନ ପିଛୁଡ଼ଇ ନୟନ ଅଦୃଶ ଡ଼ରେ ।
ନାଗରୀ ରତନ ନିର- ନ୍ତରେ ମୋତେ ମିଳିଥିବ
ଅବିରତେ ବର ମାଗଇ ଶଙ୍କରେ ।
ନିଶି ଦିବା ଲକ୍ଷେ ବରଷ
ନ ହେବାରୁ ତୋହର ମଧୁର ହାସ । ୫ ।

ଚନ୍ଦ୍ରମା ବଦନ ତୋର ଚକୋର ଲୋଚନ ମୋର
ଚିନ୍ତା କରୁଥାଇ ନିତ୍ୟ ତୋର ବଦନ
ଚନ୍ଦ୍ର ଏବେ ବିଷ ମୋତେ ଜୀବନ ଥିବ କେମନ୍ତେ
ତୋହୋର ବିହୁନେ ଗଲେ ଯାଉ ଜୀବନ ।
ଚିକୁରକେଶୀ ମାଗଇ ଏତେ
ଚିତୋଇବୁ ଅନୁକ୍ଷଣେ ଚିତ୍ତରେ ମୋତେ । ୬ ।

ଛୁଣୋଦରୀ କ୍ଷିତିତଳ ମଣ୍ଡନୀ ନୂଆ ନାଗର
ଛାପ ନ କରିବୁ ମନେ ବାନ୍ଧବୀ ମୋର ।
ଛୁନ୍ତ ତୋତେ ଦୂରେଥିଲେ ଅଛୁ ତୋ ପାଖରେ ଭଲେ
ବିଚ୍ଛିରିବୁ ଏମନ୍ତ ମୋ ଜୀବନ ତୋର
ଛାଡ଼ି ତୋର ମନର ବ୍ୟଥା
ଛଇଲ ମଣ୍ଡନୀ ତୁ ମୋ ଜୀବନୀ କାନ୍ତା । ୭ ।

ଜଗନ୍ନାଥଙ୍କୁ ଧିଆନ ନିରନ୍ତରେ କରୁଥାଇ
ଯୁବତୀରତନ ଜକେ ତେଜିଲି ମୋତେ
ଯାମିନୀ ଶୟନରେ ନୟନେ ନିଦ୍ରା ନ ଆସେ
ପ୍ରାଣଧନ ସପନରେ ଦେଖଇ ତୋତେ
ଜପୁଥାଇ ନିରତେ ଏହା
ଯୁବତୀରତନ କରିଥିବୁ ସୁଦୟା । ୮ ।

ଝଲକଆନନୀ ତୋର ସେନେହ ବାଙ୍କେ ଗୃହିବା
ନୟନେ ମୋ ଦିଶୁଥାଇ ନିଶି ଦିବସେ
ଝୁରି ଝୁରି ତନୁ କ୍ଷୀଣ ରୁଚଇ ନାହିଁ ଚନ୍ଦନ
ଝମଟେ ହେଁ ମିଳିବଇ ତୋହର ପାଶେ
ଝାଡ଼ିରେ ଯେ ଥାଇ ମାଳତୀ
ଝମଟେହେଁ ଭୃଙ୍ଗତାର ନ ଛାଡ଼େ କଣ୍ଠ । ୯ ।

ନିର୍ମଳ ନୀରଜନେତ୍ରୀ ନବୀନ କେତକୀ ଗାତ୍ରୀ
କମ୍ପା ପ୍ରାଣ ରହିଅଛି ତୋତେ ନ ଦେଖି
ନାହିଁ ମୋ ଦେହରେ ମନ ଅଛି ତୋର ସନ୍ନିଧାନ
ନୟନ ପ୍ରତିମା ମୋର ଚନ୍ଦ୍ରମାମୁଖୀ
ନିରନ୍ତରେ କରଛି ଧ୍ୟାନ ।
ନାଗରନ୍ତ ମୋର ତୁ ଯେ ଜୀବ ଜୀବନ । ୧୦ ।

ଟଳ ମୋ ଅଙ୍ଗରୁ ପ୍ରାଣ ଯିବାକୁ ବଳୁରୁ ଥାଇ
ତୋର ଆଲିଙ୍ଗନଭାବ ସୁମରି କରି,
ଟାକଥାଇ ଅନୁକ୍ଷଣେ ପ୍ରିୟା କି ଆସିବ ଏଣେ
ରହିଅଛି ଜୀବ ତୋର ଗୁଣ ସୁମରି
ଟେକିଅଛି ଆଶ୍ରମୁ ତୋତେ ।
ଟଳି କି ଆକାଶ ଶଶୀ ମିଳିବ ହସ୍ତେ । ୧୧ ।

ଠଣ ତୋର ପୟୋଧର ଯେବେ ଧରିବ ମୋ କର
ସେଦିନ ଜନମକାଳ ଫଳ ଲଭିବ,
ଠାଠିକ ଶରୁକେ ତୋର ପୁଣି କି ଲାଗିବ କର
ବିଧାତା କିଏ ନିକଟ ଏ ବର ଦେବ
ଠାବେ ଠାବେ ଲେଖି ତୋ ମୁଖ
ଠାଠିକ ଦର୍ଶନ କରି ଲଭଇ ସୁଖ । ୧୨ ।

ଡାକୁ ଯେ ଡୋଳରେ ଧରି ଡମ୍ବରୁମଧ୍ୟା ସୁନ୍ଦରୀ
ଡାଳିମ୍ବବୀଜଦଶନୀ ସେନେହେ ମୋତେ
ଡକା କରଇ ମଦନ ସେ କଥା ପଡ଼ିଲେ ମନ
ଦମକାଇ ହିଆଁ ମୋର ଚମକିଲେ ଚିତ୍ତେ
ଡରୁଥାଇ ତୋର କୋପକୁ
ଡର ଏବେ ହୋଇଲା ମଦନ ବାଣକୁ । ୧୩ ।

ଡମ ପ୍ରାୟେ ନ ମଣିବୁ ଏମନ୍ତ ନିଷ୍ଠେ ଜାଣିବୁ
ଜୀବନ ଶରୀର ମୋର ଆୟତ୍ତ ତୋର
ଡାଳି ତୋ ସୁଧା ଅଧରୁ ସୁଧା ପିଆଇବା ଯାଏ
ମତେ ଜୀଆଇଁ ଥିବ ଦାରୁଣ ମାର
ଡାକେ ହେଁ ତୁ ପ୍ରିୟା ମୋହର
ଡମ ପ୍ରାୟେ ନ ମଣିବୁ ନିଷ୍ଠେ ମୋହର । ୧୪ ।

ଏଣାକ୍ଷୀ ଉଦୟ କାଳେ ଅମ୍ବୁଜ ଦଳ ଲୋଚନୀ
ଆତଙ୍କ ହୁଅଇ ସଖି ତୋ ମୁଖ ଚନ୍ଦ୍ର
ଆନରେ ନ ଯାଇ ମନ ଅହର୍ନିଶି ତୋତେ ଧ୍ୟାନ
ଯେସନେ ଚକୋର ଧ୍ୟାନ ରଜନୀପତି
ଅଧ୍ୱନରେ ଯେତେକ ସୁଖ
ଅଣୁମାତ୍ର ନମଣଇ ଦେଖି ତୋ ମୁଖ । ୧୫ ।

ତରୁଣୀକୁଳ ରତନ ତୋତେ ଲଭିଥିଲେ ମନ
ଆନ ନାଶ୍ରି ନିକଟକୁ କମ୍ପାଇ ଯିବ
ତୋ ଭାବ ରସ ସମାନେ ନାହିଁନା ତିନି ଭୁବନେ
ରତି ରସ ସବୁ କର କି ଜାଣିଥିବ
ତୁ ମୋହର ଜୀବ ଜୀବନ
ତୋର ବିନୁ କମ୍ପା ରହିବ ଅଛି ଜୀବନ । ୧୬ ।

ଥିଲା ମନରେ ଈଶ୍ୱର କନକ ପ୍ରତିମା ଗୋଷ୍ଠୀ
ଜୀବ ଥିବା ଯାଏ ମୋ ବିଚ୍ଛେଦ ନୋହିବ
ଥପୁ ନୋହିଣ ସେ କଥା ହୋଇଲା ଏବେ ଅନ୍ୟଥା
ପ୍ରାଣଧନ ଦାରୁଣ ଅଟଇ ଦଇବ
ଥିଲେ ପ୍ରିୟେ ମୁଁ ଯେତେ ଦୂରେ
ଥୋଇଅଛି ଚିତ୍ତ ତୋ ଚରଣ ସେବାରେ । ୧୭ ।

ଦୟା ଜଳନିଧି ପ୍ରିୟା ଦାସଜନେ କରୁ ଦୟା
ତେଣୁ ମୋହର ଭରସା ଅଛି ଅପାର
ଦେଖିଲେ ବଦନ ତୋର ଲଭିବ ସୁଖ ସାଗର
ଧନଜନ ବନ୍ଧୁ ତୁ ମୋ ଯୁବତୀବର
ଦୟା ଯେବେ କରିବେ ହର
ଦେବି ତୋହର ସେବାକୁ ଶରୀର ମୋର । ୧୮ ।

ଧୀରଗାମିନୀ ସକାଳେ ଏକାନ୍ତ ଶୟନ କାଳେ
ମାନସିକେ ତୋତେ ଆଣି ସଙ୍ଗ କରଇ
ଧୀରେ ହୃଦରେ ପକାଇ ମୁଖରେ ଚୁମ୍ବନ ଦେଇ
ନ ଦେଖି ନୟନୁ ବେଗେ ନୀର ଗଳଇ
ଧନ୍ୟ ଧନ୍ୟ ମହିମା ତୋର
ଧଇର୍ଯ୍ୟ ଭଙ୍ଗାଇ ଗୁଣ ଚନ୍ଦ୍ରଲେ ମାର । ୧୯ ।

ନାହିଁ ନର ପରଲୋକେ        ତୁମ୍ଭ ସମାନ ନାଗ୍ରୀ କେ
ତୁମ୍ଭେ ଯେ ନବନାଗରୀ ମୁକୁଟମଣି
ନୟନେ ଯେତ୍ତେ ଦେଖିବ        ନଷ୍ଟେ କ ତୋତେ ମୂର୍ଚ୍ଛିବ
ମଦନ ଜଳଧିକ ତୁ ସେ ତରଣୀ
ନୀରଧିରେ ଝାସିବ ଅଙ୍ଗ
ନାଗରୀ ରତନ ତୋର ଲଭିବ ସଙ୍ଗ । ୨୦ ।

ପଦ୍ମମୁଖୀ ପଲଙ୍କରେ        ମୋତେ ଦେଖି ଶୟନରେ
ସନ୍ତୋଷ ହୋଇ ଉଠି ସା ଭାବ ଚଳନ୍ତେ
ପରାଣ ଲୋଡ଼ଇ ତୋର        ନିକଟକୁ ଗମିବାକୁ
ନ ଯାଇ ରହଇ ଶିବ ଶିବ ବୋଇଲେ
ପାସୋରବୁ ନାହିଁ ତୁ ମୋତେ
ପରାଣ ବହିନେ ପ୍ରିୟା ତୋହ ନିମନ୍ତେ । ୨୧ ।

ଫୁରୁଣା ଆନନ୍ଦ ତୋର        ମେଲାଣି ଦେବା ସମୟେ
ଲୁହ ଯେ ଆଚ୍ଛନ୍ନକରି ଲୋଚନ ବେନି
ଫୁଟିଲା ପରାଏ ହୋଇ        ନିଃଶ୍ୱାସ ଖରେ ପକାଇ
କାତରେ ହୋଇଲୁ ମଥା ଠାରି ସଜନୀ
ଫୁଟିଲା ଯେ ସୁନ୍ଦର ନାସା
ଫାଇ କ୍ରୋଧଭରେ ମୁଖୁ ନଇଲା ଭାଷା । ୨୨ ।

ବଚନ ସେ କଥାମାନ        ବୁଜଇ ବେନି ନୟନ
ବୋଲଇ ସେ ବିଧୁମୁଖୀ କ କରୁଥିବ
ବଚନ ମୋହର କଥା        ପାଉଥିବ ବହୁ ବ୍ୟଥା
ନିରନ୍ତରେ ମୋର ରୂପ ଧ୍ୟାନ କରିବ
ବନ୍ଧୁ ମୁଁ ବୋଇଲି ଏମନ୍ତ
ବେଭାରେ ତ ଜାଣି ଯାହା ମନ ଯେମନ୍ତ । ୨୩ ।

ଭିନ୍ନ ଭିନ୍ନ ଦେହ ଧାତା        କରିଛି ଏକ ଜୀବନ
ଭାବିନି ଭଦ୍ରଲୋଚନି ଏମନ୍ତ ଜାଣ
ଭେଟାଇଛି ଧାତା ଭଲ        ଭଲ ଯୋଗରେ ସଙ୍ଗାତ
ନିମିଷେ ମୁଁ ପାସୋରିବ ଏହା ନ ଜାଣ
ଭୋଗୀ ମନ ଭିକ୍ଷେ ଯେସନ
ଭ୍ରମର ମାଳତୀ ବିନୁ ମଣେ କ ଆନ । ୨୪ ।

ମତ୍ତରାଜ ହଂସ ମନ      କମଳ ମୃଣାଳ ବନ୍ଧୁ
ମନରେ ରସଇ ନାହିଁ ଶୁଣ ସଜନ
ମନରେ ଏଣୁ ଭରସା      ଶୁଣାରେ ସରୋଜ ଦୃଶା
ମୋର ବନ୍ଧୁ କେହ୍ନେ ନେଉଥିବ ରଜନୀ
ମତ୍ତପିକ ଆମ୍ର ବକୁଳ
ମଳିଣ ହୋଇଣ ନ ପାଇଣ ବ୍ୟାକୁଳ । ୨୫ ।

ଜାଣୁଟିକ ଯୁବତୀରତନ      ଯୁବା ଶିରୋମଣି
ବୋଲି ଅଛୁ ନିଶି ଶେଷ କାଳରେ
ଯେମନ୍ତେ ସେକଥା ଆନ      ନୁହଇ ଜାଣୁ ରତନ
ଯେମନ୍ତେ ଧନ୍ୟ ବୋଲନ୍ତି ଜନ ରାଜ୍ୟରେ
ଜାଣୁ ଯୁବା ଯୁବତୀବର
ଜପୁ ଜପୁ ନ ସରେ ରଜନୀ ବାସର । ୨୬ ।

ରମଣୀରତନ ବାମା      ରସିକବର ଚନ୍ଦ୍ରମା
ରସଇ ଯାହାର ମନ ଯାହା ତହିଁ
ରସଇ କି ତାର ମନ      ଦେଖିଲେ ସ୍ୱର୍ଣ୍ଣ ରଞ୍ଜନ
ରସିକ ରମଣୀ ତୁ ମୋ କମଳ ମୁହିଁ
ରତନ ସେ ସୁନାର ସଙ୍ଗ
ରୁହାଇଲେ ରୂପା ଅଙ୍ଗେ ନ ଧରେ ରଙ୍ଗ । ୨୭ ।

ଲାବଣ୍ୟନିଧି ସୁନ୍ଦରୀ      ଲାଜ ଲାଜ ଭାବ କରି
ପ୍ରଥମ ସମ୍ଭୋଗେ ମୋତେ କଥା ନ କହୁ
ଲୁଚଇ ବଦନ ଇନ୍ଦୁ      ବରଷାଇ ମୁଖ ସିନ୍ଧୁ
ଭଲକରି ମୋ ମୁଖକୁ ଟେକ ନ ଚାହୁଁ
ଲାଜେ ଯେବେ ଗୁଡ଼ିଲୁ ମୋତେ
ଲାବଣ୍ୟ ବଚନେ ବଶ କଲୁ କି ସତେ ? । ୨୮ ।

ବର୍ତ୍ତୁଳ ନିତମ୍ବଦେଶ      ବଳଣି ନୀବି ବନ୍ଧନ
ଦେଖିଣ ହୃଦୟ ଲୟେ ହୁଏ କାତର
ବୋଲଇ ବିଧୁବଦନୀ      ମୋର ହୃଦୟ ମଣ୍ଡନୀ
ଦେଖାଇବୁ ନାହିଁ ନୀବି ବସନ ତୋର
ବାନ୍ଧବୀରେ ହସୁ ଯେ ଶୁଣି
ବୁଦ୍ଧି ଏବେ ଭ୍ରମ ମୋର ସେ ରସ ଗୁଣି । ୨୯ ।

ଶରଦଶଶୀ କିରଣ   କାହାକୁ କରେ ଶୀତଳ
ମୋତେ ଶୀତଳ କରଇ ତୋ ମୁଖ ଚନ୍ଦ
ସତେହେଁ ଶଶିଶେଖର   ଏହା କି କରିବେ ମୋତେ
ତୋର ମୁଖ ଚନ୍ଦ୍ରହୁଁ ଲଭିଥିବି ଆନନ୍ଦ
ସିନ୍ଧୁତଟେ ଶିବ ସେବିବି
ସେ ଫଳେ ପ୍ରାଣବଲ୍ଲଭ ତୋତେ ଲଭିବି ।୩୦।

ସ୍ନେହେ ତୋତେ ପରୁରଇ   ନଖକ୍ଷତ ଦେବି କାହିଁ
ଶ୍ରଦ୍ଧାରେ ହେଉ ତୁ ବୋଲି ବଦନଠାରି
ସେ କଥାମାନ ସୁମରି   ତାପ ନ କରିବୁ ସଖି !
ଦୋଷ ମୋର ଉପେକ୍ଷିବୁ ପ୍ରାଣଈଶ୍ୱରୀ
ସ୍ନେହ ଥାଉ ଥାଉ ବିଚ୍ଛେଦ
ଶୂଳଧର ପାସୋରିକି ପାରିବେ ଖେଦ । ୩୧ ।

ଷଶିକଳପମା ତୋ ମୁଖ   ନ ଦେଖି ପାଉଛି ଦୁଃଖ
ଶରୀର ମୋ ଦିନୁ ଦିନ କ୍ଷୀଣ ହେଉଛି
ଷାରଙ୍ଗଧର ମୋହରେ   କରିବେ କି କୃପାବାରେ
ଦେଇ ଜୀବନ ରଖିବେ ତୋତେ ମୃଗାକ୍ଷି
ସେବା ସେଣୁ ନ କଲି ହରି
ସେ କାରଣୁ ମନ୍ଦ ତୋର ବିଧିର ମୋର । ୩୨ ।

ହଂସଗମନ ସୁକେଶି   ମୋତେ ଚାହିଁ ମନ୍ଦେ ହସି
ଚୁମ୍ବନ ଦେବାକୁ ଓଷ୍ଠଯୋଗ ଯେ କରୁ
ହରଷରେ ହେଉ କୋପୀ   ଦଶନେ ଅଧର ଚାପି
ମୂରତି ବିକାରେ ନେତ୍ର ମନ୍ଦେ ପ୍ରସାରୁ
ହେଉ କାମବାଣେ ଆସକ୍ତ
ହରଷେ ଶରୀରଯାକ କରି ଦେଇତ । ୩୩ ।

କ୍ଷିତି ତଳ ମଣ୍ଡଳକ   ଅନ୍ତରେ ରହି ନାୟକ
ଦୂତହାତେ ଲିହି ଗୀତବାରତା ଦେଲେ
କ୍ଷୋଭ ଗୁଡ଼ି ଶଶିମୁଖୀ   ଆନ୍ତର ବାରତା ପାଇ
ଏମନ୍ତ ଶୁଣି ଆନନ୍ଦ ଚିତ୍ତ ହୋଇଲା
କ୍ଷକ୍ଷେନ୍ତ ଚଉତିଶା ଶେଷ
କ୍ଷଣ ଅମନ ବିଷାଦ ଜପୁ ମହେଶ । ୩୪ ।



# ଚୋଖୀ ଚଉତିଶା

## (ରାଗ—ଚୋଖୀ)

କୁନ୍ଦ ହୀରକରଦନୀ        କୁମୁଦ ବନ୍ଧୁ ବଦନୀ
କଟାକ୍ଷବଦନୀ ବୃଷଭାନୁ ନନ୍ଦନୀ
କଞ୍ଜ ପଲାଶ ଲୋଚନୀ        କୋକିଳ କଳ ବଚନୀ
କନ୍ଦର୍ପ ଦର୍ପ ମୋଚନୀ କରୀ ଗମନୀ
କାନ୍ତ ଓଷ୍ଠେ କଜ୍ଜ୍ୱଳ ଦେଖି
କଲ୍ କ୍ରୋଧ ସୁମୁଖୀ ଓଷ୍ଠାଧ ଉପେକ୍ଷି । ୧ ।

କ୍ଷିତିକ ଲଟନ କରି        କଣ୍ଣ ଗତ ସୁକୁମାରୀ
ନେତ୍ରକୁ ଶାରଦ କରି ବରଷେ ବାରି
ଖସେ କି ମୁକୁତା ଝରି        ଶରଦ୍‌ବର କି ବାହାରି
ହରଷେ ସିଞ୍ଚେ ଗଉରୀ ଟିଶାଣ ଗିରି
କ୍ଷୀଣୋଦରୀ ମାନ ଦେଖିଣ
ଖଗପତି ପତି କହେ ଗୂଢ଼ ବଚନ । ୨ ।

ଗୁରୁ ମରାଳ ଗମନେ        ନ ଧର ଭ୍ରମନ ମନେ
ଅପ୍ରାର୍ଥିତ ଦାସ ଜନେ ଶୁଣ ସୁମନେ
ଗୁରୁ ଅପମାନ ମୁଞ୍ଚ        ସୁସଞ୍ଚ ବଚନ ରଚ
ଭାସିଲ୍ ଭୃତ୍ୟକୁ ସଞ୍ଚ ମୀନ ନୟନେ
ଗଜଗତି ଆଗତ ଗତି
ଗାଢ଼ ବିପତ୍ତିରୁ ରକ୍ଷାକର ଯୁବତୀ । ୩ ।

ଘନ ଜଘନ ତରଣୀ        ବସାଇ ପ୍ରିୟେ ତରଣୀ
ବନ୍ଧୁ ନୟନୀ ତରୁଣୀ ମଦନ ଜଳୁ
ଘୃମାକ୍ଷି ରଜନୀ କର        ଚନ୍ଦନ ରଜନୀ କର
ହାସିନୀ ସଜନୀ କର ପାର କୃପାଳୁ
ଘନ ତାପ ତବ ମନରେ
ଦେଖିବା ଉଚିତ ନୁହେଁ ସେବକଠାରେ । ୪ ।

ନବ ସୁନଳିନୀ କର          ମୁଞ୍ଚ ତୁ ମାନ ନକର
ଧରୁଛି ମାନିନୀକର ସୁରତ ସାକ୍ଷୀ
ନେତ୍ର ମୋଚନ ଜୀବନ          ନ ରଖିଲେ ମୋ ଜୀବନ
ଯିବରେ ଜୀବ ଜୀବନ ଜୀବନ ଜାକ୍ଷୀ
ନାଶି ରତ୍ନ ନକର ରୋଷ
ନତନୁ ହସ୍ତେ ନ ଦିଅ ଅଲଭ୍ୟ ଯଶ । ୫ ।

ଚିନ୍ତା ସାଗର ଉଡ଼ୁପ          ପରାଣ ବନ୍ଧୁ ଉଡ଼ୁପ
ବଦନୀ ଶିର କଳାପ ତବ ବମନୁ
ଚନ୍ଦନ ତୁଷାର ଭାନୁ          ଶୀତ ଭାନ ଭାନୁ ଭାନୂ
କୃଶାନୁ ପରାୟେ ...... ଦହେ ଅତନୁ
.................. ହାସୀ
ଚିନ୍ତା ହର ଚିନ୍ତା ହର ଗଲଟି ଭାସି । ୬ ।

ଛଇଲ ବନିତା ବର          ସୁକ୍ଷୀଣ ଉଦରୀ ବର
ବର୍ତ୍ତିନୀ ନିସ୍ତାର କର ମଦନ ଜନ୍ତୁ
ଛିନ୍ନାଳି ମନ୍ଦ ମରୁତ          ...............
...........................
............ କ୍ଷିତି ମଣ୍ଡନୀ
କ୍ଷମା ସିନ୍ଧୁ ଚେଘନ ଦାସ ଜନେ ଦର୍ପିନୀ । ୭ ।

ଜନ୍ମ କଲୁ ଯେଉଁ ଚିନ୍ତା-          ଶୁଗ ଗନ୍ଧବତୀ ଚିତା
ସେ ହୋଇଲା ଆସି ମୋତେ ଝଟନ୍ତ ଚିତା
ଜନନୀ କଲା ଜନମ          ପଦ୍ମଜ କଲା ଜୀବନ
ଦହନ କଲା ଜୀବନ ହୃଦୟୁ ସ୍ମିତା
ଯହିଁ ପାଇଅଛି ଜୀବନ
ଯମ ଜ୍ୱଳନ ମଦନ ଏକ ସମାନ । ୮ ।

ଝଷକେତନ ସପତ୍ନ          ପାଦେ କଲି ବହୁ ଯତ୍ନ
ତେଣୁରେ ଯୁବତୀ ରତ୍ନ ପାଇଲି ତୋତେ
ଝୀନ ହେଲା କଳେବର          ଶୁଣରେ ଗୁରୁ ପୀବର
ସ୍ତନୀ ମୁହୁର୍ତ୍ତି ବର ବର୍ତ୍ତିନୀ ମୋତେ
ଝଷ ଧ୍ୱଜ ଦେଖି ଏ ମାନ
ଝଟିତି ନେଉଛି ପ୍ରିୟେ ମମ ଜୀବନ । ୯ ।

ଞୀଳେନ୍ଦୀବର ଈକ୍ଷଣେ		ନିଜ ସେବକର କ୍ଷଣେ
ନ ଗୁହୁଁ କମ୍ପାଇ କ୍ଷଣେ କ୍ଷଣଦା କେଶୀ
ନାଗଶ୍ରି କୁସୁମ ବାଣ		ବାଣ ବାଜି ମୋ ପରାଣ
ପ୍ରୟାଣ କରୁଛି ଆରେ ପ୍ରାଣ ପ୍ରେୟସୀ
ନାଗଶ୍ରି ମୋ ମୁଖ ମଧୁପ
ନ ବଗୁର କରି କମ୍ପା କରିଛୁ କୋପ । ୧୦ ।

ଟେକ ଶଶାଙ୍କ ବଦନ		ଗରବ ତେଜ୍ ମଦନ
ଟେଭା ପ୍ରିୟେ କୁନ୍ଦରଦନ ଶୋଭା ସଦନ
ଟାଣ କ୍ରୋଧେ ପଞ୍ଚଶର		ପ୍ରହାରୁଛି ପଞ୍ଚଶର
ପାରିଲେ ଉଦ୍ଧର ବାରେ ରମାରତନ
ଟିକାଏକ କଲେ ବିଳମ୍ବ
ଟଳିବ ଜୀବନ ନାହିଁ ଅନାବଲମ୍ବ । ୧୧ ।

ଠିକ କନକ ମୃଣାଳ		ବାହୁ ଯୁଗଳ ମୋ ଗଳ
ଲମ୍ବାଅ ତରଳ ଜଳରୁହ ବଦନା
ଠିକ ସୁରତ କୁଶଳା		ଅତନୁ ସମୁଦ୍ର ଭେଲା
ମଦାଳସା ପ୍ରେମଶୀଳା ସୁଖ ସଦନା
ଠଣ୍ ସ୍ତନା ଦଇନ୍ୟ ଘେନ
ଠୁଳ ନିଧୁବନ କରି ସଜନୀ ଧନି । ୧୨ ।

ଡ଼ହ କନକ ବରଣୀ		ଡ଼ାଳିମ୍ବ ବୀଜଦଶନୀ
ଡ଼ମ୍ବରୁମଧ୍ୟା ସଜନୀ ସୁପୀତବାସ
ଡ଼ୋଳେ ଦେଖିଲେ ତୋ ଛବି		ଯୋଗୀନ୍ଦ୍ର ମୁଖ୍ୟ ପଦବୀ
ଇଚ୍ଛା ନ କରି ସାଧବୀ ହେବେ ତୋ ଦାସ
ଡ଼ହ କାମାନଳେ ପକାଇ
ଡ଼ମ୍ବରୁମଧ୍ୟମା ଯଶ ଲଭିବୁ ନାହିଁ । ୧୩ ।

ଢ଼ମିଅ ପୁଷ୍ପ କୋଦଣ୍ଡ		ପ୍ରହାରି ସୁତୀକ୍ଷ୍ଣ କାଣ୍ଡ
ଖଣ୍ଡ ଖଣ୍ଡ କରୁଅଛି ଏ ମୋର ପିଣ୍ଡ
ଢ଼ାଳି ଗୁହିଁଲେ ଯାହାର		ଚଳିବେ ପନ୍ନଗ ହାର
ଦାସକୁ ନିକି ତାହାର ଏମନ୍ତ ଦଣ୍ଡ
ଢ଼ାଳେ ନାଶ କରୁଛି କାମ
ଢ଼ଳହର ନେତ୍ରା ଯେଣୁ ହୋଇଛୁ ବାମ । ୧୪ ।

ଏକା ପ୍ରହାର କେ ହର    ରଖିଲେ ସମାଦ୍ଧ ଜ୍ୱର
ପ୍ରାଣରକ୍ଷା ଗଲା ଆଶ୍ରେ କଲାକୁ ଉମା
ଏବେ ତା ପ୍ରହାର ଶତ    ପାଇ ଯାହା ମୋ ଜୀବିତ
ରହିଛି ତବ ଅଧରାମୃତ ମହିମା
ଅନଙ୍ଗ ସାଧ୍ୱସ ମୋଚନା
ଅମ୍ବୁଜ ଲୋଚନାବାରେ ଅନାଉକନା । ୧୫ ।

ତୋର ଏ ନେତ୍ର କୁରଙ୍ଗ    ଯହୁଁ ତୁ କଲୁ କୁରଙ୍ଗ
ଦେଖିଣ ଏହାକୁ ରଙ୍ଗାଧର ଆନନ୍ଦ
ତୋ ନେତ୍ର ଅଞ୍ଜନ ବିନୁ    ହରଷେ କୁସୁମଧନୁ
ଧଇଲା ଗୁଡ଼ିଲା ଧନୁ ଆନନ୍ଦକନ୍ଦ
ତୋଳ ସଖୀ ଲବଣ୍ୟ ମୁଖ
ତ୍ୱରିତେ ବିନାଶ ଦାସ ଦୁଃସହ ଦୁଃଖ । ୧୬ ।

ଥାଇ ମୋ ଏତେ ପରତେ    ପ୍ରାଣ ଥିବା ପରଯନ୍ତେ
ସ୍ଥୂଳସ୍ତନା ଚିତ୍ତେ ମୋତେ ନୋହିବ ରୋଷ
ଥିଲେ ତୋହର ଆଶ୍ଳଷ    କି ହେବ ମଘବା ପଦ
ମାଗୁଥାଇ ଏ ପ୍ରସାଦ ସେବି ମହେଶ
ସ୍ଥିରମନା ପ୍ରିୟେ ସୁଦକ୍ଷି
ସ୍ଥିର ଗତି ହେଉଛୁ ତ ଅସ୍ଥିର ଗତି । ୧୭ ।

ଦିବ୍ୟ ମୃଦୁକୁଳ ନଗ    ମୁକ୍ତା ହାର ପନ୍ନଗ
ଦେହକୁ ହୋଇଲା ନଗସ୍ତନୀ ମୋହର
ଦିବ୍ୟାଙ୍ଗୀ ଅମ୍ବରହର    ମୋହିନୀ ଶମ୍ବରପର
ଶରରୁ କାତରତର ଶଙ୍ଖ ··· ··· ।
ଦେବ ଦେବ ଋଷି ମୋହିନୀ
ଦାସଜନେ ଦୟାକର ··· ··· ··· । ୧୮ ।

ଧବଳ କର କରଣେ    ··· ··· ଚରଣେ
ବିପକ୍ଷିତ ରସଆଶେ ରସ ବାରିଧି
ଧଇଲୁ କରରେ କର    ବୋଇଲୁ ଏକ ବେଭାର
ଏବେ କେଣେ ଗଲା ତୋର ସୁଦୟା ବୁଦ୍ଧି
··· ··· ··· ··· ··· ···
··· ··· ··· । ୧୯ ।

ନିର୍ମଳ ଶଶୀ ଯତନ    କରଣେ ନାଶି ରତନ
ନିଷେଧ ଯେ ମରୁ ଜୀବ ମୋକ୍ଷ ସମୟେ

ନିକଟକୁ ନେଲେ କର ନିବଡ଼ ମାଡ଼ି ନିକର
ଶିଥିଳ ଯେ ଲଭିଥାଇ ତାହାର ଗୁମ୍ଫେ
ନିବରାମା ମିରଜ ମୁହିଁ
ନାଗରନ୍ ସେ ସେନେହ ଗଲା ତୋ କାହିଁ । ୨୦ ।

ପାଇଣ ବିବୁଧା ସୁଧା ଖଣ୍ଡିଲେ ସକଳ ବାଧା
ଲଭିଲେ ଅଲଭ୍ୟ ମେଧା ହୋଇଲେ ଯୋଦ୍ଧା
ପିଇ ତୋ ଅଧର ସୁଧା ଏ ଶାଦ୍ଧ ମଦନ ଲୋଧା
ଶରେ ହୋଇଲା ଶତଧା ନାଗରୀ ଧାଧା
ପଦ୍ମାକ୍ଷୀ ପାଉଛି ଏ ଦୁଃଖ
ପୀୟୂଷାଧର ତୋ ପୀୟୂଷାଧିକ୍ୟ ରଖ । ୨୧ ।

ଫାଟି ଯାଉଛି ହୃଦୟ ଯହୁଁ ସୁନ୍ଦରୀ ସଦୟ
ସୀମା ହୋଇଲା ଅଦୟ କନ୍ଦର୍ପ ଗତେ
ଫୁଲଶର ବାଣାବଳି ତହିଁକି ହୋଇଲି ବଳି
ଆଉ କି କହିବି ବାଳୀ କହିବା ଏତେ
ଫଣୀନ୍ଦ୍ର ଭୂଷଣ ମୋହିନୀ
ଫୁଲ ଶର ବାଣୁ ରକ୍ଷା କର ସଜନୀ । ୨୨ ।

× × ×

## କ୍ଷୋଭ ଲୋଭ ଛାଡ (ଅପୂର୍ଣ୍ଣ)

କ୍ଷୋଭ ଲୋଭ ଗୁଡ଼ କୁମତି
ଛନ୍ଦରେ ଯେ ଗୁପ୍ତ ଦେଖ ଏ ବସୁମତୀ । ୭ ।

ଯାହା କୃପା ପାରବାର ନାମ ହିଁ କଲେ ତା ପାର
ରଖି ନିଜ ଶକ୍ତି ସାର ଦେଲେ ଜଳରେ
ଯେଉଁ ନାମ ଇଚ୍ଛା ଭାଳ ନାହିଁ ଶୁଦ୍ଧା ଶୁଦ୍ଧ କାଳ
କାଟ ମୋହ ମାୟାଜାଲ ଭାବ ମନରେ
ଯେଉଁ ନାମ ଉଦ୍ଧାରଣ କର
ଜପ ନଯ ନକଲା ନାହିଁ ଭାଗ୍ୟ ନିକର । ୮ ।

ଝମଣେ ନକର ଲଟ କାଳ ହୋଇଛି ନିକଟ
ନାମାମୃତ ନଦୀତଟ ଆଶ୍ରୟ କର
ଝାସି ମୁଖ ଭରି ପିଅ ମୁକ୍ତି କୋଟି କୋଟି ଦିଅ
ଭକ୍ତ ଗୋଟିକରେ ନିଅ ସାଧୁ ନିକର
ଝରୁ ... ... ... ... ।
... ... ... ... ... ... ... ... ... । ୯ ।

ନିର୍ଗୁଣ ଯେ ନିରାକାର      କ ବସ୍ତୁ ଯେ କମାକାର
ଭକ୍ତଙ୍କ ହିତେ ସାକାର ଗୁଣେ ବିହରି
ନିମିଷ ମାତ୍ରକେ ଖ୍ୟାଳ      ରଚିଣ ସ୍ୱନାମ ମାଳ
ଭକ୍ତଙ୍କ କଣ୍ଠରେ ଡ଼ାଳିଦେଲେ ଶ୍ରୀହରି
.....................
.............................. । ୧୦ ।

ଠମାଳ କରିଣ ଶେଷ      ବସିଣ ଯୁଗ ଅଶେଷ
ସହସ୍ର ମୁଖରେ ଶେଷ ଲେଶ ନ କଲା
ଠାଣ ଗରବ ଗଳାଲା      ଯହୁଁ ନାମ ନ କଳାଲା
ଜପକୁ ଶ୍ରଦ୍ଧା ବଳାଲା ଆଶ୍ରୟ କଲା
ଠାକ ନାମ ଜପି ରହିଲା
ଠେକ ରାଧାକୃଷ୍ଣ ଶିର ପଦ୍ମେ ବହିଲା । ୧୧ ।

ଠିକ ଲୋକେ ଏହି ଧାଷା      କରି କରି ନାମ ଶିକ୍ଷା
ଭିକ୍ଷୁକ ଯେସନେ ଭିକ୍ଷା ପ୍ରାର୍ଥନା କରେ
ଠିକ କୃଷ୍ଣଚନ୍ଦ୍ରେ ବସେ      ନାମାମୃତ ଅନରସେ
ମନ ଚକୋରେ ହରଷେ ପିଅ ନିକରେ
ଠିକ କୃଷ୍ଣ ଘନ ସୁରସ
ଠୁଳ ନାମ ଭଗବାନ ନାମେ ବରଷ । ୧୨ ।

ଡ଼ାଳ ଜୀବ ଶୁକ ଧରି      ପଢ଼ାଇ ଶ୍ରୀରାମ ହରି
ଗଣିକା ନ ଜାଣି ତରି ବିନା ତନ୍ତ୍ରରେ
ଡ଼ାକ ଉଠେ ଅନ୍ତ ସୁଖେ      ଗୋବିନ୍ଦ ଗୋପାଳ ମୁଖେ
ଦେହୁ ପଳାଇବେ ଦୁଃଖେ ଅନ୍ତ ସନ୍ଧ୍ୟରେ
ଡେରି ନାମ ଅଗ୍ନି ବହନ
ଡଙ୍ଗର ପାପ ତୁଳାକୁ କର ଦହନ । ୧୩ ।

ଡ଼ମ ନୁହେଁ ବେଦବକ୍ତ      ଦୁର୍ଲ୍ଲଭ ଏ ବିଷ୍ଣୁଭକ୍ତ
ମୁକ୍ତିକ ଦେବାକୁ ଶକ୍ତ ଅଛି ଯାହାର
.........ଦୁ ନାମାମୃତ      କର୍ମ୍ମା ଅନ୍ୟ କର୍ମକୃତ
ଧୃ.ଟିକ ଧରି ବହୁତ କରୁଛି ହାର
ଡ଼ାଙ୍କ ମାରି ଜନେ ପଶୁରି
ଡୋକ ଏ ଅମୂଲ୍ୟରସ ମନେ ବିଗୁରି । ୧୪ ।

ଆହେ କୃପା ଅକୂପାର        ଗଜ ଡାକିଲା ଅସାର
କୁମ୍ଭୀର ମୁଖରୁ ପାରକର ଶ୍ରୀଧର
ଅନ୍ତର୍ଯ୍ୟାମୀ ଜାଣି ଚକ୍ର        ପେଷିଣ ବୋଇଲେ ନକ୍ର
ଶିରଚ୍ଛେଦ ଗଜ ଶୀଘ୍ର ବେଗ ଉଦ୍ଧର
ଏଣୁ ଜୀବ ନୋହୁ ବିନାଶ
ଅଚ୍ୟୁତେ ଭଜିଲେ କି କରିବକ ନାଶ । ୧୫ ।

ତ୍ରୈଲୋକ୍ୟରେ ଏ ବିଦିତ        ନାମାମୃତେ ଯାହା ଚିତ୍ତ
ହୋଇଛି ନିତ୍ୟ ରସିତ ମୁଖ ବିହିତରେ
ତରଣୀ ଯେସନ ତମ        ନାଶିବାରେ ......ମ
ମେହ୍ନତେ ନାମ ଯମ ଯାତନା ହରେ
ଛଳେ ପାଷାଣେରେ ନ ରସ
ତମିରରେ ଯେସନ୍ତ ନାଶ ସୂତାମରସ । ୧୬ ।

ସ୍ଥୂଳପାପୀ ଅଜାମିଳ        ପ୍ରତିକ୍ଷଣେ ମାୟାଶୀଳ
ଲେଶେ ନାହିଁ ପୁଣ୍ୟବଳ ଶୁଣ ସକଳେ
ଥରେ ଥରେ ହୋଇ ଝାମ        ଡାକିଲା ପୁତ୍ରର ନାମ
ନାରାୟଣ ବୋଲି ତା ମରଣର କାଳେ
ସ୍ଥୂଳପାପ ହେଲେ ନଜାଳ
ଥିର ନେ ବୈକୁଣ୍ଠପୁରେ ବସିଲା ଯାଇ । ୧୭ ।

ଦୟାନିଧି ନାମ ଗୁଣ        ଦନେଣ୍ଟ ମନଦେଇ ଶୁଣ
ମ୍ଲେଚ୍ଛ ଗୋଟାଏକ ପୁଣି ଜରାଜରିତ
ଦଇବ ବଶରେ ତାରେ        ଶୂକର ଗୋଟାଏ ମାରେ
ହା ରାମରେ ମଲି ଆରେ ବୋଲି ନିରତ
ଦୁର୍ବୁଦ୍ଧି ସେ ପ୍ରାଣ ମୁଞ୍ଚିଲା
ଦିବସରେ ନିଶିପ୍ରାପ୍ତେ ପାପ ଘୁଞ୍ଚିଲା । ୧୮ ।

ଧରିଛି ବିଅର୍ଥେ ନାମ        ହା ରାମ ହା କୃଷ୍ଣ ରାମ
ଯେ ଧରେ ସେ ଅନୁପମ ଏତେ ଚରିତ
ଧାପେ ଭବସିନ୍ଧୁ ଜଳ        ନାମ ପ୍ରଭାବୁଁ କେବଳ
ଗୋଷ୍ପଦଥିତ କମଳ ପ୍ରାପ୍ତେ ଚରିତ
ଧନ୍ୟ ............ ।
..........କୁ ଚିନ୍ତ ............. । ୧୯ ।

ନେନେ କୃଷ୍ଣ ରୂପ ଧାନ ସର୍ବ ଭୂତେ ଆତ୍ମାଜ୍ଞାନ
କର୍ଣ୍ଣେ ନାମାମୃତ ପାନ କର ବେଗେରେ
ନରକେ ପାପ କର୍ତ୍ତନ ନାମ ମୁଖେରେ କୀର୍ତ୍ତନ
କରଣି କର ନର୍ତ୍ତନ କୃଷ୍ଣ ଆଗେରେ
ନେପ୍ତୁ –.............
......... ବଇକୁ ............ । ୨୦ ।

ପରମ ଯୋଗୀରେ ବେଢ଼ା ହୋଇଥିବା ମୁକ୍ତ ପେଢ଼ା
ନରକେ ହୋଇଛି ଫେଡ଼ା ନାମ ଜଳୁକେ
ପ୍ରତିକ୍ଷଣେ ଗାଇ ଗାଇ ଭକ୍ତ ଙ୍କ ଯେ ଅଛି ପାଇ
ସେ ତା ଲୋଡ଼ିବ କର୍ମାଇ ଲଭୁ ଅଳ୍ପକେ
ପୁଣ୍ୟ କ୍ଷେତ୍ର ତୀର୍ଥନିକର
ପାଶେ ତା ଜପିବେ ନାମାମୃତ ଶ୍ରୀକର । ୨୧ ।

ଫିଙ୍ଗିଦିଅ ହାତେ ଧର ମାୟା ମୋହ ମତ କର
ହୃଦେ କୃଷ୍ଣ ହରବର ନୋହେ ବଚନ
ଝୁଟେ ବେଦେ ପାପହର ନାମେ ଅଶେଷ କରତର
ଏ ଥାଉଁ ଯା କର୍ମ କର ଏ ବଡ଼ ଚନ
ପାଇ ସ୍ୱର୍ଗ ସୁନକରଷ
ଫୁଟି ଭୁମି ଲୋଡ଼ ଧନ କରୁଛି ରସ । ୨୨ ।

ବିବିଧ ବ୍ରତ ଆଚର ଦାନ ଯଜ୍ଞ କୋଟି କର
ଶ୍ରୀକୃଷ୍ଣ ନାମ ନଧର ଭକ୍ତ କରିବା
ବରଷିବା ଜଳଧାର ଧର ଆକାଶ ପିବାର
କେବା ଏହା କରିପାରେ ଶର୍ମି ମରିବା
ବନମାଳୀ ନାମ ସରଣୀ
ବିନାରେ ନ ଲଭି ଭକ୍ତ ଅନ୍ୟ କରଣୀ । ୨୩ ।

ଭବ ବିଷ ଲଙ୍ଘି ଭୁକ୍ତ ଏଥୁ ଯେବେ ଇଚ୍ଛା ମୁକ୍ତ
ନାମାମୃତେ ହୁଅ ଯୁକ୍ତ ଏବେଣି ଉଠଇ
ଭଜ ଏ ଭକ୍ତଜ ନାମ ଧର୍ମ ଅର୍ଥ ମୋକ୍ଷ କାମ
ଦେବାକୁ ସମର୍ଥ ବାମଦେବ ଅଟଇ
ଭାବ ମନେ ଅଭି ଜବନେ
ଭଗବାନ ଚିନ୍ତା କରୁଅଛି ଜୀବନେ । ୨୪ ।

ମର୍ତ୍ତ୍ୟ ସ୍ବର୍ଗ ତଳେ ରସ          ଯେତେକ ଅଛନ୍ତି ସରସ
  ନାମାମୃତକୁ ନୀରସ ଘେନ ମନରେ
ମଧ୍ୟମ ରହ ଏ ସୁଧା          ପାନେ ନାଶି ଜରା କ୍ଷୁଧା
  ଅମର କଲା ବସୁଧା ନାହିଁ ଜଳରେ
   ମନୋହର ଏ ଗୁଣ ଗଣି
  ମଧୁରସୁ ନାମାମୃତ ସଙ୍ଗେ ନ ଗଣି । ୨୫ ।

ଯେଉଁ ନାମ ଶ୍ରୁତି ମନ୍ତ୍ରେ          ପାତକ ନାଶନ୍ତି ଗାତ୍ରେ
  ଲେଖିଛି ସମସ୍ତ ଶାସ୍ତ୍ରେ ଶୁଣି ଶ୍ରୁତିରେ
ଯେହ୍ନେ କେହ୍ନେ ଅବା ଅଛି          ନ ଜାଣି ଜାଣିବା ଇଚ୍ଛି
  ଚଉଦଗ ତାହାର ପଢ଼ି କହେ ଶ୍ରୁତିରେ
   ଯେଉଁ ଭକ୍ତ ଦେବେ ଦୁର୍ଲଭ
  ଯତନ ନକଲେ ତାକୁ ହୁଏ ସୁଲଭ । ୨୬ ।

ରଚିତ ସୁନ୍ଦର ଘର          ପ୍ରଥମ ନିଜ ଦେହର
  ଦେହଳୀ କଣ୍ଠ ଉପର ଜିଣି ଦିବସେ
ରାମ ନାମ ମଣି ଦୀପ          ରସ ରସ ଉଜ୍ଜଳାଧିପ
  ଅନ୍ତ ବାହାର ସମୀପ ଉଜଳ ବଶେ
   ରମା ବନ୍ଧୁ କୃଷ୍ଣ ଅଚ୍ୟୁତ
  ରସିଲେ ରସ ମନରୁ ନୋହିବ ଚ୍ୟୁତ । ୨୭ ।

ଲବଣୀ ଗଣିରେ ଖରା          ବାଲ୍ୟ ତରଳିବା ପରା
  ଏ ଦେହ ମିଥ୍ୟା ପସରା କ୍ଷମେ ବଦନା
ଲୋଭ ମୋହ କାମ କ୍ରୋଧ          ଆଦରେ ଛାଡ଼ି ଉପ୍ରୋଧ
  ଏ କାମ କଳ୍ପନାପ୍ରୋଧ ଗୃହରେ ବସ
   ଲୁବ୍ଧ ଭାବ ଛାଡ଼ି ମନରୁ
  ଲୀନ ହୋଇଲେ କି କାର୍ଯ୍ୟ ହେବ ଧନରୁ । ୨୮ ।

ବିଷ୍ଣୁ ନାମାମୃତ ରସ          ଏ ଥାଉ ଆନେ ନ ରସ
  ସମସ୍ତ ରସୁ ସରସ ଏ ରହେ ରସ
ବହିତ ସଂସାରେ ଯେତେ          କର୍ମକାଣ୍ଡ ଏତେ ତେତେ
  କରଣ କହିବା କେତେ ବରଷ
   ... ... ... ... ... ... ।
  ... ... ... ଫେଡ଼ିକି ... ... ... । ୨୯ ।

ଶ୍ରୀକୃଷ୍ଣର ନାମ ଶ୍ରୁତି    ପଠେ ଶୁଣି ଭାବାବୃତ୍ତି
ବେଦଗଣ କରଣ କୃତି ହୁଅ ଉଶ୍ୱାସ
ଶରୀରରେ ଯେତେ ଛିଦ୍ର    ରହିଛନ୍ତି କରି ସଦ୍ର
ଛୁଡ଼ି ରମ୍ୟ ପାଦପଦ୍ମ କର ଆଶ୍ୱାସ
.......................
............................. । ୩୦ ।

ସତ୍ୟ ଗୋବଧାଦି ପାପ    ନିଗ୍ରହ ଯେ ବ୍ରହ୍ମଶାପ
ଏଥକୁ ଯେ ଅନୁତାପ ଦେବେ ଅପାର
ସେ ଦୋଷ ହେବାକୁ ବାମ    ପ୍ରାୟଶ୍ଚିତ୍ତ କୃଷ୍ଣ ନାମ
ସ୍ମରଣ ହିଁ ଅନୁପମ କରଇ ପାର
ସତ୍ୟ ସତ୍ୟ ଶାସ୍ତ୍ର ବଚନ
ସମ୍ମତ ସବୁର ମତେ ଦେବେ ରଚନ । ୩୧ ।

ସଂସାର ସର୍ପ ସଦଷ୍ଟ    କରଇ ଏ ମହାକଷ୍ଟ
ଚେଷ୍ଟାକୁ କଲନ ନଷ୍ଟ ନୋହୁ ମରଣ
ସମସ୍ତ ପ୍ରକାରେ ତନ୍ତ୍ର    ସ୍ତୁତୀକୃତ କୃଷ୍ଣ ମନ୍ତ୍ର
ମୁଖରେ କରଣ ଯନ୍ତ୍ର କର ସ୍ମରଣ
ସଙ୍ଗ ଦୋଷ ଭେଦ ସାୟକ
ସତ୍ୟଭାମା ପତି କୃଷ୍ଣ ରାଧା ନାୟକ । ୩୨ ।

ହେଜ ଏ ଭବସଂସାର    ଅନ୍ତଃଶୂନ୍ୟରେ ଅସାର
ଏଥିରେ କଥାଏ ସାର ଅଛୁ ବିଚାର
ହୃଷୀକେଶ କେଶୀହର    ବନମାଳୀ ବେଣୁଧର
ଦୀନବନ୍ଧୁ ଦାମୋଦର ମୁଖେ ଉଚ୍ଚାର
ହେତ କଳିଯୁଗ ଆଗର
ହରି ବିନାରେ ନ ତରି ଶାସ୍ତ୍ର ପଗର । ୩୩ ।

କ୍ଷିତିମଣ୍ଡଳେ ଉତ୍ତମ    କ୍ଷେତ୍ରମାନଙ୍କେ ସତ୍ତମ
ନାମ ଶ୍ରୀ ପୁରୁଷୋତ୍ତମ ତହିଁ ବିଲୋକ
କ୍ଷମାଶୀଳ ଦୟାନିଧି    ଯେଉଁ ପାଦପଦ୍ମ ବିଧି
ସେବାକରି କଲ ସିଦ୍ଧି ଚଉଦଲୋକ
କ୍ଷେମେ ସେହୁ ବେନି ଚରଣ
କ୍ଷୀଣବୁଦ୍ଧି ଭଗବାନ ମନ ଶରଣ । ୩୪ ।



# ଚନ୍ଦ୍ରମୁଖୀ ଚଉତିଶା

## ବିଷ୍ଣୁ ଦାସ

( ରାଗ—କାମୋଦୀ )

କମଳ ଦଳନେତ୍ରୀ          ପାଶରେ ବସି କାନ୍ତ
    କହଇ କୋମଳତା କରି
କଳାକରଆନନ୍ଦ          କଳକଣ୍ଠବଚନ୍ଦ
    କନକ ପ୍ରତିମ ଗଉରୀ ରେ, ଚନ୍ଦ୍ରମୁଖି
କନ୍ଦୁଷ୍ଠି କର ଧରି ତୋତେ, କହ ସତ୍ୟ ବଚନ ମୋତେ
କାଲି କେମନ୍ତେ ହୋଇ          ଦିନ ସରିବ ମୋର
    ତୁ ଯେବେ ନ ଥିବୁ ସଙ୍ଗତେ ରେ । ୧ ।

କ୍ଷୀଣଉଦରୀ ଖଞ୍ଜ-          ରୀଠ ନୟନ ଅନ୍ତେ
    ଖେଳାଇ ଦରହାସ ହୋଇ
ଖଣ୍ଡିଏ ଦୂରେ ଥାଇ          ଖେଦ ନେସେ ଗୃହିଁବା
    ପୁଣି ପାଇବ ଅବା କାହିଁରେ, ଚନ୍ଦ୍ରମୁଖି
ଖଣ୍ଡିବ ଧାତା ଏତେ ସୁଖ; ଖଟାଇ ବର୍ଦ୍ଧା ସମ ଦୁଃଖ
କ୍ଷଣ କ୍ଷଣକେ ମୋର,          ଆନନ୍ଦ କେ କହିବ
    ଅନାଇଥିଲେ ଚନ୍ଦ୍ରମୁଖରେ । ୨ ।

ଗୁଣମଣି ଗୁପତ          କ୍ରୀଡ଼ା ଶ୍ରୀର ସମାନ
    ଶୁଣି ସନ୍ତୋଷ ହୁଏ ମନ
ଗଜ ଗମନ ଗଜ          ଗମନ ଅନାଇଲେ
    ସନ୍ତୋଷ ନୁହଇ ନୟନରେ, ଚନ୍ଦ୍ରମୁଖି
ଗୁରୁ ସଘନ ବେନି କୁଚ, ଗିରି ସମାନ ଦିଶେ ଉଚ
ଗଢ଼ିବାକୁ ଏ କୁଚ          କଣ୍ଠକୁମ୍ଭ କନକ
    କଳସ ବିଧି କଲା ସଞ୍ଚରେ । ୩ ।

ଘନଜଘନ ସ୍ୱେ          କୁଚରେ କରଦେଇ
    ମନରେ ଏମନ୍ତ ବିଚାର
ଘଟଣମୁଖୀମୋର          ଜୀବନ ଥିବା ଯାଏ
    କ୍ଷଣେହେଁ ନୋହିବ ଅନ୍ତରରେ, ଚନ୍ଦ୍ରମୁଖି

ଘାଟ କରିବ ଏହା ବହି    ଘଡ଼ିଏ ବଞ୍ଚିବ ନ ଗୃହିଁ
ଘେନିବ ପ୍ରାଣ ମୋର    ଘୋର କୁସୁମ ଶର
ଘଟଣା ଲଗନକୁ ଗୃହିଁରେ । ୪ ।

ନୀରଜନୟନରେ    ନିଷ୍ଠୁରେ କହୁଅଛୁ
ନିବିଡ଼ ଆଲିଙ୍ଗନ ତୋର
ନିମିଷେ ନ ପାଇଲେ    ନରହିବ ଜୀବନ
ନେ ଆଉ ଆନେକ ନିଷ୍ଠୁରରେ, ଚନ୍ଦ୍ରମୁଖି
ନଳିନ ନେଣୀ କୁନ୍ଦଦନ୍ତୀ, ନିଶ୍ଚେ ମୋ ନୟନ ସମ୍ମତି
ନୟନ ପିଗୁଡ଼ିବା    ନବଯୁଗ ମଣଇ
ନସରେ ତୋର ବନୁ ଗତରେ । ୫ ।

ଗୃରୁ ଚନ୍ଦ୍ରମା ମୁଖୀ    ଚଞ୍ଚଳ କରଗତେ
ଦନ୍ତେ କରଇ ଯେବେ ଆଣି
ଚନ୍ଦ୍ରଶେଖର ଶମ୍ଭୁ    ବୋଲଇ ମହାପ୍ରଭୁ
ଘବହ କର ମୋର ପାଣିରେ, ଚନ୍ଦ୍ରମୁଖି
ଚିତ୍ତେ ମୋ ଧରଣ ନଯାଇ, ଗୃଣ୍ଡେ ଯେ ଚୁମ୍ବନ ଦିଅଇ
ଗୃହିଁ ଗୃହିଁଣ ଏହା    ଖଣ୍ଡିବ କେଉଁ ବହି
କାହାକୁ କେଉଁଠାକୁ ନେଇରେ । ୬ ।

ଗୁଡ଼ରେ କ୍ଷୀଣୋଦରୀ    ମୋ ପରି ସେବକଙ୍କୁ
ସରିବ ତୋର ଧନମାନ
ଗୁଡ଼ ମଣ୍ଡନୀ ମୋର    ମୁଖ ମାଳନ ଘେନି
ଘୁବର କରିଥିବୁ ମନରେ, ଚନ୍ଦ୍ରମୁଖି
ଛଟକେ ହସି ତୋ ଗୃହିଁବା, ଛନ୍ଦମଣ୍ଡଳ କି ପାଇବା
ଛଡ଼ାଇ ମନ ବ୍ୟଥା    କହୁ ଯେ ସ୍ନେହ କଥା
ସୁମରି ସୁମରି ମରିବା । ୭ ।

ଜାଣୁ ମଣି ରତନ    ଯାମିନୀ ଯାକ ଯାଗି
ଜାଗର ଯୋଗେ କରିଦେଇ
ଯେଉଁ ଯେଉଁ ପ୍ରକାର    ମନରେ ହେଉଥାଇ
କେବେହେଁ ସଙ୍ଖ୍ୟା ନ ଜାଣଇରେ, ଚନ୍ଦ୍ରମୁଖି
ଜାଣୁ ଯେମନ୍ତ ମନ ମୋର, ଯାଚ ସେ କହୁ ଯେ ଉତ୍ତର
ଯିବ ଏ କଥା ସବୁ    ଜୀବନ ଧାଇଁ ଧାଇଁ
ଏହା କହିବେ ଚନ୍ଦ୍ରଧରରେ । ୮ ।

ଝୀନବସନ ଫିଟି          ଜଘନ ସ୍ତନ ଦିଶି
ଅଳସ କରଇ ଯେ ଦେହ
ଝଷକେତନ ଏହୁ          ସମୟୁ ଜାଣିକର
ଜଗି ଜଗି ଜଗାଇ ମୋହରେ, ଚନ୍ଦ୍ରମୁଖି
ଝଳ ଲଲାଟପଟ ଦେଖି, ଝିମଟ ଧଇର୍ଯ୍ୟ କେ ରଖି
ଝାଳରେ ଏହା ନୋହି          କାମ ଯେ ଝଞ୍ଜା ସହି
ରହି କେ ପାରୁ ଚନ୍ଦ୍ରମୁଖୀରେ । ୯ ।

ନ ଥିବା ପରା ତୋର          ମନରେ ମୁହିଁ ପ୍ରିୟା
ପାଶରୁ ଆଡ଼ହୋଇ ଗଲି
ନାଗଶ୍ରି ରତନରେ          ରତ୍ନ ଫିଙ୍ଗୁଳି ମୋର
ପାଶରେ ଥିଲେହେଁ ନ ଥିଲିରେ, ଚନ୍ଦ୍ରମୁଖି
ନାହିଁ ମୋହର ପୂର୍ବତପ, ନ ଦେଖିବି ଏ ଶୋଭା ରୂପ
ନଶି ଦିବସ ଶେଷ          କେଉଁଭାବେ କରିବ
ଭୋଗ ହୋଇବ ପୂର୍ବ ଶାପରେ । ୧୦ ।

ଟିକାଏ ଅନ୍ତରକୁ          ଟାଣ କୁସୁମ ଶରେ
ଉଚିତ ରତି ପତି ......... ।
ଟାଣ କଟାକ୍ଷ ଟେକି          କଟାକ୍ଷ ବିକାରେଣେ
ବଶ କରିଛୁ ମୋର ମତିରେ, ଚନ୍ଦ୍ରମୁଖି
ଟଳିବ ଯେବେ ଏତେ ସ୍ନେହ, ଟିକାଏକେ ଧରିବ ଦେହ
ଟାଙ୍କୁରଇ କି ପ୍ରେମ          ଗୁହିଁଲେ ମୋର ମୁହଁ
ଚନ୍ଦ୍ରବଦନି ସତ କହରେ । ୧୧ ।

ଠିକ ସୁରତି କାଳେ          ଠା ଠଣା କେ କରିବ
ମନ ବିକାର ରସ ପ୍ରିୟା
ଠାରି ରହିବା ଭାବ          ଥୋକାଏ ଚତୁରଅଛୁ
ଯେଣୁ କରିଛୁ ପ୍ରିୟା ଦୟାରେ, ଚନ୍ଦ୍ରମୁଖି
ଠାବ ଦଶନପନ୍ତି ତୋର, ଠଣି ଘଟଣ ସ୍ନିଗ୍ଧସାର
ଠାବ ଯେ ଗଣ୍ଡଦେଶେ, ସୋଷେ ବସାଇ ହସୁ
ପାସୋରିବ ତା କାହା ଗୁରରେ । ୧୨ ।

ଡକା କରିଛି ଏବେ          ଡାଳିମ୍ବ ବୀଜ ଦନ୍ତୀ
ଡରୁଛି ମଦନ ବାଣକୁ

ତୋଳା ପିତୁଳା ପ୍ରାୟେ ପାଶେ ନ ଥିବୁ ଯେବେ
କମ୍ପାଇ ଆଶା ପରଣକୁରେ, ଚନ୍ଦ୍ରମୁଖି
ଡମ୍ବରୁଜିତ ମଧ୍ୟ ଦେଶ, ଡମ୍ବରୁ ଦଶେ ଯେଉଁ କୃଶ
ତୋଳା ଲକ୍ଷଣ ହେତୁ ଗୁଡ଼୍ ନାହିଁ ମୋହୋର
ଏହି ମୋହୋର ଧରି ରୋଷରେ । ୧୩ ।

ତାଲେହେଁ ତୋହୋ ବିନୁ ଦଣ୍ଡେହେଁ ନ ବଞ୍ଚିବ
ତମ ନୁହଇ ଯୁବାମଣି
ତନ୍ନ ପ୍ରାଣ ନ ଗଲେ କେ ଦୁଃଖ ନିବାରିବ
କାହାରେ ରସିକ ସିହାଣିରେ, ଚନ୍ଦ୍ରମୁଖି
ତମ ନୁହଇ ଏ ଯୁଗତି, ତାଳେହେଁ କଣିକ୍ଷୁ ଯୁବତି
ତୋକଲର ପୀୟୂଷ ହସ୍ତ କେ ସରସିବ
ବିଧାତା ଏମନ୍ତ କୁମତିରେ । ୧୪ ।

ଆଣି ଗଣ୍ଡ ତୋହର ଅଣୁ ଏ ମନେ କଲେ
ଆପ୍ୟନ୍ତ ନୁହିଲ ଶରୀର
ଆଣି ୧ଯ ସ୍ନେହେ ଭୁଜ କଣ୍ଠ ଉପରେ ଦେଉ
ପାଇଯାଇବ ତା କାହା ଗୁରରେ, ଚନ୍ଦ୍ରମୁଖି
ଏଣିକି ମାଗୁଅଛି ଏହା ଅଣୁ ଏ ଗୁଡ଼ବୁ ସେନେହା
ଅନଙ୍ଗ ଜ୍ୱଳା ଯେତେ ବେଳେ କରିବ ଆଣି
ହୋଇବୁ ତେତେବେଳେ ସାହାରେ । ୧୫ ।

ତୋର ଲକ୍ଷକ ପ୍ରୀତି ସଂସାରେ ନ ଥିବ କା
ତାଳେ ଅନାଇବାର ଭଙ୍ଗୀ
ତରୁଣୀ ରତନରେ ଦୃଢ଼ ପୂର୍ବେ ଥିଲରୁ
ଦୟା କଲୁରେ କୋମଳାଙ୍ଗୀରେ, ଚନ୍ଦ୍ରମୁଖି !
ତଳର ଦୁଗାନ୍ତର ରଙ୍ଗ ତହିଁ ଅଞ୍ଜନ ହେଲ ସଙ୍ଗ
ତଳରେ ଏହି ନେନ କୋଣେ ଆଶ୍ରୟ କରି
ବିଷ ତୋ ଜଣିଲା ଅନଙ୍ଗରେ । ୧୬ ।

ଥିବ ତୋ ପାଶେ ବସି ହୁଙ୍କାରେ ଅହର୍ନିଶି
ହ୍ଲାଣୁରେ ମାଗୁଥାଇ ବର
ଥା ଠିକ ଏ କଥାରେ ଥାନ କରି ବିଧାତା
ଏହାଉଁ ଆନକେ ନିଷ୍ଠୁରରେ, ଚନ୍ଦ୍ରମୁଖି !

ଥିଲ ଏମନ୍ତ ମୋର ମନେ        ଥିବ ଏ କଥା ପଦ୍ମୁବଦନେ
ଥିଲ ଜଂଘ ନଅ ଯେ ହେଉ ତ ନାହିଁ ଦେହ
ଜିଆଅ ମୋ ଅଧର ପାନେରେ । ୧୭ ।

ଦୟା ଜଳଧି କମ୍ପା        ଅଧରେ ଦନ୍ତେ ଧରି
ଆକର୍ଷି କରଇ ଆଶ୍ଳେଷ
ଦରିଦ୍ରନିଧି ମୋର        ଦେହକୁ ପିଡ଼ା କରେ
ଧରିବୁ ନାହିଁଟି ସେ ଦୋଷରେ, ଚନ୍ଦ୍ରମୁଖି
ଦାସ ହୋଇଲେ ଦୋଷକରି        ଦୟା ନ ଛାଡ଼ିବୁ ତା ଧରି
ଦୋଷ ହିଁ ଗୁଣକରି        କେଉଁ କଥାରେ ଧରି
ତୁ ଏହା ବଗୃର ହୃଦଗରେ । ୧୮ ।

ଧରି ମୋ କର ନେଇ        ଉରଜ ପରେ ଦେଇ
ଧରି ଯେ ଚିବୁକ ମୋହର
ଧୀରଗମନୀ ତାହା        ଯେଉଁ କ୍ଷଣ ଛାଡ଼ିବ
ପରାଣ ରହିବ କାହାରରେ, ଚନ୍ଦ୍ରମୁଖି
ଧାତାକୁ ଯୋଡ଼ି ଅଞ୍ଜୁଳି କର        ଧରୁ ଯେ ବିନୟ ମୋହୋର
ଧରଣୀ ମଣ୍ଡଣି ଯେ        ପଦ୍ମ ସୁବାସ ଦେହ
କ୍ଷଣେହେଁ ଅନ୍ତର ନ କରରେ । ୧୯ ।

କାହିଁ ନାହିଁ ଭୁବନ        ଘଟେବ ତୋତେ ସମାନ
ସୁନ୍ଦର ସୁରସିକ ପଣେ
ନ ଥାଇ ଚେତନେ ଜ୍ଞାନ        ଛୁଇଲେ ତୋର ଅଙ୍ଗେ
ଏକଥା ମନମଥ ଜାଣେରେ, ଚନ୍ଦ୍ରମୁଖି
ନିଃଶ୍ୱାସ ପକାଇ ଯେ ତେଜୁ        ନୟନ ମନ୍ଦମନ୍ଦ ବୁଜୁ
ନ ପାଇଲେ ସେ ଭାବ        ନ ରହିବ ଧୈ ଜୀବ
ଚନ୍ଦ୍ରମା ଆନନୀ ନେହଜୁରେ । ୨୦ ।

ପଦ୍ମ ବଦନା ପ୍ରିୟା        ପଲ୍ଲବ ଜାଣି ତୋର
ପାଦକୁ ବଢ଼ାଇ ଯେ କହୁ
ପ୍ରସଙ୍ଗେ ତୃଷାରୁଷି        କ୍ଷଣେମାତ୍ର ପଡ଼ିଲେ
ସମସ୍ତ ପ୍ରକାରେ ନ ସହୁରେ, ଚନ୍ଦ୍ରମୁଖି
ପଡ଼ିଲା ଏବେ ପରମାଦ        ପ୍ରାଣକୁ ପ୍ରମାଦ ବିଷାଦ
ପୀୟୂଷହାସୀ ମୂର୍ତ୍ତି        ପ୍ରସନ୍ନ ନଶାଙ୍କ ଶାନ୍ତ
ରହୁଁ ଗହୁଁ ଜନମେ ଖେଦରେ । ୨୧ ।

ଫୁଟିଲା ଅରବିନ୍ଦ          ପ୍ରାଚ୍ୟ ବାସର ମୁଖ
ପ୍ରାଣେ ମଦନ ଅଙ୍କୁର
ଫୁରୁଣା ଆନନ୍ଦର          ଆନନ ସମାନକୁ
କେଉଁ ଗୁଣରେ ସୁଧାକରରେ, ଚନ୍ଦ୍ରମୁଖି !
ଫାଇ ଦିନରୁ ଆଶା ଥିଲା          ଫୁଟି ଏତେଦିନେ ଦିଶିଲା
ଫଳାଇତ ବିଧାତା          ହସ୍ତ ଦେଶରେ ଦେଇ
ଅନାଉଁ ଅନାଉଁ ହରିଲାରେ । ୨୨ ।

ବିଧୁବଦନୀ ବାମା          ବିଧୁ କିରଣେ ବସି
ବଦନେ ଲଗାଉ ବଦନ
ବିଧୁ ମଣ୍ଡଳ ଥିବ          ବିହି ଏହା କରିବ
ବିଶରେ ରୁହାଇ ମଦନରେ, ଚନ୍ଦ୍ରମୁଖି !
ବସନ ବିହୀନେ ତୋ ଦେହ, ବାରେ ଅନାଇ ହୁଏ ମୋହ
ବିଧୁବଦନେ ବାଙ୍କେ          ଅନାଇ ହସି ବୋଲୁ
ବନ୍ଧୁ ହେ ଏତେକ ନ ସହରେ । ୨୩ ।

ଭୋଖୀ ହାତରୁ ଭାତ          ବିଧାତା ହରୁଅଛି
ମୋହ ହାତୁଁ ହରିବ ତୋତେ
ଭାବିନୀ କ୍ଷଣେହେଁ ତୁ          ମୋତେ ନ ପାସୋରିବୁ
ମୁଁ ତୋତେ କହୁଅଛି ଏତେରେ, ଚନ୍ଦ୍ରମୁଖି
ଭୂଷଣ ମଣି ତୁ ମୋହର, ଜୀବ ଅଜୀବ ମୋତିହାର
ଭୋ ଧ୍ରାଣମଣି ମୋହ, ପ୍ରାଣକୁ ରକ୍ଷାକର
କ୍ଷଣେ ଯେ ନୋହିବ ଅନ୍ତର ରେ । ୨୪ ।

ମହୀମଣ୍ଡନୀ ମହା          ତାପ ହୋଇବା କଥା
ଅଛି ନିଅନ୍ତନ କାଳରେ
ମୋହ ପାଶରେ ଏବେ          ଯେତେବେଳେ ହିଁ ଅଛୁ
ଦେହ ଲଗାଅ ମୋ ଦେହରେ, ଚନ୍ଦ୍ରମୁଖି
ମନେ ବିଚ୍ଛେଦକଥା ପଡ଼ି, ମୋ ପ୍ରାଣ ଯାଉଅଛି ଛାଡ଼ି
ମୁଖକୁ ଚୁହିଁ ତୋର          ମହା ଆନନ୍ଦ ହୋଇ
ପୁଣି ରହଇ ସୁଖେ ବୁଡ଼ିରେ । ୨୫ ।

ଜାଣୁଟିକି ଯୁବତି          ଯାମିନୀ ଅନ୍ତେ ଦିନେ
ପଡ଼ିଲା ଯେଉଁ ଯେଉଁ ରସ

ଯୋଡ଼ି ଯୁଗଳ କର — ଯାହା ବୋଇଲୁ ପ୍ରିୟା
ହୋଇ ଅଳପ ହସ ହସରେ, ଚନ୍ଦ୍ରମୁଖି !
ଜାଣିଥିବ ଯେ ତେଡ଼େ ଭାବ — ଜାଣନ୍ତି ବିଚ୍ଛେଦ ହୋଇବ
ଜାଣୁ ମଣି ରତନ — ଯେତେକ ବୋଲୁଅଛୁ
ସେକଥା କେହ୍ନେ ନ ରହିବରେ । ୨୬ ।

ରମଣୀ ରସବତୀ — ରତି ସୁରତି ମତି
ରହିଲା କେବଳ ଏ କଥା
ରଙ୍କ ହାତରୁ ଧନ — କେ କେତେଣି ହରିନେଲା
ରହିଲା ମଦନ ପ୍ରାଣେ ବ୍ୟଥାରେ, ଚନ୍ଦ୍ରମୁଖି
ରହିଲା ତୋ ବିନୁ ଏ ଜୀବ, ରତିଏକେ ପ୍ରତେ କରିବ
ରମା ରତନ ପାଶେ — ଥାଇ ଏମନ୍ତେ ଅବା
ଏ ପ୍ରାଣ ବିହୁତ ହୋଇବରେ । ୨୭ ।

ଲାବଣ୍ୟମଣି ଶୁଣି — ବିଧୁମଣ୍ଡଳେ ମୋର
ନୟନ ଲାଗି ରହିଅଛି
ଲୋଭେ ଶୃଙ୍ଖଳ ନାହିଁ — ଲଳିତ କୋମଳ ଯେ
ନ ପାରିବ ମୋତେ ମୃତୁଛନ୍ଦରେ, ଚନ୍ଦ୍ରମୁଖି
ଲୋଭ ଲଗାଇଅଛି ମୋତେ, ଲୀଳା ଏ କଣୁଅଛି ମୋତେ
ଲାଗିଥିବାର ଦାସ — ବିଧାତା ଭଙ୍ଗାଇଲେ
ସେ ଦୋଷ ପାଇବ ଯୁଗତେରେ ! ୨୮ ।

ବସନ ଫେନ ରତି — ଅନ୍ତେ ଢାଙ୍କିବା ଭାବ
ପାସୋରିଲୁଟିରେ ଚନ୍ଦ୍ରମୁଖି
ବୁଜି ଯେ ଥାଉ ଆଖି — ଚୁହାଁଲେ ତହୁଁ ଉଠି
ନିହୁରିଗଲା ତାହା ଦେଖିରେ, ଚନ୍ଦ୍ରମୁଖି
ବହି ହୃଦରେ ଦେଇ ମୁଖ — ବଢ଼ାଇ ଥାଉଁ ଯେଉଁ ସୁଖ
ବେଳକୁ ବେଳ ସେହି — କଥା ମନରେ ପଡ଼ି
କାମ କରୁଛି କାଣ୍ଡେ ଲାଗିରେ । ୨୯ ।

ସରିଲା ସୁରତିରେ — ସନ୍ତୋଷ ହୋଇ ସଖୀ
ସରାଗକରି ଦେହେ ମିଶୁ
ସତେ ନେସ୍ତ ରତିକି — ଆହୁରି ମନ ଅଛି
ତା ପଚାରିଲେ ମନ୍ଦ ହସୁରେ, ଚନ୍ଦ୍ରମୁଖି
ସେ ଖମାନ ମନେ ସୁଭାବ, ହତେହେଁ କେମନ୍ତେ ଝାଇବ

ଶିଶୁ କୁରଙ୍ଗ ନେତ୍ର ସଙ୍କୋଚ ହୋଇ କହ
ଏବେ ମୁଁ କେମନ୍ତେ କରିବ ରେ । ୩୦ ।

ସୁନ୍ଦର ଶୋଭା ତୋର ମନ ହରିଲା ମୋର
ଆସ୍ଥିର ହେଉନାହିଁ ...... ।
ଘଡଡ ଆନନକୁ ହଜାଇ ହସିଥିଲେ
ଲେଶ ଘରିଏ କଲା ସହରେ, ଚନ୍ଦ୍ରମୁଖି !
ସେନେହ ମନେ ତେବେ ଥାଉ, ସେକଥା କେବେ ନ ଯୋଗାଉ
ସବୁ ଆଡ଼ରେ ବୁଲି ଚକଟେ ମନ୍ତ୍ର ହୋଇ
ଦଉଡ଼ି ପାଶକୁ ଆସଇ ରେ । ୩୧ ।

ସବୁ କାଳରେ ବସି ଆଶ ତୋଟେ ନଟବେଶି
ସନ୍ତୋଷ ହୋଇଅଛି ମନ
ସେକଥା ବଧି ବଟେ ବହୁକାଳ ନ ରହ
ବେଗେ ହେଉଛି ଭିନ୍ନ ଭିନ୍ନରେ, ଚନ୍ଦ୍ରମୁଖି
ସବୁ ସରିବ ପାସୋରିଲେ, ସରଇ ଯଥା ପ୍ରାଣୀ ମଲେ
ଶୁଣ ଶରଦଶଶି ଆନନ୍ଦ ଗୁଣମଣି
ସବୁ ତୋର ସୁଦୟା ଥିଲେ ରେ । ୩୨ ।

ହଂସଗମନି ମନେ ହେଉ କରିଣ ଥିବୁ
ମୁହିଁ ତୋହର ନିଜ ଦାସ
ହେମବରଣୀ ବାଳୁ ମୋହ ମନ ଏମନ୍ତ
ଛୁଇଁବ ନାହିଁ ଆନ ରସରେ, ଚନ୍ଦ୍ରମୁଖି
ହେଳା ତୁ ନ କରିବୁ ମୋତେ, ହରଷ ଧରିଥିବୁ ଚିତ୍ତେ
ହରି ସୁଦୟା କଲେ ହରଷେ ପୁଣି ଭେଟ
ହୋଇବା ଏକ ଅହୋରାତ୍ରେ ରେ । ୩୩ ।

କ୍ଷିତିରେ କ୍ଷୀଣୋଦରୀ ନିଃଶ୍ୱାସ ପକାଇଲେ
ତଳକୁ କଲା ପଦ୍ମମୁଖ
ଗୁଡ଼ିଲା ବଡ଼ କରି ବଡ଼ କରି ନିଶ୍ୱାସ
ମନେ ପାଇଲା ବଡ଼ ଦୁଃଖରେ, ଚନ୍ଦ୍ରମୁଖି !
କ୍ଷେମେ ଏ ଚଉତିଶା ଶେଷ, କ୍ଷେମେ ରସିକ ବୁଝ ରସ
କ୍ଷେତ୍ରବର ଉତ୍ତମ ନାମ ପୁରୁଷୋତ୍ତମ
ପାଇ ଭଣଇ ବିଷ୍ଣୁ ଦାସ ରେ । ୩୪ ।



# ରସକଳା ଚଉତିଶା

କହୁଛନ୍ତି ଗୁଣନିଧି ଶୁଣ ରସକଳା
କେଉଁ ଅପରାଧେ ମୋତେ କଲ ଅଣଦେଳା
ରେ କମଳମୁଖୀ
କାଟେ ହେଲି ନିରମାର୍ଖି ଗୋ । ୧ ।

ଖସିଛି ଭ୍ରୂଲତା ବାଣ ଅଞ୍ଜନର ଗୁଣ
ଦେଖିଣ ଦହୁଛି ଅଙ୍ଗ ରଖ ପଞ୍ଚପ୍ରାଣ
ରେ ଖଞ୍ଜନ ଆଖି
ଖସାଅ ବସନ ମୁଖ ଦେଖିରେ । ୨ ।

ଗରୁମାନ କରିଅଛୁ କି ଦୋଷ ମୋହର
ଗଣ୍ଡସ୍ଥଳେ ଭିଡ଼ି ମୋତେ ବସାଅ କୋଳର
ରେ ଗଜଗମନୀ
ଗଲ୍ ଜୀବନ ମୋତେ ରଖ ଭାବିନୀ ରେ । ୩ ।

ଘାରିଲା ମଦନ ଜ୍ୱର ନ ଦିଶଇ ବୁଦ୍ଧି
ଘୁଞ୍ଚିବ କନ୍ଦର୍ପ ବାଣ ହୁଅ ମହୌଷଧି
ରେ ଘନଜଘନୀ
ଘେନ ବଞ୍ଚିବ କୋଳେ ହେବା ରଜନୀ ରେ । ୪ ।

ଅଣାଦର କରି ମୋତେ ଦେଉଛୁ ଅବସ୍ଥା
ଉପେଖ ତୁ ସବୁ ମାନ କହ ହସି କଥା
ରେ ନବ କିଶୋରୀ
ନିର୍ମାର୍ଖି କରୁ ମନେ କସ ବଗୁର ରେ । ୫ ।

ଚତୁରୀ ନାଗରୀ ତୁ ଗୋ ଯୁବତୀର ସିନ୍ଧୁ
ଚନ୍ଦ୍ରମା ବଦନେ ହସି ଗୃହାଁ ପ୍ରାଣବନ୍ଧୁ
ରେ ଚମ୍ପକଗୋରି
ଗୃହାଁ ଗୁରୁ ଶତେ ଦୟା କରି ରେ । ୬ ।

ଛନ ଛନ ମନ ମୋର ଦେଖି ତୋ ବିରସ
ଛଇଳ ନାଗରୀ ଶ୍ୟାମା କ୍ଷମା କର ଦୋଷ
ରେ ଛଇଳ ଶ୍ୟାମା
ଛଟକ ଗୃଲି ତୋ ଗାରିମା ରେ । ୭ ।

ଯଦି ଦୟା ନ କରିବୁ ପ୍ରାଣର ବଲ୍ଲଭୀ
ଯଶ ଥାଉ ବିଷ ଖାଇ ନିଶ୍ଚୟେ ମରିବି
ରେ ଜୀବନ ଗଲା
ଜଳ ଅନ୍ନ ହିଁ ନ ରୁଚିଲା ରେ । ୮ ।

ଝାଡ଼ି କାମ ବାଣ ମୋତେ ବିନ୍ଧେ କୋଟି କୋଟି
ଝିଲିକ ଯାଉଛି ହିଆ ପଞ୍ଚପ୍ରାଣ ଫୁଟି
ରେ ଝୋଲି ମାରୁଛି
ଝାଡ଼େ କୁରଙ୍ଗୀ ଘୂମାଉଛି ରେ । ୯ ।

ନିବାଣ ଦେଖିଣ ପ୍ରିୟେ ହିଆ ଗଦଗଦ
ନ ଜାଣେ ତୋ ବିନୁ ଆନ କି କେ ଦେଉ ବାଦ
ରେ ନୀରଜମୁଖୀଁ
ନ ବୁଝିଣ ରୁଷ୍ଟ କାହିଁପାଇଁ ରେ । ୧୦ ।

ଟେକଛି କାମ ଲହରୀ ମାରୁଅଛି ତେଜ
ଟେକ ତୁ ମୁଖମଣ୍ଡଳ ମୋର ଦୁଃଖ ଯାଉ
ରେ ଟଳି ପଡ଼ିବି
ଟେକ ନ ଧରିଲେ ନିଶ୍ଚୟ ମରିବି ରେ । ୧୧ ।

ଠାବ କେ କରିପାରିବ ତୋହୋର ଗାରିମା
ଠିକେ ତୁ ଭାଙ୍ଗିଲୁ ଶ୍ୟାମା ମୋହୋର ମହିମା
ରେ ଠୁଳ ସୁନ୍ଦରୀ
ଠିକେ ମୁଁ ଶରଣ ତୋହର ରେ । ୧୨ ।

ଡୋଳେ ଯେବେ ନ ଚାହିଁବୁ ଚାମରକେଶୀ
ଡେଇଁବି ଅଗାଧଜଳେ ଦେଖ ଯିବି ଭାସି
ରେ ଡକା ହୋଇଲା
ଡହକ ଯେ ମୋ ଅଙ୍ଗ ପୋଡ଼ିଗଲା ରେ । ୧୩ ।

ତାଲେ ଅଭିମାନ ମୁହିଁ କରୁଅଛୁ ତୋତେ
ତାଙ୍କିଛୁ ବସନ ମୁଖ ଲୁଚ୍ଛଇନ୍ତୁ ମୋତେ
ରେ ତାଙ୍କୁଣି ଫେଡ଼ି
ତାଲେ କୁରଙ୍ଗିଣୀ ଭୁଜେ ଭିଡ଼ି ରେ । ୧୪ ।

ଅପାଙ୍ଗି ନୟନୀ ତୁ ଗୋ ଗୁଣେ ଗଜଗମା
ଅପ୍ରାଧ ମୋହୋର ଯାଉ ଦୋଷ କର କ୍ଷମା
ରେ ଅଣଅକ୍ଷରୀ
ଅନ୍ତ କେ ପାଇବ ଯେ ତୋହର ରେ । ୧୫ ।

ତରୁଣୀ ରତନ ତୁ ଯୁବତୀ ଶିରୋମଣି
ତଳେ କରି ଅବସ୍ଥା ମୋ ଦେଖ ଗୁଣମଣି
ରେ ତରୁଣୀମଣି
ତୁ ମୋତେ ବାରେ ନଅ କଣି ରେ । ୧୬ ।

ଥଳକୂଳ ନ ପାଇଲି ହୋଇଲି ନିରେଖ
ସ୍ଥମ୍ଭନ ମୋହନୀ ମୋତେ ଦୟାକରି ରଖ
ରେ ଥରହର ଦେହ
ଥିର ହୋଇବ କଥା କହ ରେ । ୧୭ ।

ଦୟାନିଧି କହୁଛନ୍ତି ମନେ କ୍ରୋଧ ଘେନ
ଦୟା ମୋତେ କର ବାରେ ଦାରିଦ୍ର୍ୟ ଭଞ୍ଜନୀ
ରେ ଦଇବ ଦଣ୍ଡି
ଦୟା ନ କର କେତେ ମୋତେ ଭଣ୍ଡି ରେ । ୧୮ ।

ଧରି ନପାରିଲେ ଦେହ ଏ ଜୀବନ ଯାଉ
ଧାରା ଜଳ ଦଅ ଗୋ ଚାତକ ପକ୍ଷୀ ଜୀଉ
ରେ ଧରୁଛୁ ହାତ
ଧ୍ୟାୟେ ମୁଁ କହୁଛୁ ବହୁତ ରେ । ୧୯ ।

ନୟନ କରି କହୁଛୁ ନ ବର୍ତ୍ତିବ ଆଉ
ନିର୍ଲଜ ହୋଇଲାଠାରେ କେତେ ଦୁଃଖ ଦେଉ
ରେ ନ ପାରେ ଚାଲି
ନୟନ ପଛେ ଦେବ କାଲି ରେ । ୨୦ ।

ଫହରେ ହୋଇଲ ଊଭା କ୍ଷମା କର ଦୋଷ
ଫୁରୁଷ ମଣ୍ଡଇ କେତେ ଅରଜବୁ ଯଶ
ରେ ଫଙ୍କଜମୁଖୀ
ପ୍ରଭୁ ନ ପାରେ ଦୁଃଖ ଦେଖି ରେ । ୨୧ ।

ଫାନ୍ଦରେ ପଡ଼ିଲି ଧ୍ରାପ୍ତେ ହେଉଛୁ ବିକଳ
ଫୁଟଇ ଶରୀର ଯେହ୍ନେ ଜଉରସ ଜଳ
ରେ ଫୁରୁଣା ହୁଅ
ଫାନ୍ଦରୁ ଟେକି କୋଳ ଦିଅ ରେ । ୨୨ ।

ବଦନ ଟେକିଣ ଗ୍ରୀମା ମୋତେ କହ ହସି
ବିଦାରଇ ହିଆ ମୋର ବାଜ ମର୍ମ ଫାଶି
ରେ ବହନେ ରଖ
ବହୁତ ଦେଲୁଣି ତୁ ଦୁଃଖ ରେ । ୨୩ ।

ଭଗତ ହୋଇଲି ଠାରେ ଆଉ କସ ମାନ
ଭୁଜେ ଭିଡ଼ି ଘିବ ଦେଇ କର ଆଲିଙ୍ଗନ
ରେ ଭାସୁଛୁ ଜଳେ
ଭାବ ହୋଇବ କେତେବେଳେ ରେ । ୨୪ ।

ମଦନ ଆରତେ ପ୍ରଭୁ ହୋଇ ଅସମ୍ଭାଳ
ମରୁଛୁ ବିନୋଦିନୀ ପଡ଼ୁଛୁ ପାଦତଳ
ରେ ମୁଁ ଗଲି ଘସି
ମରାଳଗମନୀ ଶୁଭ୍ରକେଶୀ ରେ । ୨୫ ।

ଜଗତମୋହିନୀ ମୋତେ ହୁଅ ପରସନ୍ନ
ଜନମ କାଳରୁ ସିନା ମୁଁ ତ କଣା ଜନ
ରେ ଯଶ ରହିବ
ଜଳରେ ପଦ୍ମ ବିକଶିବ ରେ । ୨୬ ।

ରମଣୀଙ୍କ ଶିରୋମଣି କେତେ ଦେଉ ଦୁଃଖ
ରହିଲି ଶୂନ୍ୟରେ ପ୍ରାଣ ସ୍ନେହ ପ୍ରାଣ ରଖ
ରେ ରମଣୀମଣି
ରାବଇ ଶୁଭ ପିକ ବାଣୀ ରେ । ୨୭ ।

ଲତା ବୃକ୍ଷ ବଉଳିଲେ ଅଳିରମ୍ଭ ଘେନ
ନ ଫୁଟଇ କୁଞ୍ଜ ପୁଷ୍ପ ଶୃଙ୍ଗାରେ ଭାବିନୀ
ରେ ନଖଞ୍ଜି ଆଉ
ନିକୁଞ୍ଜ ବନେ କେଳି ହେଉ ରେ । ୨୮ ।

ବ୍ରଜେନ୍ଦ୍ର ନନ୍ଦନ ତହୁଁ ପଡ଼ିଲେକ ଢଳି
ବୃଷଭାନୁ ନନ୍ଦିନୀ ତାଙ୍କୁ ଧଇଲେକ ଟେକି
ରେ ଭୃଙ୍ଗି ଭେଳା
ବାଇ ହୋଇଲେ ନନ୍ଦବାଳା ରେ । ୨୯ ।

ଶ୍ରୀକୃଷ୍ଣଙ୍କୁ କୋଳରେ ବସାଇ କାମିନୀ
ଶ୍ରୀ ଅଙ୍ଗରୁ ଧୂଳି ଝାଡ଼ି ଲକ୍ଷେ ଚୁମ୍ବ ଘେନି
ରେ ଶରଧା ଦେଖି
ସାରିଲେ ନାନା ରଙ୍ଗେ ସୁଖି ରେ । ୩୦ ।

ଶରଦ ଶ୍ୟାମଳ ମେଘେ ଶରଦ ଚନ୍ଦ୍ରମା
ଶୋଭା ପାଉଅଛୁ ଅଙ୍ଗ କ ଦେବା ଉପମା
ରେ ସୁରଙ୍ଗ ଝୁଲି
ସୁନାସୂତ୍ର ଗଲେ ମାଳି ରେ । ୩୧ ।

ସରିଲା ସକଳ ମାନ ଆଉ କସ ଲାଜ
ସୁମୁଖୀକି କୋଳେ ବସାଇଣ ଦେବରାଜ
ରେ ସୁନ୍ଦର ମୁଖ
ସୁଭାଷ ଭାଷେ ଶୁକ ପିକରେ । ୩୨ ।

ହିତ ଉପୁଜିଲେ ସୁଖ କ କହିବେ ପାର
ହରଷ ହୋଇଲେ ତହିଁ ନାଗର ନାଗରୀ
ସେ ହୋଇ ଉଦିତ
ହଜିଲା ନିଧିକି ପ୍ରାପତ ସେ । ୩୩ ।

କ୍ଷଛନ୍ଦେ ସାରିଲେ କେଳି ବନେ ରାଧା ସିନ୍ଧୁ
କ୍ଷୁଡ଼ିଲେ ବିଷାଦ ମନୁ ବଲ୍ଲଭ ସୁମନୁ
ସେ କ୍ଷମାନିଧିଙ୍କ ଗୁଣ
କ୍ଷୁଡ଼ିବ ପାପ ଥିଲେ ପୁଣି ସେ । ୩୪ ।



# କଳିଯୁଗ ଚଉତିଶା

କରଯୋଡ଼ି କରେ ପାର୍ଥ ଶ୍ରୀହରି ଛାମୁର
କହ କଳିଯୁଗ କଥା କମଳାର ବର
କି ପ୍ରକାର
ନାଶ ଯିବେ କଳିଯୁଗ ନର ।

ଖଗପତି ହସି ହସି କହନ୍ତି ବଚନ
ଖସିପଡ଼ୁ ଦୁଃଖ ତୋର ଭକତ ଅର୍ଜ୍ଜୁନରେ
ଖରେ ଶୁଣ
ଖଳ କଳିଯୁଗ କଥାମାନ ।

ଗୁରୁ ଗଉରବ କଳିଯୁଗେ ନ ମାନିବେ
ଗିରସ୍ତକୁ ନାରୀମାନେ ପାଦେ ଖଟାଇବେ
ହେ ଗେଲ ଗଧେ
ଗୁପ୍ତେ ପର ପୁରୁଷେ ରମିବେ ।

ଘୋର କଳିଯୁଗେ କେ କାହାକୁ ନ ମାନିବେ
ଘରେ ଘରେ ମିଛ କହି କଳି ଉପୁଜିବେ ହେ
ଘଉଡ଼ିବେ
ଘୋର ପାପେ ପ୍ରାଣେ ନାଶ ଯିବେ ।

ଉତ୍ତମ ଲୋକଙ୍କ ସଙ୍ଗେ ସଙ୍ଗ ନ ହୋଇବେ
ଉପହାସ କରି ମୋ ଭକତେ ଭଣ୍ଡାଇବେ ହେ
ଊଣା ହେବେ
ଅଳ୍ପ ଲୋକେ କାକୁ ନ ମାନିବେ ।

ଚଷିବେ ଗୁପତି ଦଣ୍ଡା ନ ମାନିବେ କେହି
ଚଣ୍ଡୀ ଗୃମଣ୍ଡୀ ବୁଲିବେ ଗ୍ରାମ ଗ୍ରାମ ହୋଇ ହେ
ଚମକାଇ
ଚଟେଉ ଚଟେଉ ଭୟୁ ଉପୁଜାଇ ।

ଲୁଚିବେ ସକଳ ତୀର୍ଥ ଆପେ ଘନ ହେବେ
ଛନ୍ଦ କପଟରେ ଲୋକେ କୁଟୁମ୍ବ ପୋଷିବେ ରେ
ଛନ୍ଦ ହେବେ
ଲୁଚ ଦୟା ଧର୍ମ ପୁଣ୍ୟ ସବେ ।

ଜଳ ନ ବର୍ଷିବ ଇନ୍ଦ୍ର ହୋଇ କ୍ରୋଧ ମନ
ଜାଣିଥା ଅର୍ଜ୍ଜୁନ ଏହୁ ଶ୍ରୀମୁଖ ବଚନରେ
ଝୁରୁଥିବେ
ଝୁରି ଝୁରି ପ୍ରାଣେ ନାଶ ଯିବେ ।

ନାନା ଉପଦ୍ରବ ହେବ ଏ ମହୀମଣ୍ଡଳେ
ନ ମାନିବେ ବଡ଼ ସାନ ସବେ ମତ୍ତଭୋଳେ ରେ
ନଷ୍ଟେ ଠୁଳ
ନାଶ ଯିବ ଏ ମହୀମଣ୍ଡଳ ।

ଟାଣ ହିଁ ନ ରହିବ କାହାର ଟଳ ଚିତ୍ତେ
ଟଳୁଥିବେ ଟୁଳୁ ଟୁଳୁ ମରଣ ଆପୁତେ ରେ
ଟାହି ଗୀତ
ଟିହାଇବେ ଜାଣ ପାଣ୍ଡୁ ସୁତ ।

ଠାକୁର ବୋଲି ଆମକୁ କେହି ନ ମାନିବେ
ଠାବେ ଠାବେ ଦେବାଦେଙ୍କ ଅପୂଜା ରହିବେ ରେ
ଠକ ଯିବେ
ଠକପଣେ ଜନେ ନାଶ ଯିବେ ।

× × × ×

ଦେଡଶୁର ଭାଇ ବୋହୂ ନ କର ବାରଣ
ଦେଡାଇ ଖୁଡାଇ ଆଦି କରିବେ ରମଣ ରେ
ଦୁଷ୍ଟ ପଣ
ଦିବସରେ କରିବେ ରମଣ ।

ଧର୍ମ ଅଧର୍ମ ବିଚାର ନ ହେବ କାହାର
ଧରଣୀ ଦଶିବ ଜାଣିଥାଅ ହରିଶିଖ ରେ
ଧନୁର୍ଦ୍ଧର
ଧନ ଲୋଭ ବଢିବ ଅପାର ।

ନ ମାନିବେ ପୋଏ ବାପ ମାଆଙ୍କ ବୋଲକୁ
ନ ମାନିବେ କୁଳବଧୂ ଶାଶୂ ଶ୍ୱଶୁରଙ୍କ ରେ
ନିଷେଧକୁ
ନାରୀଏ ଛାଡ଼ିବେ ଗେରସ୍ତଙ୍କୁ ।

ପର ଦ୍ରବ୍ୟ ଚୋରି କରି ଘେନି ପଳାଇବେ
ପରଜା ଗୁହାରି କଲେ ରଜା ନ ଶୁଣିବେ ରେ
ପଳାଇବେ
ପଥେ ବସି ଅପଥେ ଗମିବେ ଚହ୍ନ ।

ଫନ୍ଦା କରିଥିବେ କୃଷି ବୋହିନେବେ ଆନ
ଫାନ୍ଦ ଫିକର କରିଣ ବଞ୍ଚିବେ ଜୀବନରେ
ଫନ୍ଦାମାନ
ଫାନ୍ଦି ଥିବେ ବସି ରାତ୍ରି ଦିନ ।

ବ୍ରାହ୍ମଣେ ଗାୟତ୍ରୀ ଛାଡ଼ି ଗାରଡ଼ି ଶିଖିବେ
ବେଦବିଦ୍ୟା ଗ୍ରାମେ ଗ୍ରାମେ ବୁଲାଇ ବିକିବେ ରେ
ବଣା ହେବେ
ବିପ୍ରମାନେ ତର୍ପଣ ତେଜିବେ ।

ଭରାଭର ହେବ ପୃଥ୍ୱୀ ନ ସହିବ ମହୀ
ଭୂମିକମ୍ପ ହେବ ପାର୍ଥ ଜାଣିଥାଅ ତୁହି ରେ
ଭଣ୍ଡ ଭାଇ
ଭଣ୍ଡିବେ ବାପକୁ ପୁଅ କାହିଁ ରେ ।

ମରୁଡ଼ି କରିବ ଇନ୍ଦ୍ର ବଜ୍ର ବରଷିବ
ମହୋଦଧି ବତାସରେ ମାଡ଼ିଣ ଆସିବ ରେ
ମିଥ୍ୟାଭାବ
ମଣିଷକୁ ମଣିଷ ଖାଇବ ।

ଯେତେବେଳେ ନୀଳାଞ୍ଚଳ ଛାଡ଼ି ଆମ୍ଭେ ଯିବୁ
ଯାଜପୁରେ ବିପ୍ର ଘରେ ଜନମ ହୋଇବୁ ରେ
ଜଗିଥିବୁ
ଯେ ଯେତେ ପୁଛିଲେ ନ କହିବୁ ।

ରାଜା ହିଁ ରାଜ୍ୟରେ କେହି ଜଣେ ନ ରହିବେ
ରାଜୁତି କରି ଫିରିଙ୍ଗି ଅଙ୍କ କଟାଇବେ ରେ
ରଜା ହେବ
ରଜା ପ୍ରଜା କରି ଏକ ଠାବ ।

ମାଳାଞ୍ଚଳ ଗୁଡ଼ ଆମ୍ଭେ ପିବୁ ଯେତେବେଳେ
ନିଆଁ ଲଗିଯିବ ଜାଣ ଚିହ୍ନ ଗୃଦ୍ ଆଗରେ ରେ
ନିଶା କାଳେ
ମାଳାଚଳୁ ଶୈର ଶିବ ହେଲେ ।

ସମୁଦ୍ର ମାଡ଼ି ଆସିବ ବତାସ ବହିବ
ଶ୍ରୀକଳ୍ପ ବଟକୁ ମୋର ଭାଙ୍ଗି ପକାଇବ ରେ
ସତ୍ୟ ଶିବ
ସତ୍ୟ ନାଶ ଆସିଣ ଘଟିବ ରେ ।

ହସି ହସି କହୁଛନ୍ତି ଅଖିଳ ଗୋସାଇଁ
ହଠ କରି କଥାମାନ କହୁନାହିଁ ମୁହିଁ
ହେ ହରିହର
ହୃଦ ପଦ୍ମ ଆନନ୍ଦ ହସର ।

କ୍ଷମେ କଳିଯୁଗ ଗୀତ ହୋଇଲା ସମ୍ପୂର୍ଣ୍ଣ
କ୍ଷମେ ଗୃହିଁ ସ୍ତମ୍ଭୀଭୂତ ହୋଇଲେ ଅର୍ଜୁନ
କ୍ଷମାନାଥ
କ୍ଷମ ଗୀତ ଭଣେ ଜଗନ୍ନାଥ ହେ ।



# ବା ଚଉତିଶା

କହନ୍ତ ଯୁଜେଷ୍ଠି ସହଦେବ ରାଇ ଶୁଣ ତୁମ୍ଭେ ମନ୍ତ୍ରୀବର
କଳିଯୁଗରେ ଯେ ଦେବତା ବ୍ରାହ୍ମଣ କେମନ୍ତ ଅଟେ ଆଚୃର ବା
କହ କଳିଯୁଗ କଥା
କହି ଫେଡ଼ ହୃଦୁ ମନୁ ବ୍ୟଥା ବା । ୧ ।

ଖଡ଼ ଧରଣ ସହଦେବ ବୋଲନ୍ତି ଶୁଣ ତୁମ୍ଭେ ନୃପବର
କ୍ଷଣେ ରାଜା ପରଜାଙ୍କୁ ଦୟା ନୋହିବ ବହିଣ ନେବେ ସକଳ ବା
ଖନ୍ଦ ଥାଉଁ ସାଧୁଥିବେ କର
କ୍ଷଣେ ପରଜା ହେବେ ବାହାର ବା । ୨ ।

ଗାରଡ଼ୀ ମନ୍ତ୍ର ପଢ଼ିବେ ବ୍ରାହ୍ମଣେ ଗାୟତ୍ରୀ ମନ୍ତ୍ରକୁ ଛାଡ଼ି
ଗଉଡ଼ମାନେ ବୈଷ୍ଣବ ବୋଲାଇବେ ଗାଈ ପେଟରୁ ବାଛୁରି କାଢି ବା
ଗୁରୁ ନ ମାନିବେ ଆଉ ଶିଷ୍ୟ
ଗୁରୁସ୍ତଙ୍କୁ ନାଶି ଦେବେ ବିଷ ବା । ୩ ।

ଘରେ ଘରେ ସବୁ ମିଛ ଉପୁଜିବ କେହି ନକହିବେ ସତ
ଘେନବେ ବ୍ରାହ୍ମଣେ ମୃତ୍ୟୁଶବଦାନ ବେଚ ଲୋକକୁ ପାଞ୍ଛିବେ ହାଥ ବା
ଘୃତ ନ ଦେବେଟି ଅଗ୍ନିମୁଖ
ଘରେ ଘରେ ମାଗୁଥିବେ ଭିକ ବା । ୪ ।

ନେଚ ଲୋକମାନେ ଉଚ୍ଚରେ ଉଠିବେ କଉଡ଼ିରେ କରି ପ୍ରୀତି
ନେଚ ଉଚ୍ଚ ଦୁହେଁ ସରିସମ ହେବେ ନ କରିବେ ଭୟ ଭ୍ରାନ୍ତି ବା
ନିଜ ଭ୍ରାଥାକୁ ଛାଡ଼ିବେ ନାରୀ
ନିଆଁ ଗିଳିବେ ସାହାସ କରି ବା । ୫ ।

ଚିତା ପଇତା ତମ୍ବାଗଡ଼ୁ ଛଡା ଚୃରିବେଦ ଅଧିକାରୀ
ଚଉତରୟେ ଚଉଧୁରୀ ହୋଇବେ ମଦ୍ୟପଙ୍କ ସଙ୍ଗେ ସରି ବା
ଚିତ୍ତେ ନୋହିବ ଯେ ଭୟ ଭ୍ରାନ୍ତି
ଚଣ୍ଡାଳ ବ୍ରାହ୍ମଣ ସଙ୍ଗେ ପ୍ରୀତି ବା । ୬ ।

ଛତ୍ରି ଲୋକମାନେ ସଂଗ୍ରାମକୁ ଯାଇ ଜୀବକୁ କରିବେ ଆଶ
ଛଛନ୍ଦେ ରଣେ ବଇକୁଣ୍ଠ ପ୍ରାପତ ଛାଡ଼ି ପଳାଇବେ ରଣ ଯଶ ବା
ଛଳେ ନୋହିବେ କେ ଛତ୍ରି ପଣ
ଛତ୍ରି ହୋଇଣ ଛାଡ଼ିବେ ରଣ ବା । ୭ ।

ଜାତି ଅଜାତି ଏକାକାର ହୋଇବ ଘରେ ଘରେ ହେବ ଭାତି
ଜଉତିଷମାନେ ଲଗ୍ନ ନ ଜାଣିବେ ଜଳ ଅକାଳେ କରିବେ ବୃଷ୍ଟି ବା
ଝାଂବ ଜନ୍ତୁରେ ନ ଥିବ ଦୟା
ଜଗନ୍ନାଥେ କରିଛନ୍ତି ମାୟା ବା । ୮ ।

ଝିଅ ବାପକର କଉଡ଼ି ଘେନବେ ତହିଁ ନ ସରିବ ଦିନ
ଝିଅର କଉଡ଼ି ଝିଅ ଘେନପିବ ସଂସାରେ ବୋଲିବେ ହୀନ ବା
ଝଳ ସୁବର୍ଣ୍ଣ ଦିଶେ ଯେସନ
ଝିଅ ନ ଦେବେଟି କନ୍ୟାଦାନ ବା । ୯ ।

ନିସତ ହୋଇବେ ନିୟମ କରିବେ କେହି ନ କହିବେ ସତ
ନବଯୁବା ସ୍ତ୍ରୀ ଘରେ ଥାଉ ଥାଉ ବଟପୀ ସ୍ତ୍ରୀଙ୍କ ରତ ବା
ନ କରିବେ ବୁଝାମଣା ରାଜା
ନିଶ୍ଚେ ମରିବେ ଗୋ ଜନ୍ତୁ ପ୍ରଜା ବା । ୧୦ ।

ଟାହି କରିବେ ଶୂଦ୍ର ଯେ ବ୍ରାହ୍ମଣଙ୍କୁ ଟେକନ୍ତି ଯେଉଁ ଶାହାସ୍ତ୍ର
ଟଙ୍କାଟିକୁ ଧାନ ଭରଣେ ହୋଇବ ନ ମିଳିବ ଅନ୍ନ ବସ୍ତ୍ର ବା
ଟେକ କହକନା ଧର୍ମଗ୍ରନ୍ଥେ
ଟେକିଅଛନ୍ତି ଯେଉଁ ଦେବତାଏ ବା । ୧୧ ।

ଠାକୁର ଯୁଜେଷ୍ଟି କର୍ଣ୍ଣ ଛୁଇଁ ଛିଠି କ ବୋଇଲୁ ବାପ ଭାଇ
ଠାକୁର ପଣ ମନେ ନୋହିବ କଳିଯୁଗେ କାର୍ଯ୍ୟ ନାହିଁ ବା
ଠିକେ କହନ୍ତି ନେମାର ଆଗର
ଠାକୁର ପଣ ପଛେ ହୋଉ ଦୂର ବା । ୧୨ ।

ଡରିବେ ନାହିଁ ବୋହୂମାନେ ଶାଶୁଙ୍କୁ ଅନ୍ୟାଗ୍ରହରେ ଦେବେ ଗାଳି
ଡାକୁଣୀ ଡାହାଣୀ ବାଦେ ଲଗିଥାଇ ଘରେ କରୁଥାଇ କଳି ବା
ଡର ନୋହିବ ପିତାମାତାଙ୍କୁ
ଡେଲି ପିଟିବେଟି ଶିଷ୍ୟ ଗୁରୁଙ୍କୁ ବା । ୧୩ ।

ଢାଲେହେଁ ବ୍ରାହ୍ମଣେ ସନ୍ଧ୍ୟା ନ କରିବେ ଅବିଦ୍ୟା ପାଠ ପଢ଼ିବେ
ଢମ କହୁଥିବେ ରାନ୍ଧୁଣିଆ ପଣେ ଶୂଦ୍ରଙ୍କ ସଙ୍ଗେ ବସିବେ ବା
ଢାଳେ ପାଣି ଝର ନେନ ଛତା
ଢମେ ବୋଲେ ରାଜା ନମହନ୍ତା । ୧୪ ।

ଅହଙ୍କାର ମନୁ ଦଣ୍ଡେହେଁ ନ ଯିବ ନିରନ୍ତରେ ମନେ ଦୁଖ
ଆପଣା ସ୍ତିରୀକୁ ପର ନେଉଥିବ ଗୃହଁ ଥିବେ ତାର ମୁଖ ବା
ଅଣ ଅପ୍ରାଧ ହୋଇବେ ନାଶ
ଅଣ ଆୟୁଷ ନୋହେ କାହାର ବା ।୧୫।

ତିନି ତିନି ନର ଏକା ଯୁବତୀର ଲଜକୁ ନ ଥାଇ ଡର
ତିନି ଗୁଡ଼ି ଗୃହ ଗୁରସ୍ତ ହୋଇଲେ ପୁଣି ଦ୍ୱିତୀୟ ସ୍ୱୟମ୍ବର ବା
ସ୍ତିରୀ ନ ମାନମେ ପୁରୁଷଙ୍କୁ
ଗୃହ ଗୁରସ୍ତ ଏକା ଜଣଙ୍କ ବା । ୧୬ ।

ଥୋଇଲା ମାଇପ ଘର ଯେ କରିବେ ବ୍ୟାହା ମାଇପକୁ ଛାଡ଼ି
ଥାନି ଲୋକମାନେ ଥାନ ଛାଡ଼ିଯିବେ ଅଥାନେ ବସିବେ ମାଡ଼ି ବା
ଅପେୟ ନୋହିବ କାହାର ବୃଦ୍ଧି
ଥେଣ୍ଟ ଗଣ୍ଡିଆ ଖାଇବେ ବୁନ୍ଧ ବା । ୧୭ ।

ଦାଅର ଭାଉଜ ଘର ଯେ କରିବେ ଗୁରସ୍ତ ହେବ ପୋଇଲା
ଦାଉଣ୍ଡି ବଳଦ ମୁହଁ ବାନ୍ଧିଥିବେ, ବ୍ରାହ୍ମଣେ କରିବେ ମାୟା ବା
ଦାନ ନସରେ ଦାନ ମୂଲଆ
ଦୁଇ ପହରକୁ ଠିଆ ଠିଆ ବା । ୧୮ ।

ଧର୍ମି ଲୋକମାନେ ଅଧର୍ମକୁ ଯିବେ କାହାଣକେ ନେବେ ପଟେଣି
ଧର୍ମି ତହିଁ ଅଛୁ ଅଢ଼ାଇ ବୋଡ଼କ ସମସ୍ତେ ତ ଜଣେ ଜଣେ ବା
ଧରି ନେବେଟି ଶକଣି ଠଙ୍କା
ଧର୍ମି କାହାକୁ ନୋହିବ ସଖା ବା । ୧୯ ।

ନ ଶୁଣିମେ ରାଜା ପରଜା ଗୁହାରି ନଷ୍ଟେ ମରିବେ ଗୋ ଜନ୍ତୁ
ନିସତେ ଖାଦ୍ୟ ପରଜା ହସ୍ତେ ଦେଇ କରିବେଟି ହନ୍ତୁ ସନ୍ତୁ ବା
ନାହିଁ ଗ୍ରେହରକୁ ଏମନ୍ତ ଶାସ୍ତି
ନଷ୍ଟେ ଉପୁଜାଇ ହେବେ କଷ୍ଟୀ ବା । ୨୦ ।

ପୋଇଲା ମାଇପ ପଢ଼ି ଲେଖିଦେବ ପଢ଼ୁଆକୁ ନେବେ କର
ବୁଢ଼ାବୁଢ଼ୀଙ୍କ ବାହାର କରିଦେଇ ପୁଅ ବୋହୂ କରିବେ ଘର ବା
ପୁଅ ବାପକୁ କରିବେ ଲୋକ
ପାପ ପୁଣ୍ୟକୁ ନ ଥିବ ଦାକ ବା । ୨୧ ।

ଫଳବ ନାହିଁଟି କଉଁ ବୃକ୍ଷି କଆଁର ବକାରେ ହୋଇବ ଟାଣ
ଫନ୍ଦାକଲେ ଫଳଯାକ ନ ଅଣ୍ଟିବ ସାଧୁଙ୍କୁ ନ ଦେବେ ଋଣ ବା
ଫଳ ଜଗୁଁ ଜଗୁଁ ନ ରହିବ
ଫୁଲ ଫୁଟିଲେ ଫଳ ନୋହିବ ବା । ୨୨ ।

ବଧବା ବ୍ରାହ୍ମଣୀ ପେଟ ପୋଡ଼ା ଖାଇ ଶୂଦ୍ରଙ୍କ ସଙ୍ଗତେ ରତ
ବ୍ରାହ୍ମଣମାନେ ଅଷ୍ଟାଗୃର ହୋଇବେ ମଚ ସଙ୍ଗତେ ପୀରତ ବା
ବେଦ ଗୁଡ଼ଣ ବ୍ରାହ୍ମଣେ ଗୃଷୀ
ବହୂ ମାରବେ ଶାଶୂଙ୍କୁ ପଶି ବା । ୨୩ ।

ଭାଇ ବହୂ ବେଡ଼ଶୁର ନ ମାନବେ ପେଲ କହୁଥିବେ କଥା
ଭଣ୍ଡାରୀମାନେ ଚଉଧୁରୀ ହୋଇବେ ଶୂଦ୍ର ହେବେ ନମହତା ବା
ଭଜ ନୀଳାଚଳ ପତି ଏକା
ଭଣେ ପାମର ଅକ୍ଷିତ ଲୋକା ବା । ୨୪ ।

ମୂଗୁଲ ଖାଇବେ ଓଡ଼ଶା ରାଇଜ ସୂର୍ଯ୍ୟବଂଶି ଅନ୍ତ ହେଇ
ମଲେଟି ପରଜା ହନ୍ତସନ୍ତ ହୋଇ ଭୃଥଙ୍କର ଶାପ ପାଇ ବା
ମାତା ପିତା ନ ମାନବେ ପୁଅ
ମାଇପଙ୍କଠାରେ ବଡ଼ ସ୍ନେହ ବା । ୨୫ ।

ଯୁବାସ୍ତିରୀଙ୍କୁ ବାପଘରେ ଗୁଡ଼ଣ ଦାଣ୍ଡେ କହିବେ ବଡ଼ାଇ
ଜପ ନ କରବେ ଧର୍ମ ନ କରବେ ଭକାରୀ ଭକ ବୁଡ଼ାଇ ବା
ଯୋଗ ଜଉତଷ ନ ଜାଣିବେ
ଜଳ ଅକାଳେ ବୃଷ୍ଟି କରବେ ବା । ୨୬ ।

ରାଜା ନ ଶୁଣିବେ ପରଜା ଗୁହାର ମନ୍ତ୍ରୀଙ୍କି ରାଇଜ ଦେଇ
ରାଇଜଯାକ ବାହାପିଆ ଖାଇବେ ଛତିପତିମାନ ବହି ବା
ରାଜା ଜଗନ୍ନାଥଙ୍କରେ ପତ
ରାଜା ଯାଜେଷ୍ଟି ପ୍ରଭୁ କହନ୍ତ ବା । ୨୭ ।

ଲୋଭରେ ପ୍ରାଣୀ ଛଟପଟ ହୋଇବେ ଜଳ ମୀନ ପ୍ରାୟେ ହୋଇ
ଲେଖାଲେଖି ଏକାଦଶକେ ସରବ ପାପପୁଣ୍ୟେ ଭୟେ ନାହିଁ ବା
ଲୁହା କଲଙ୍କ ଲାଗିଣ ଭସ୍ମ
ଲୋଭ ଲାଗି ପ୍ରାଣୀ ଯିବେ ନାଶ ବା । ୨୮ ।

ବଇଦେମାନେ ବ୍ୟାଧିକ ନ ଚହ୍ନିଣ ମନ୍ତ୍ରକୁ କରିବେ ହେଳା
ବିଶ୍ୱାସ ଲୋକେ ଅବିଶ୍ୱାସ ହୋଇବେ ମିଛେ କରିଥିବେ ମେଳା ବା
ବିଷ ବିଶ୍ୱାସ କଲେଣି ଖାଇ
ବୁଦ୍ଧିକୁ ଭୁଲିଣ ଭ୍ରମି ମରଇ ବା । ୨୯ ।

ସହଦେବ କହେ ଶୁଣ ଧର୍ମରାୟେ କଳିଯୁଗର ଏ ଗତି
ସହସ୍ରେ ବରଷ କଳି ଭୋଗ ହେଲା ଧରାଇଣ ଦଣ୍ଡଛତ୍ର ବା
ଶୁଣି ମଉନ ଯୁଜେଷ୍ଠି ରାୟେ
ସଭା ମଧ୍ୟରୁ ଶୂନ୍ୟକୁ ଗୃହେଁ ବା । ୩୦ ।

ସହଦେବଙ୍କୁ ଯୁଜେଷ୍ଠି ଆଜ୍ଞା ଦେଲେ ଶୁଣ ତୁମ୍ଭେ ମନ୍ତ୍ରୀବର
ସକାଳ ଯେ ମୋତେ ଦର୍ଶନ କରିବ ତାକୁ ଦେବ ରାଜ୍ୟଭାର ବା
ସଜ କରିଣ ଆଣ ଅଶ୍ୱକୁ
ଶାଢ଼ୀ ଦେଲେ ଢ଼ଲୀ ପାଇଗ୍ଣକୁ ବା । ୩୧ ।

ସ୍ନାହାନ ନିମନ୍ତେ ସୁବର୍ଣ୍ଣ ଗରାରେ ଆପଣେ ଆଣିଲେ ପାଣି
ଶାଢ଼ୀ ଦେଲେ ତାଙ୍କୁ ଗଜପତି ପଣେ ଯୁଜେଷ୍ଠି ଯେ ନୃପମଣି ବା
ଶାଢ଼ୀ ଦେଇ ବୈକୁଣ୍ଠକୁ ଗଲେ
ସଙ୍ଗତରେ କାହାକୁ ନ ନେଲେ ବା । ୩୨ ।

ହରି ହରି ବୋଲି ଶୁଭିଲା ଶବଦ ଯୁଜେଷ୍ଠି ସ୍ୱର୍ଗକୁ ଗଲେ
ହେମ ସେତୁବନ୍ଧ ଗଡ଼ଉଁ କର୍ଣ୍ଣାଟ ଓଡ଼ିଶା ରାଜାଙ୍କୁ ଦେଲେ ବା
ହସ୍ତୀ ମନ୍ତ୍ରିଲେ ଧବଳ ଛତ୍ର
ହରିଶରଣ ଧର୍ମ ନୃପତି ବା । ୩୩ ।

ଛପନ କୋଟି ଜୀବଜନ୍ତୁ ଉପରେ ଜଗନ୍ନାଥ ପ୍ରଭୁ ଦାତା
ଛପ୍ନାଶୋଇ ସହସ୍ର ରାଜାଙ୍କ ଉପରେ ଓଡ଼ିଶା ରାଜା କରତା ବା
କ୍ଷଣେ ଚିନ୍ତା କରେ ପଦ୍ମମୁଖ
ଗ୍ଣୁର ଲୋକା ବୋଲେ ମୋତେ ରଖ ବା । ୩୪ ।



# ବୋଲି ଚଉତିଶା

କଦମ୍ବ ଗଛର ଛୁଇ ଗୋ
କଦମ୍ବ ମୂଳରେ ରହେ କହ୍ନାଇ
ଗୋପାଳୁଣୀ ହେଲେ ବାଇ ଗୋ । ୧ ।

ଖଣ୍ଡି କୋଳିଗଛ ଛୁଇ ଗୋ
ଖଟିଥିଲୁ ଆମ୍ଭେ ସଙ୍ଗ ଗୋପବାଳୀ
ଖୋଜିଲେ ଭେଟ ନ ପାଇ ଗୋ । ୨ ।

ଗମ୍ଭାରୀ ଗଛର ଛୁଇ ଗୋ
ଗୋପରେ ଗୋପୀଙ୍କି ବୋଲଣା ହୋଇଲା
ଯମୁନା ଗାଧୋଇ ଯାଇ ଗୋ । ୩ ।

ଘାଣ୍ଟିଆ ଗଛର ଛୁଇ ଗୋ
ଘୋର ବୃନ୍ଦାବନେ ମୁରଲୀ ବଜାନ୍ତି
ଘାଗୁଡ଼ି-ମାଳ ଲମ୍ବାଇ ଗୋ । ୪ ।

ନରକୋଳି ଗଛ ଛୁଇ ଗୋ
ନରସିଂହ ରୂପେ ହିରଣ୍ୟ ମାରିଲେ
ପ୍ରହଲ୍ଲାଦ ପଦ ଦେଇ ଗୋ । ୫ ।

ଚନ୍ଦନ ଗଛର ଛୁଇ ଗୋ
ଚିତା ସଲଖରେ ସାଜିଥାଇ ଚୂଳ
ଚତୁର୍ଭୁଜ ମୋହିବା ପାଇଁ ଗୋ । ୬ ।

ଛତୁଆରୀ ଗଛ ଛୁଇ ଗୋ
ଛୁଟପିଠି ନନ୍ଦ କୋଳେ ବସାଇଲେ
ଛୁଆଳ ବାଳ ମାଧୋଇ ଗୋ । ୭ ।

ଜର୍ଜାଙ୍ଗ ଗଛର ଛୁଇ ଗୋ
ଯେଉଁଦିନୁ ଗଲେ ନନ୍ଦର ନନ୍ଦନ
ଯମୁନା ସ୍ନାହାନ ନାହିଁ ଗୋ । ୮ ।

ଝୁମୁକା ଗଛର ଛୁଇ ଗୋ
ଝଟକୁଅଛି ଯେ ମୟୂର-ଚନ୍ଦ୍ରିକା
ଝଟକି ପଡ଼ଇ ମହୀ ଗୋ । ୯ ।

ନମ୍ବ ଗଛର ଗୁଳି ଗୋ
ନନ୍ଦର ନନ୍ଦନ ଶ୍ରୀ ମଧୁସୂଦନ
ନନ୍ଦ ମନ୍ଦିରକୁ ଯାଇ ଗୋ । ୧୦ ।

ଟଗ୍ର ଗଛମୂଳ ଗୁଳି ଗୋ
ଟେକି-ପଣ କରି ଇନ୍ଦ୍ର ବାଦକଲା
ରଖିଲେ ଗୋପର ଗୋଣ୍ଡି ଗୋ । ୧୧ ।

ଠାକୁର-ଶ୍ରୀଭୁଜ-ଗୁଳି ଗୋ
ଖୋଜି ଖୋଜି ମୁନି ଭେଟ ନ ପାଇଲେ
ଠୁଳ ଶୂନ୍ୟ ପରେ ଥାଇ ଗୋ । ୧୨ ।

ଡାଳିମ୍ବ ଗଛର ଗୁଳି ଗୋ
ଡକାକରି ସରଳବଣୀ ଖାଆନ୍ତି
ଡାକିଲେ ଚଳାଇ ଯାଇ ଗୋ । ୧୩ ।

ଢାମଣା ଗଛର ଗୁଳି ଗୋ
ଢମପଣ କରି ପୋତନା ଅଇଲା
ପ୍ରାଣ ଶୋଷିଲେ ମାଧୋଇ ଗୋ । ୧୪ ।

ଅରୁଣ ଗଛର ଗୁଳି ଗୋ
ଅରଣ୍ୟ ଭିତରେ ବାରତା ପାଇଲେ
ଦଶରଥ ନାଶ ଯାଇ ଗୋ । ୧୫ ।

ତରାଟ ଗଛର ଗୁଳି ଗୋ
ତୁରି ତୁରି କରି ମୁରଲୀ ବଜାନ୍ତି
ତନୁ ଜର ଜର ହୋଇ ଗୋ । ୧୬ ।

ଥରଥରି ଗଛ ଗୁଳି ଗୋ
ଥଣ୍ଟରେ ବକାସୁରକୁ ମାଇଲେ
ରଖିଲେ ଗୋପର ଗୋଣ୍ଡି ଗୋ । ୧୭ ।

ଦମ୍ଭଣା ଗଛର ଗୁଳି ଗୋ
ଯୁଗ ପ୍ରଳୟରେ ମାର୍କଣ୍ଡ ଋଷି
ଗର୍ଭରେ ରହିଲେ ଯାଇ ଗୋ । ୧୮ ।

ଧନିଆ ଗଛର ଗୁଳି ଗୋ
ଧରଣୀ-ଧର ତ ମଥୁରାକୁ ଗଲେ
ଧଇର୍ଯ୍ୟ ନ ରହେ ଦେହି ଗୋ । ୧୯ ।

ନଳିତା ଗଛର ଗୁଇ ଗୋ
ନଉଲୀ ବୟୁସୀ ନନ୍ଦର ନନ୍ଦନ
କୁବୁଜା ଉଦ୍ଧୁଳ ହୋଇ ଗୋ । ୨୦

ପଣସ ଗଛର ଗୁଇ ଗୋ
ପଦୁଫୁଲ ଛାୟେ ନନ୍ଦର ନନ୍ଦନ
ଅକ୍ରୁର ଟୋପରୁ ଖସିଇ ଗୋ । ୨୧ ।

ଫଣଫଣା ଗଛ ଗୁଇ ଗୋ
ଫଗୁ ଖେଳିବାକୁ ପରମାନନ୍ଦ ଯେ
ମଥୁରା ରହିଲେ ଯାଇଁ ଗୋ । ୨୨ ।

ବଉଳ ଗଛର ଗୁଇ ଗୋ
ବୃନ୍ଦାବନେ ବ୍ରହ୍ମା ବତ୍ସ ହରିନେଲେ
କୃଷ୍ଣଙ୍କ ଭେଟ ନ ପାଇ ଗୋ । ୨୩ ।

ଭାଲିଆ ଗଛର ଗୁଇ ଗୋ
ଭାରତ ଯୁଦ୍ଧରେ ସାରଥି ହୋଇଲେ
ଅର୍ଜୁନ ରଥରେ ଯାଇ ଗୋ । ୨୪ ।

ମରିଚ ଗଛର ଗୁଇ ଗୋ
ମାଇଁ ମାଇଁ ବୋଲି ରାଧାକୁ ଡାକନ୍ତି
ଆଣ୍ଡବୃତ୍ତୀ ଘରେ ନାହିଁ ଗୋ । ୨୫ ।

ଜୟନ୍ତୀ ଗଛର ଗୁଇ ଗୋ
ଜଗତ ଜୀବନ ଯଶୋଦା-ନନ୍ଦନ
ମଥୁରା ରହିଲେ ଯାଇଁ ଗୋ । ୨୬ ।

ରଙ୍ଗମୟୀ ଗଛ ଗୁଇ ଗୋ
ରଙ୍ଗେ ରଙ୍ଗେ ବଂଶୀ ଧରି ନାଚୁଥାନ୍ତି
ନାଟୁଆ ପରାୟେ ହୋଇ ଗୋ । ୨୭ ।

ଲବଙ୍ଗ ଗଛର ଗୁଇ ଗୋ
ଲଉଡ଼ି ଧରିଣ ଶ୍ରୀ ମଧୁସୂଦନ
ନନ୍ଦ ମନ୍ଦିରକୁ ଯାଇ ଗୋ । ୨୮ ।

ବରକୋଳି ଗଛ ଗୁଇ ଗୋ
ଗୋପର ଗୋପୀଙ୍କି କେଳି କରିଥିଲେ
ବୃନ୍ଦାବନରେ ତ ନେଇ ଗୋ । ୨୯ ।

ଷିଆଳି ଗଛର ଗୁଳି ଗୋ
ସାତଦିନ କୃଷ୍ଣ ବଦ୍ୟା ପଢ଼ିଗଲେ
ସଙ୍ଗେ ବଳରାମ ଭାଇ ଗୋ । ୩୦ ।

ଶଜନା ଗଛର ଗୁଳି ଗୋ
ସାତଦିନ ତହିଁ ଇନ୍ଦ୍ର ବାଦକଲେ
ରଖିଲେ ଗୋପର ଗୋଷ୍ଠି ଗୋ । ୩୧ ।

ସୁନାଖି ଗଛର ଗୁଳି ଗୋ
ଯମୁନାରେ କୃଷ୍ଣ ସ୍ନାହାନ ସାରିଲେ
ଅକ୍ରୂର ସଙ୍ଗତେ ଥାଇ ଗୋ । ୩୨ ।

ହରିଡ଼ା ଗଛର ଗୁଳି ଗୋ
ବୀର ହନୁମନ୍ତ ପବନର ସୁତ
ସୀତା ଠାବ କଲେ ଯାଇଁ ଗୋ । ୩୩ ।

କ୍ଷୀରକୋଳି ଗଛ ଗୁଳି ଗୋ
କ୍ଷେମେ ନିଧିଦାସ ଶରଣି ମାଗଇ
ରଖିଲେ ଗୋପୀ ମାଧୋଇ ଗୋ । ୩୪ ।



# କଳସା ଚଉତିଶା

କହନ୍ତି କାମିନୀ ଶୁଣ ହେମନ୍ତ ଦୁଲଣୀ
କାହୁଁ ବରେ ବରିଲେ ତୁମ୍ଭର ଚିନ୍ତାମଣି
କୁଳ ମୂଳ ଗୋତ୍ର ଆଦ୍ୟ ନାହିଁ ଜାଣି ତାର
କନକ ବେଦିରେ ବୂଢ଼ା ବସିଛି ମଧ୍ୟର । ୧ ।

ଖଁ ଖଁ ଖାସ ସାହାସେଣି ପେଲୁଅଛି ଧଇଁ
ଖରନିଶ୍ୱାସ ବୁଢ଼ାର ମାଥ ଲଗେ ଭୂଇଁ
ଖଣ୍ଡିଆ ଯୋଗୀର ସଙ୍ଗେ ନାହିଁ ଯାନ ତାର
ଖଣ୍ଡିଆ ବଳଦ ବୂଢ଼ା ବାନ୍ଧିଛି ଦାଣ୍ଡର । ୨ ।

ଗୋଡ ହାତ ଫଣଫୁଲ ଗଳୁଛି ନୟନ
ଗଣ୍ଡସ୍ଥଳେ ଲମ୍ବଇ ମୁଦ୍ଦୁଖ ଦରଶନ
ଗ୍ୟାନଭ୍ରଷ୍ଟ ହୋଇଲାଣି ଭୋଳେ ତାର ମତି
ଗୁଣ ଲକ୍ଷଣ ବୁଢ଼ାର ନାହିଁ ତଥିଗତି । ୩ ।

ଘର ତାର କେବଣ ଦେଶରେ ତଥ୍ୟ ନାହିଁ
ଘଟାଇଲା ବନ୍ଧୁ ଆଣି ଏମନ୍ତ କରାଇ
ଘଟ ଘଟ ହୋଇ ଲାଳ ବହୁଛି ତୁଣ୍ଡର
ଘନଜଟା ଲେଖୁଏକ ବାନ୍ଧିଛି ମୁଣ୍ଡର । ୪ ।

ନ ଚହ୍ନଇ ମନୁଷ୍ୟ ସେ ନ ଦେଖେ ନୟନ
ନିକଟେ ଡ଼ାକିଲେ ନ ଶୁଣେ ତା ବେନିକର୍ଣ୍ଣ
ନଖ ମୁଖ ଚକ୍ଷୁ ସ୍ଥାନ ପଶିଲା ଭିତର
ନଆ ଝଣି ଖଣା ପ୍ରାଏ ଦଶୁଛି ଉଦର । ୫

ଚର୍ମୈକ ମାଢ଼ଣ ବୁଢ଼ା ବସିଛି ମଧ୍ୟେଣ
ଚଉପାଶେ ବେଢ଼ିଛନ୍ତି ଦେବତା ବ୍ରାହ୍ମଣ
ଚକେବା ବୁଢ଼ାକୁ ଦେଖି ଚକିତ ହୋଇଲୁ
ଚିନ୍ତା ସାଗରରେ ସଖି ! ନିଶ୍ଚୟେ ବୁଡ଼ିଲୁ । ୬ ।

ଛିନ୍ନଅଙ୍ଗେ ଛିଣ୍ଡାଗନ୍ଥା ଲାଗିଛି ତାହାର
ଛାର ପାଉଁଶ ଲେଖୁଏ ଲେପିଛି ଶରୀର
ଛନ୍ଦିଅଛି ସର୍ପମାଳ ମୁଣ୍ଡେ ଆଭରଣ
ଛଟକେ ଭେଳିକ ବୁଢ଼ା ଲଗାଇଲା ଜାଣ । ୭ ।

ଜଙ୍ଗମକୁ ପ୍ରାପତ ହୋଇଲୁ ଚନ୍ଦ୍ରମୁଖି !
ଯାହା ତୋର କପାଳରେ ବ୍ରହ୍ମ ଅଛି ଲେଖି
ଯୁବାକାଳେ ଯଉଁ ଯୋଗ ଭୁଞ୍ଜିବୁ ନା ଯାହା
ଜାଣୁ ଜାଣୁ ଜଙ୍ଗମ ଗୋଟାକୁ ହେଲୁ ବାହା । ୮ ।

ଝୁମୁ ଝୁମୁ ବାଜେ ଘଣ୍ଟି ଘାଗୁଡ଼ି ଲେଉଏ
ଝମକୁଣ ଅଛି କରେ ତ୍ରିଶୂଳ ଗୋଟାଏ
ଝୁଲିହୋଇ ଝିଙ୍କିହୋଇ ପଡ଼ୁଛି ଢ଼ୁଲାଇ
ଝିଅକ ନାତୁଣୀ ପ୍ରାୟେ ଦିଶିବୁ ଗୋ ତୁହି । ୯ ।

ନିସତେଜ କହେ କଥା ନକୁଟିଣ ଦାନ୍ତ
ନ ଆସଇ ବାଣୀ ତାର ଦୁହିଁହୁଏ ଅନ୍ତ
ନିତି ଧାଡ଼ି ଭୁଛି ତାକୁ ନ ମିଳେ ଭଣ୍ଡାରୀ
ନିଶାକାଳେ ଯେ ଦେଖିଲେ ଭୟୁ ଡ଼ରପାଉ ।୧୦

ଠେଲଠେଲ ହୋଇ ଠେକ ବସି ନ ପାରଇ
ଠାକୁଆ ଗାଲ ପାକୁଆ ଦାନ୍ତ ଆଉ ନାହିଁ
ଠକ ଠକ ହୋଇ ତା ଲାଗଇ ବେନି କଣ୍ଠ
ଠାକସ୍ଥା ନିର୍ମାଣ ସେ ଅଛି ତ ଅପାବନ । ୧୧ ।

ଠୁଳ କରିଥିବା ଭିକ୍ଷା ମାଗିବାର ଧନ
ଠକିଥିଲା ନେବ ବୋଲି ହେମନ୍ତ ରାଜନ
ଠକର ସ୍ୱଭାବ ସେ ଗୋ ଲଗାଇଲା ଆଣି
ଠାବେ ହେତୁ ନାଶଗଲା ହେମନ୍ତ ଦୁଲଣୀ । ୧୨ ।

ଡାକୁଏ ବଜାଉଅଛି ଥାଳେକ ଝୋଲର
ଡଙ୍ଗର ଡାଙ୍ଗୁଆ ଧେନ କରିବୁ ଗୋ ଘର
ଡମ୍ବରୁଧରକୁ ସେବା କଲୁ ପରମାଣି
ଡଙ୍ଗର ବର ପାଇଲୁ ଦେଲେ ଶୂଳପାଣି । ୧୩ ।

ତୋର ତପସିଙ୍କ ମାଗୋ ବଳାଇଲୁ ଚିତ୍ତ
ତୋକର ଯୋଗୀଙ୍କ ମାଗୋ ହୋଇଲୁ ପ୍ରାପତ
ତମାଳ ନିକର ମୁଁ ଯେ କହୁଅଛି ସତ
ତାଳେ ହେତୁ ନାଶଗଲା ହେମନ୍ତ ଦୁହିତ । ୧୪

ଅଣାଇଲେ ରାଜ୍ୟେ କାହୁଁ ବରେକ ବରଣ
ଅଣ ମନୁଷ୍ୟ ଯେ ସେ ଅଟୁ ତ ଅପାବନ
ଅଖଣ ସାରିଲେ ମାଏ ଝିଏ ଦୁହେଁ ଚହାଇ
ଅଣ ଉହାଡ଼ରେ ଶୀଘ୍ରେ ଦେଖାଇଲେ ନେଇ । ୧୫ ।

ତୀକ୍ଷ୍ଣ ଶରବର ବାକୀ ବାଜିଲ ହୃଦର
ତଡ଼ତେ ପଡ଼ିଲ ଭୂଇଁ ନେଜ ତା ମନ୍ଦର
ତକ୍ଷଣେ ତୋଳ ଧଇଲେ ତାହାଙ୍କର ଦାସୀ
ତୂରତେ ମିଳିଲେ ମାଏ କନ୍ଧରେ ତା ଆସି । ୧୬ ।

ଥରହର କରି ମାଏ ବୋଲନ୍ତି ବଚନ
ଥିରକର ମନ ମାଗୋ ! ନୁହ ଅଚେତନ
ଥିଲା ଏତେକାଳେ ମୋର ଦୁଲଣା ହୋଇଣ
ଧନ ଯଉବନ କାଳେ ଦେଉଛୁ ଜୀବନ । ୧୭ ।

ଦଇନ କରି କହୁଛି ଶୁଣ ମୋର ମାଏ
ଦନ୍ତେ ତରଣ ଧରଣୀ ଓଲଗଇ ପାଏ
ଦରିଦ୍ର ହୀନ ବୂଢ଼ାକୁ ଯେବେ ମୋତେ ଦେବୁ
ଦୁଇ ନୟନରେ ମୋର ମରଣ ଦେଖିବୁ । ୧୮ ।

ଧରାଧରି ହୋଇ ମାଏ ଝିଏ ବୋବାଇଲେ
ଧାଇଁ ମୂଦୁସୁନ୍ଦ୍ରୀମାନେ ଚହଲ ପାଇଲେ
ଧାଇଁଆସି ତତକ୍ଷଣେ ମିଳିଲେ ରାଜନ
ଧର୍ମ ପୂଣ୍ୟକାଳେ କପାଁ କରୁଛ ବେଦନ । ୧୯

ନାହିଁକି ସଂସାର ମଧ୍ୟେ ରାଜାର କୁମର
ନିର୍ଲଜ ବୂଢ଼ାକୁ ସୁନ୍ଦରୀକ କଲ ବର
ନୋହିଲେ ବୁଡ଼ିବୁ ମାଏ ଝିଏ ଦୁହେଁ ହୋଇ
ନୋହିଲେ ମରିବୁ ସ୍ୱହସ୍ତରେ ବିଷ ଖାଇ । ୨୦

ପଛେ ଯେନ ମାଣିକ୍ୟ ମୁକୁତାଗୁନ୍ଥା ନାହିଁ
ପୋଡ଼ୁ ପୋଡ଼ୁ ଜୀବନ ପବନ ରାଜା ହୋଇ
ପିଅର ଜନନୀ ତୁମ୍ଭ ଜୀବନ ଧିକ ତ
ପାକୁଆ ବୂଢ଼ାକୁ ନେଇ ଯେନ ଲୋଡ଼ ବର । ୨୧ ।

ଫରମାଣ ଦେଇଛନ୍ତି ହେମନ୍ତ ରାଜନ
ଫାଇ୍ କେତେ କହିବା ଗୋ ସେହୁ ବଡ଼ଜଣ
ଫଲେଣ ଜାଣିବା ଫଳେ ତାହାଙ୍କର ଗୁଣ
ଫରସେ ସେବଲେ ଗୌରୀ ପାଇବ କାରଣ । ୨୨ ।

ବାହ୍ନର ନକର ମାଏ ଝିଏ ଦୁହେଁ ତୁମ୍ଭେ
ବିକଳ ମନରୁ ଗୁଡ଼ କହୁଅଛୁଁ ଆମ୍ଭେ
ବ୍ରହ୍ମା ବିଷ୍ଣୁ ଦେବତାଏ ଛନ୍ତି ତାଙ୍କୁ ବେଢ଼ି
ବଡ଼ ଭାଗ୍ୟବନ୍ତ ଗୌରୀ ପୂଣ୍ୟ ଅଛି ବଢ଼ି । ୨୩ ।

ଭାଲପଟେ ଲେଖନ ଯା କରିଛି ବିଧାତା
ଭଲ ଭାଗ୍ୟବନ୍ତ ଗୌରୀ ଆମ୍ଭର ଦୁହିତା
ଭୋଜନର ବେଳେ ରାଣୀ ମିଳାଲିକ ଆସି
ଭିତରେ ମଣୋହି ସଞ୍ଜା ଭିଆଣ କରସି । ୨୪ ।

ମହାଦେଈ ମନବ୍ୟଥା ଛଡ଼ାଇ ରାଜନ
ମିଳିଲେ ଯେ ସର୍ବଜନ ବିଭାର ଆସ୍ଥାନ
ମଙ୍ଗଳଣ କଲେ ତହିଁ ହଳଦୀ ଚନ୍ଦନ
ମଙ୍ଗଳ ମହୁରୀ ଶଙ୍ଖ ବାଜେ ଘନ ଘନ । ୨୫ ।

ଯୁବତୀ ସକଳ ମିଳି ହୁଳହୁଳି ଦେଲେ
ଜଗମୋହନଙ୍କ ଦ୍ରବ୍ୟ ବେଶ କରାଇଲେ
ଜାଈଫୁଲ କନିଆର ଖୋସାରେ ଖୋସିଲେ
ଯତନେ କସ୍ତୁରୀ ଟୋପା କପାଳରେ ଦେଲେ । ୨୬ ।

ରତ୍ନ ଓଢ଼ଣି ଆଣି ଚୂଡ଼ା ମଥାରେ ସୀଉନ୍ତି
ରାମ ଅଭିଷେକ ଚୂଡ଼ା ନାସେ ଗଜମୋତି
ରୁଣୁଝୁଣୁ ବାଜୁଅଛି ପୟରେ ନୂପୁର
ରାଙ୍ଗ ବଦନ ଲୋଚନେ ରଞ୍ଜିଲେ କଜ୍ଜଳ । ୨୭ ।

ଲତାବଳି ପାଦେ ପିନ୍ଧି ନେତେ ଉପୁରାଣ
ଲାବଣ୍ୟ ଚନ୍ଦ୍ରବଦନୀ ଲକ୍ଷେ ଲକ୍ଷ୍ମୀଗୁଣ
ଲବଣ ଚଉଁରୀ ପୂଜା ଆଣି ବଢ଼ାଇଲେ
ଲଳିତେ ମଙ୍ଗଳ ଗୀତ କାମିନୀ ଗାଇଲେ । ୨୮ ।

ବ୍ରହ୍ମା ଆଗୃଯ୍ୟ ହୋଇଣ ବେଦୀରେ ବସିଲେ
ବରକୁ ଯେ ଜଣେ ଦଶ ତୋଳି ବସାଇଲେ
ବାସବର୍ଗ ବନ୍ଧୁ ବାକ୍ୟ ଅସରିଲା ସ୍ତୁତି
ବସିଲେକ ଝମ୍ପାମାଡ଼ି ବାଳୀ ହେନ ଗିତା । ୨୯ ।

ଶିରରେଣ ବାନ୍ଧିଲେ ମୁକୁଟ ପଞ୍ଚଶାଖା
ଶୋଇପଡ଼ି ବୁଢ଼ା ଖାଇ ଖାଇ ଗଲା ମୂର୍ଚ୍ଛା
ଶାଶୁ ଆଦି ସମସ୍ତେହେଁ ବୋବାଳି ଗୁଡ଼ିଲେ
ଶତେତ ଟାଇଲ ବୁଢ଼ା ତୋଳି ବସାଇଲେ । ୩୦ ।

ସନ୍ତୋଷେ ହସ୍ତ ଯୋଡ଼ିଣ କଲେଣି ସେ ନାରୀ
ସତ୍ୱରେଣ ଦେବତାଏ ଗଲେ ଯେଝା ପୁରୀ
ସନ୍ତୋଷେଣ ନାରୀ ମିଳି ଜୁଆ ଖେଳାଇଲେ
ସନ୍ଧ୍ୟରେଣ ବରକନ୍ୟା ବେଦୀରୁ ଉଠିଲେ । ୩୧ ।

ସମସ୍ତେ ବସିଣ ପଞ୍ଚଗ୍ରାସାଦି ସାରିଲେ
ସଖୀ ସଙ୍ଗାତୁଣୀମାନେ ମଦ୍ଧଶଯ୍ୟା କଲେ
ଷୁରଗଣେ ବରକନ୍ୟା କରୁଛନ୍ତି ଭାବ
ଶୋଭା ପାଉଛନ୍ତି ଦୁହେଁ ରତି କାମଦେବ । ୩୨ ।

ହେମନ୍ତର ରାଣୀ ଦେଖି ସନ୍ତୋଷ ହୋଇଲେ
ହୀନ ପରପଞ୍ଚବେଶ ସହୁଁ ପକାଇଲେ
ହୋଇଲେ ସନ୍ତୋଷ ଯେ ସକଳ ଲୋକ ଦେଖି
ହାସ୍ୟ କରୁଛନ୍ତି ସଖୀ ସଙ୍ଗାତୁଣୀ ଦେଖି । ୩୩ ।

କ୍ଷଣଦେ ଚଉଠି ଧାରି କାଦ ଖେଳାଇଲେ
କ୍ଷ ସାତ ଅଷ୍ଟ ମଙ୍ଗଳା ଉଛବ ସାରିଲେ
କ୍ଷିତିପତି ଠାକୁର ଯେ କପିଳାସେ ସ୍ଥିତି
କ୍ଷୁଦ୍ରବୁଦ୍ଧି ବସ୍ତୁଦାସ କଳସା ପଢ଼ନ୍ତି । ୩୪ ।



# ଗୁଣ୍ଡିଚ୍ଭାବନା ଚଉତିଶା

କହ କହ ଆହେ ସଙ୍ଗାତ ସତେହେଁ ନୟନରେ ଆମ୍ଭେ ଥିବା
କୋଟି ବ୍ରହ୍ମାଣ୍ଡ ନାଥର ଗୁଣ୍ଡିଚ୍ଚ ଯାତ୍ରା ଉତ୍ସବ ଦେଖିବା ରେ
କୃପା କରିବେ ସତେ
କାମପାଳ ସୁଭଦ୍ରା ସହିତେ ସେ, କରନ୍ତଇଁ ଭାଗ୍ୟ ଆମ୍ଭେ ଏତେ ସେ
କହ ହୋଅଇ କି ମନେ ପ୍ରତେ ସେ । ୧ ।

ଖେଳିଲା କେଶରୀ ପ୍ରାୟ ମାଳଗିର ଶିଖୁଁ ପଡୁଥିବେ ଖସି
ଖଟ୍ଟାଙ୍ଗଧର କରିବେ ସେହି କାଳେ ଦେଖିବା ସେ ସୁଖରାଶି ସେ
କ୍ଷଣେକ୍ଷଣେକ ଲୀଳା
ଖେଦସାଗର ତରିବା ଭେଳା ସେ, ଖର ପାତକ ତିମିର ହେଳା ସେ
ଖଣ୍ଡେ ଅଶେଷ ସନ୍ତାପ ଜାଳା ସେ । ୨ ।

ଗଙ୍ଗା ଯମୁନା ସରସ୍ୱତୀ ପରାଏ ତିନଗାତି ଏକା ଲାଗେ
ଗଜପତି ଘଣ୍ଟାଆର କରୁଥିବେ ଭଗୀରଥ ପ୍ରାୟେ ଆଗେ ସେ
ଗହ ଗହ ଗହଳ
ଗୀତ ବାଦ୍ୟନାଦଙ୍କ ପ୍ରବଳ ସେ, ଖଞ୍ଜୁଥିବେ ସମୁଦ୍ର ଚହଲ ସେ
ଗଲେ ସିନା ଦେଖିବା ସେ କାଳ ସେ । ୩ ।

ଘୋର ବରଷା ବର୍ତ୍ତି ନଦୀ ସମୁଦ୍ର ମିଶିଲା ପରାୟେ ହୋଇ
ଘନ ଘନ ହରି ଧ୍ୱନି କି ବିସ୍ତାରି ପଶୁଥିବେ ଲୋକେ ଯାଇଁ ସେ
ଘନଶ୍ୟାମ ସୁନ୍ଦର
ଘେନି ଚତୁର୍ବର୍ଗ ସଙ୍ଗତର ସେ, ଘନ ଘନ କରାଇବେ ଜୁହାର ସେ
ଘେନି ଘୋଟିଥିବେ ସୁରବର ସେ । ୪ ।

ଙ୍କାଚ ଉଚ୍ଚ ନାନା ସ୍ଥାନରେ ଯେମନ୍ତ ଚନ୍ଦ୍ର କିରଣ ସମାନ
ଙ୍କାଳାଦ୍ରି ଚନ୍ଦ୍ରମାଦାନ ସେହିମତି ସେହି ରୂପେ ଅବଧାନ ସେ
ନୋହିଲେ କି ଈଶ୍ୱର
ନବ ପଞ୍ଚଲୋକେ ଅଲଙ୍କାର ସେ, ନାନା ଜୀବ ଯହିଁ ଏକାକାର ସେ
ନାହିଁ ନାହିଁ ଯେ ଆଉ ଦୋସର ସେ । ୫ ।

ଚତୁର୍ଦ୍ଦଶ ଲୋକ ନଯ଼ନ ସମ୍ପତ୍ତି ମହା ସମ୍ଭାରେ ବିଜଯ଼େ
ଚୂହୁଁ ଚୂହୁଁ ପ୍ରତି ଅଙ୍ଗକୁ କରଇ କଦମ୍ବ କୁସୁମ ପ୍ରାଯ଼େ ସେ
ଚତ୍ତ-ଚକୋର ଚନ୍ଦ୍ର
ଚିନ୍ତା ପଦ୍ମବନ ଗଜଇନ୍ଦ୍ର ସେ, ଚରାଚର ପାଳିବାରେ ଇନ୍ଦ୍ର ସେ
ଚିନ୍ତାମଣି-ପର୍ବତ-ପାଗନ୍ଦ୍ର ସେ । ୬ ।

ଛୀର ସମୁଦ୍ର ଉଚ୍ଛୁଳିଲା ପ୍ରାଯ଼େ ସେ ଛନ୍ଦଗୃମର ବଶିବା
ଛୁରୀ ଖଣ୍ଡା ଧରି ଖଟଣି ସମନ୍ତେ ଅଭଯ଼େ ପାଟେ ମିଶିବା ସେ
ଛଦବର ଗହଣ
ଛୁଡ ଦେବାଶିରି ଆଉ ରଣ ସେ, ଛେଉ ଜଳନିଧି ଉଦ୍ଧାରଣି ସେ
ଛୁଡେ଼ ଭାବିଲେ ଭବକଷଣ ସେ । ୭ ।

ଯମୁନା ଜଳେ ଫୁଟିଲା ପଦ୍ମଫୁଲ ପ୍ରାଯ଼େ ସେ ବିମ୍ବାର ଆଖି
ଯେମନ୍ତ ସୁନ୍ଦର କଳାଶ୍ରୀମୁଖକୁ ନେତ୍ରହିଁ ତହିଁକ ସାକ୍ଷୀ ସେ
ଯଉଁଭାବେ ଡ଼ାକିବା
ଯଉଁ ରୂପେ ଦୁଃଖକୁ ଦଳିବା ସେ, ଯେତେ ପ୍ରକାରେ ସୁଖ ପାଳିବା ସେ
ଜାଣିନୋହଇ ତାହା କହିବା ସେ । ୮ ।

ଝଟକ ବିଜୁଳି ପ୍ରାଯ଼େ ଅଙ୍ଗ ଡ଼ାକିବାର ସୁନ୍ଦରୀଙ୍କ ନାଟ
ଝଲଝଲ ଫୁଲ ବୃଷ୍ଟି ନିରନ୍ତରେ ଅଗୁରୁଧୂପ ଚହଟ ସେ
ଝିଲ କଂସାଳିତାଳି
ଝମଝମ ଝଞ୍ଜାଳ ମର୍ଦ୍ଦଳ ସେ, ଝିଲ ବାଜିବା ନାଦ ଧ୍ଵନିଲ ସେ
ଝାର୍ମିଥିବ ଗଗନମଣ୍ଡଳ ସେ । ୯ ।

ନିବିଡ଼ ଅନ୍ଧାରେ ପଡ଼ିଲେ ଯେମନ୍ତ ଅନ୍ଧାରୁ ଆନ ନ ଦିଶେ
ନବଘନ ଶ୍ୟାମସୁନ୍ଦର ଶ୍ରୀମୁଖ ଦର୍ଶନହିଁ ସେହି ଆଶେ ସେ
ନାନା ଦେଶ ନୃପତି
ନାନା ସଜହିଁ ଯୁବା ଯୁବତି ସେ, ନିରନ୍ତରେ ପୂରୁଥିବେ ଭ୍ରାନ୍ତ ସେ
ନେତ୍ର ଦେଖଇ ସେହି ମୂରତି ସେ । ୧୦ ।

ଟଳିବ ସତେହେଁ ଦୁର୍ଦ୍ଦଶା ଆମ୍ଭର ଦେଖିବା ଯାଇ ସେ ଧ୍ଵଜ
ଟେକ ଖୋସିଥିବେ ଦୂର୍ବାଦଳ ଶିରେ ଦେବାଧିଙ୍କ ଦେବରାଜ ସେ
ଟେକ ନେତ୍ର ଗୃହାଣୀ
ଟେକ ଶ୍ରୀକର ବଇଠି ଠାଣି ଯେ, ଟକାଟକ ଓଲଣି ଉଠାଣି ସେ
ଟାକ ଦେଖନ୍ତୁ ସୁକୃତ ପ୍ରାଣୀ ସେ । ୧୧ ।

ଠାକୁରପଣ ମହିମା କି କହିବ ଚନ୍ଦନୁଁ ଶୀତଳ ହିଆ
ଠାଠିକକର ସବୁର ମନ ଜାଣି କେତେହେଁ କରନ୍ତି ଦୟା ସେ
ଠେଲାଠେଲରେ ପଶି
ଠାବେଠାବେ ପାରୁଶରେ ମିଶି ସେ, ଠିକେଜଣାଇ ଯେତେ ଭରସି ସେ
ଠିକେ ଶୁଣାନ୍ତି କର୍ଣ୍ଣ ନବେଶି ସେ । ୧୨ ।

ଡରନ୍ତି ଯାହାର ଭ୍ରୂମୁ ଜଣାଣକୁ ବ୍ରହ୍ମାଦି ଦେବଗଙ୍କରେ
ଡାକନ୍ତି ତାହାଙ୍କୁ ଏକମୁଖ ହୋଇ ଧାନପାପୀ ନିଶଙ୍କରେ ସେ
ଡାକ ଶୁଣନ୍ତି ରହି
ଡାକିବାକୁ ଭୟେ ତହିଁ ନାହିଁ ସେ, ଡୋଳେ ଦେଖିଲେତ ଅଛୁ ତାହିଁ ସେ
ଡାକିଲେହେଁ ରଥେ ଥାନ୍ତି ବହି ସେ । ୧୩ ।

ଢଳଢଳ ଚନ୍ଦ୍ରମଣ୍ଡଳ ଧବଳମେଘୁ ପ୍ରକାଶିଲା ପ୍ରାୟେ
ଢଳ ତୋରଣଦ୍ୱାରରେ ହଳୀ ଦଶନ୍ତି ଦଶେ ସବୁ ଝଳମୟେ ସେ
ଢଳ ବିଜେକରିବା
ଢାଳେ ସତେହେଁ ଦେଖିପାରିବା ସେ, ତମେ ଅମୃତ ପାନକରିବା ସେ
ଢଗପହରା ପରି ହରିବା ସେ । ୧୪ ।

ଉତ୍ତମ ରଥଗଜ ଅଶ୍ୱ, ଉତ୍ତମ ସ୍ତ୍ରୀ ଶିରନ୍ନ ଲକ୍ଷ୍ମୀ ପ୍ରଭୃ
ଆହା ସେ କ୍ଷୀରସମୁଦ୍ରରୁ ଜନ୍ମିଲା ପ୍ରାୟେ ପାଉଥିବେ ଶୋଭା ସେ
ଇନ୍ଦ୍ର ଆଦି ଅମରେ
ଆସି ରହି ଅଧଆକାଶରେ ସେ, ଅଶ୍ରୁପୂରିତ ଆନନ୍ଦଭରେ ସେ
ଅନାଇ ଯେ ଥିବେ ଅତି ଧୀରେ ସେ । ୧୫ ।

ତ୍ରିପୁରାସୁର ମାରଣେ ମହାଦେବ ରଥେ ବିଜେକଲା ପ୍ରାୟେ
ତାଳଧ୍ୱଜ ରଥ ମଣ୍ଡିବେ ସେ ତାଳଧ୍ୱଜ ବଳଦେବରାୟେ ସେ
ତେଜ ପୁଞ୍ଜମୁରତି
ତିନିଲୋକର ସୁଖସମ୍ପତ୍ତି ସେ, ତାଙ୍କ ବିନୁ ନାହିଁ ଆନ ଗତି ସେ
ତାଙ୍କୁ ଦେଖିଲେ ଲଭେ ମୁକତି ସେ । ୧୬ ।

ଥକିତ ବିଜୁଳୀ ସୂର୍ଯ୍ୟ ସଙ୍ଗେ ମିଳି ଉଦେହେଲା ପ୍ରାୟେ ହୋଇ
ଥିରେ ସୁଭଦ୍ରା ସୁଦର୍ଶନ ମଣ୍ଡିବେ ପଦ୍ମଧ୍ୱଜ ରଥେ ଯାଇଁ ସେ
ଥିରେ ରଥରେ ବସି
ଥୀରାନନ୍ଦମୀ ମଧୁରହାସୀ ସେ, ଥିବେ ସେବକ ପାଶରେ ମିଶି ସେ
ଥିବା ଆମ୍ଭେମାନେ ସ୍ତୁତି ଭାଷି ସେ । ୧୭ ।

ଦୁର୍ଲ୍ଲଭ ଦର୍ଶନ ସୁଲଭକର ସେ ପ୍ରଭୁ ପରମ ଈଶ୍ୱର
ଦେଖ୍ ଦେଖ୍ ସିଂହ ପରାୟେ ସତ୍ତ୍ୱରେ ପାଇପିବେ ସିଂହଦ୍ୱାର ସେ
ଦିବ୍ୟ ପଦ୍ମ ଚରଣ
ଦେଖି ପଦ୍ମଆସନୀ ଶରଣ ସେ, ଦାସ ଜନଙ୍କ ଦୁଖ ହରଣ
ଦେଖି ପୃଥ୍ୱୀ କରେ ଆବରଣ ସେ । ୧୮ ।

ଧନ୍ୟ ଧରଣୀ ଫଣୀମଣି ବାସୁକ କମଠ ମଣ୍ଡୂକଭାବ
ଧରାଧର ହୋଇ ବୈଷ୍ଣବବେଭାରେ ଧରନ୍ତି ଦେବଙ୍କ ଦେବ ସେ
ଧନ୍ୟ ଧନ୍ୟ ସେ ଧୂଳି
ଧୀରେ ତାଙ୍କ ଭାଗ୍ୟ ନୋହେ କଳି ସେ, ଧରି ପ୍ରଭୁଙ୍କ ବିଜୟେ ଭୁଲି ସେ
ଧାଇଁଥାନ୍ତି ଧ୍ରୁବ ଲୋକ ବଳି ସେ । ୧୯ ।

ନଷ୍ଟେ ପରଶମଣି ଗୁଣ ପ୍ରମାଣ ଲୁହାକୁ କରଇ ସୁନା
ନୀଳାଦ୍ରିମଣ୍ଡନ ଦର୍ଶନ ପରଶ ତହୁଁକି ଅଧିକ ସିନା ସେ
ନାନା ଜୀବଙ୍କ ହିତେ
ନିରାକାର ସାକାରର ମତେ ସେ, ନିତ୍ୟେ ବିହରେ ନୀଳପର୍ବତେ ସେ
ନାନା ଯାତ୍ରାହିଁ ସେହି ଭ୍ରମନ୍ତେ ସେ । ୨୦ ।

ପୃଥିବୀରେ ପୂର୍ଣ୍ଣଚନ୍ଦ୍ରମା ଖେଳିବା ପ୍ରାୟେ ବଚନ ଦଶିବା
ପୟୁପାରାବାର ପୟୁରେ ସମସ୍ତେ ପୁଣି ପୁଣି ପୂର୍ଣ୍ଣ କିବା ସେ
ପାରିଜାତକ ବୃକ୍ଷ
ପ୍ରାୟେ ହୋଇ ଯେ ଥିବେ ପ୍ରତ୍ୟକ୍ଷ ସେ, ପୂର୍ଣ୍ଣକରି ବାଞ୍ଛା ଲକ୍ଷ ଲକ୍ଷ ସେ
ପାପ କଷ୍ଟରୁ କରିବେ ମୋକ୍ଷ ସେ । ୨୧ ।

ଫଗୁଣମାନେ ଫଗୁଖେଡ଼ି ଉଛବେ କାମଦେବ ବଳେ ପ୍ରାୟେ
ଫୁଲ୍ଲାରବିନ୍ଦ ନେତ୍ର ଫୁଲି ଗୁଳନ୍ତେ ଫୁରୁଣାହିଁ ନେନେ ହୋୟେ ସେ
ଫୁଲଛତ୍ର ଗୃମର
ଫୁଲ ଆଲଟପଙ୍ଖା ଅପାର ସେ, ଫୁରୁଣାରେ ଧରିଥିବେ ନର ସେ
ଫୁଲ ବନୋଦିଆଙ୍କ ଗୁମୁର ସେ । ୨୨ ।

ବ୍ରହ୍ମାଦି ଶଙ୍କରଦେବଙ୍କୁ ଦୁର୍ଲ୍ଲଭ ଯେଉଁ କରୁଣା କଟାକ୍ଷ
ବୃଷ୍ଟି କଲ ପ୍ରାୟେ ସୃଷ୍ଟି ଯାକରେ ସେ ପଡ଼ିଥିବ ଲକ୍ଷ ଲକ୍ଷ ସେ
ବେତ୍ର ହସ୍ତସେବକେ
ବେତ୍ରଧାରୀ ହୋଇ ଏକେ ଏକେ ସେ, ବେଢ଼ିଥିବେ ଗୃହପାଖଯାକ ସେ
ବଳେ କରାଉଥିବେ ନାଟକଙ୍କ ସେ । ୨୩ ।

ଭକ୍ତ-ଜନ-ମନ-କୁମୁଦ-ଚନ୍ଦ୍ରମା ମଧୁରେ ହସି ଚାହିଁବା
ଭୁଜ-ଭରଦେଇ ଭକ୍ତଙ୍କ ଉପରେ ଭଙ୍ଗିମା ହୋଇ ରହିବା ସେ
ଭଙ୍ଗୀ ଦେଖିବାପାଇଁ
ଭକ୍ତେ ଜୀବନରେ ଜୀଇଥାଇଁ ସେ, ଭାଗ୍ୟ ସତତ କରିଛନ୍ତି ସେ
ଭବଭୟକୁ ଦେବାପକାଇ ସେ । ୨୪ ।

ମେରୁ ପର୍ବତକୁ ସ୍ପର୍ଶ୍ୟ ପରାକ୍ରମାକଲା ପ୍ରାୟେ ରଥ ବୁଲି
ମହିମା ସମୁଦ୍ରଗୃହକୁ ଉଠିବା ମତ୍ତଗଜପ୍ରାୟେ ଗେଲି ସେ
ମହାସୁଖ ଦେଖିବା
ମନୁ ସବୁ ଦୁଃଖ ଉପେକ୍ଷିବା ସେ, ମର୍ତ୍ତ୍ୟମଣ୍ଡଳେ ଯଶ ରଖିବା ସେ
ମୃତ୍ୟୁଭୟ ଦୁଃଖ ନ ଲେଖିବା ସେ । ୨୫ ।

ଯେତେବେଳେ ଚକା ଅପସର ହୋଇ ଲୋକଙ୍କୁ ଦିଅନ୍ତି ଦୃଷ୍ଟି
ଜଗତଯାକରେ ଏକା ଲାଗକରେ ହୋଅଇ ଅମୃତ ବୃଷ୍ଟି ସେ
ଜଗମୋହନ ମୂର୍ତ୍ତି
ଜାତକଙ୍କର ସୁଖ ସମ୍ପତ୍ତି ସେ, ଜଗତକୁ ଦେଇ ଏକା ଗତି ସେ
ଜ୍ୟୋତିମଣ୍ଡଳରେ କି ଦିଶନ୍ତି ସେ । ୨୬ ।

ରାଜୀବନୟନ ଶ୍ରୀମୁଖ ସିଂହାର ବଢ଼ାଇ ଅତି ସଧୀରେ
ରଙ୍ଗଅଧରେ ମନ୍ଦରେ ହସି ବଜସ୍ୟୁ କରିବା ସଜଳଗିରେ ସେ
ରଚିରୁଚିର ବେଶ
ରଙ୍ଗେ ହୋଇଥିବ ପୀତବାସ ସେ, ରହି ଅନାଇଥିବେ ତ୍ରିଦଶ ସେ
ରସିଥିବ ମଳୁର ମାନସ ସେ । ୨୭ ।

ଲକ୍ଷ୍ୟରହିତ ବେଶକୁ ତ ସହଜେ ଲକ୍ଷ ଅଂଶେ ଲକ୍ଷ୍ୟ ନାହିଁ
ଲଲାଟପଟ ସ୍ୱର୍ଣ୍ଣଶତା କର୍ପୂର ଭ୍ରୂଲତାକୁ ଲକ୍ଷ୍ୟ କାହିଁ ସେ
ଲକ୍ଷ୍ୟ ତାହାକୁ ମେହି
ଲୋକ କହିବାକୁ ଲୋକେ ନାହିଁ ସେ,
ଲୋଭେ ଲୋଡ଼ିଲେ ପାଇବା କାହିଁ ସେ
ଲୋଡ଼ଲୋଚନକୁ ଦେବା କହି ସେ । ୨୮ ।

ଶାରଦେଶରେ ଶାରଛଣ ଧରାଇ ଶାର ଆସନେ ବସିବା
ଶ୍ୟାମକେଶରୀ ବାହମିଲା ପ୍ରାୟେ ବାହୁ ବସ୍ତାର ଦଶିବା ସେ
ଶାରବରଙ୍କ ବର
ଶାରକେଦାରେ ମଣ୍ଡିତ ଶିର ସେ, ଶାରବାନା ବରାଜତକର ସେ
ଶାରବାହୁରେ ମଣ୍ଡିତ ପୁର ସେ । ୨୯ ।

ସ୍ବର୍ଗରୁ ଇନ୍ଦ୍ର ଅଇଲ ପ୍ରାୟେ ଆସି ନ ପଇନ୍ଦ୍ର ନେବା ସାର
ସାତୀ ପାଇ ଶୁଭେ ବିଜେ କରିଥିବେ ଗହଣକୁ ଅନୁସାର ସେ
ସଙ୍ଗେ ଥିବେ ସମସ୍ତେ
ଷୋଳସାମନ୍ତ ନିଯୋଗ ଯେତେ ସେ, ସମସ୍ତଗଜ ଅଶ୍ବ ସହିତେ ସେ
ସଂଖ୍ୟା କରିବା ପାଦାନ୍ତ କେତେ ସେ । ୩୦ ।

ସେତ ସୁନ୍ଦର ସକଳ ଗୁଣେ ସାର ଉଚ୍ଚୈଶ୍ରବା ସହୋଦର
ସଇବ ସୁଗ୍ରୀବ ମେଘପୁଷ୍ପ ବଳାହକ ନାମ ଯାହାଙ୍କର ସେ
ଚାରି ଅଶ୍ବକୁ ଯୋଚ
ସବ୍ୟଅସବ୍ୟ ବାଗକୁ ଆଞ୍ଚି ସେ, ଶଏ ପାଞ୍ଚଣ ଦଣ୍ଡକୁ ସଚ ସେ
ଶୀଘ୍ରେ ସାରଥି ରହିବା ଆଞ୍ଚି ସେ । ୩୧ ।

ଶ୍ରବଣ ମଙ୍ଗଳ ଜଗନ୍ନାଥ ହସି ବଳଦେବଙ୍କୁ ଅନାଇଁ
ଶୁଭେ ଆଗେ ବିଜେକର ବୋଲିବାରୁ ବିଜେ କରିବେ ଗୋସାଇଁ ସେ
ସଙ୍ଗେ ସୁଭଦ୍ରା ଯିବେ
ଶତଶତ ଘଣ୍ଟାଦି ବାଜିବେ ସେ, ଶୀଘ୍ରେ ଲୋକପାଖେ ଆଉଜିବେ ସେ
ସେହି ସଙ୍ଗରେ ପ୍ରଭୁ ସାଜିବେ ସେ । ୩୨ ।

ହାହାସ୍ତ୍ରୀ କରି ଅଶ୍ବକୁ ଅବୋରି ସେ ସାରଥି ଉଚ୍ଚେ ଡାକିବା
ହସ୍ତକୁ ବୁଲାଇ ବିକଟାଳ ହୋଇ ବନ୍ଦିଗୀତ ଉକୁଟିବା ସେ
ହରିଧ୍ବନି ଗୁଡ଼ିବା
ହାଥେ ହଥେ ଦଉଡ଼ିଭିଡ଼ିବା ସେ, ହରଷରେ କେ କର ଯୋଡ଼ିବା ସେ
ହସ ଶ୍ରୀମୁଖେ ନେନ ପଡ଼ିବା ସେ । ୩୩ ।

**କ୍ଷିତିପତି ଶିର** ଲଗାଇ **ପଛରେ** ସଧୀର କରି **ଠେଲିବା**
କ୍ଷୀର ସମୁଦ୍ରରେ ସୁବର୍ଣ୍ଣ ବୋଇତ ପ୍ରାୟେ ରଥଙ୍କ ଚଳିବା ସେ
କ୍ଷମାସାଗର ଲୀଳା
କ୍ଷୋଭସିନ୍ଧୁ ତରିବାକୁ ଭେଳା ସେ, କ୍ଷଣୁକରେ ମହାପାପ କଳା ସେ
କ୍ଷନ୍ଦେ ଦିନକୃଷ୍ଣିଆ ବାଉଳା ସେ । ୩୪ ।



# ସ୍ନାନସ୍ମରଣ ଚଉତିଶା

କହେ ଦୀନକୃଷ୍ଣ ଶୁଣରେ ସଙ୍ଗାତ ଧିକ ହେଉ ମୋ ଜୀବନ
କୋଟି ବ୍ରହ୍ମାଣ୍ଡନାଥ ସ୍ନାନ ଉତ୍ସବ କଲିନାହିଁ ଦରଶନ ରେ
କଉଁ ଅଭାଗ୍ୟ ମୋର
କଲା ସେ ସୁଖ ବାହ୍ୟ ଅନ୍ତର ରେ
କହିବାକୁ ତ ନୋହେ ଗୋଚର ରେ
କହ କହ ମତେ ଉତ୍ତର ରେ । ୧ ।

ଖଦିରଗୃମର ଆଲଟ ପଙ୍ଖା ଘେନ ଖଟଣି ସାମନ୍ତମାନେ
ଖଗପତିନାଥ ବିଜେ କରାଇବା ଦେଖିଲିନାହିଁ ନୟନେ ରେ
କ୍ଷଣ କ୍ଷଣକ ସୁଖ
ଖଣ୍ଡେ ଅଶେଷ ଜନମ ଦୁଃଖରେ
ଖେଦ ତମିର ଶୀତମୟୂଖ ରେ
ଖମଣ୍ଡଳେ ଦେଖିଥିବେ ଲୋକ ରେ । ୨ ।

ଗୀତ ବାଦ୍ୟ ନୃତ୍ୟ ଅତି ଅଦ୍ଭୁତ ଆନନ୍ଦେ ଚନ୍ଦ୍ର ଉଦୟା ରେ
ଗଲା ନ କହି ମତେ
ଖଞ୍ଜି ନୋହିବ ଅବା କେମନ୍ତେ ରେ
ଗୁଣୁ ଅଛୁ ଏହି କଥା ଚିତ୍ତେ ରେ
ଗଙ୍ଗା ତେଜିଲି ତୃଷା ଆରତେ ରେ । ୩ ।

ଘଟଣ ଆକାଶ ମଣ୍ଡଣି ମଣ୍ଡିତ ନୋହିଲାବାରେ ଲୋକନ
ଘୋଷିଲେ ନାହିଁ ଘନଶ୍ୟାମ ସୁନ୍ଦର ନାମ ଅମୃତ ବଚନ ସେ
ଘନ ଘଣ୍ଟ ଶବଦ
ଘେନ ମର୍ଦ୍ଦଳ ମଧୁର ନାଦ ସେ
ଘୋଟିଯାଉଥିବ ବିଷ୍ଣୁ ପଦ ସେ
ଘୃଣେ ଯାହା ଶୁଣି ଘନ ମୁଦ ସେ । ୪ ।

ନୟନାନନ୍ଦ ଶ୍ରୀ ନୀଳାମ୍ବର ଲୀଳା ବିଜେ ମତ୍ତ ସିଂହ ଠାଣି
ନ ପାରିଲି ଦେଖି ଆହା ସେ ଭଙ୍ଗିମା ନେତ୍ର ଭଙ୍ଗିମା ଗୃହିଁଣୀ ରେ
ନିଶାକର-ବଦନ

ନେତ୍ର-ଚକୋର-ସୁଖ-ସଦନ ସେ
ନାନା ଦୁଃଖ-ତମିର-ଛେଦନ ସେ
ନୃପ-ମନ-କୁମୁଦ-ମୋହନ ସେ । ୫ ।

ଚନ୍ଦ୍ର ଉଜ୍ଜ୍ୱଳ ପଟ୍ଟ ତରେ ବଶନ ରଜତ ଶୃଙ୍ଗ ପରାୟେ
ଚରାଚର ନାଥ ମନ୍ଦିରାରୁ ମଞ୍ଚା ମଣ୍ଡପକୁ ଅତିଶୟେ ସେ
ଚକ୍ଷୁ ଭିତରେ ଆସି
ଚାହୁଁ ଚାହୁଁ ଯାଉଅଛୁ ମିଶି ସେ
ଚିତ୍ତ ନେଉଛୁ ବଳେ ଆକର୍ଷି ସେ
ଚନ୍ଦ୍ରାଚନ୍ଦ୍ରକୁ ଦେଉଛୁ ନାଶି ସେ । ୬ ।

ଛୁଡ଼ ଚକାଅପସର ଚକାଆଖି ଚାର ଓହ୍ଲାଇବାବେଳେ
ଛନ୍ଦନ ହୋଇ ମୁଁ ଦେଖି ନପାରିଲି ଆହା ସେ ମହାଗହଳେ ସେ
ଛତ୍ର ଚାମର ବାସେ
ଛାଇ ହୋଇଥିବେ ଚଉପାଶେ ସେ
ଛାୟାନାଥ ଚନ୍ଦ୍ର ଯହିଁ ବସେ ସେ
ଛାୟାରେ ମନ ନୟନ ତୋଷେ ସେ । ୭ ।

ଜଗମୋହନରୁ ଶ୍ରୀ ଜଗମୋହନ ବାହାର ହେବା ସମୟେ
ଯାଉନାହିଁ ମୋର ମନରୁ ସେ ଶୋଭା ଯେମନ୍ତ ସେ ସୁଖମୟେ ସେ
ଯଉଁ ସିନ୍ଦୁରା ଯାଗ.
ଯୋଗୀ ଯୋଗ କରେ ଉଦବେଗ ସେ
ଯାହା ଦେଖି ବଢ଼େ ଅନୁରାଗ ସେ
ଯାଉ ଜୀବ ତା ସ୍ମରି ଆଗ ସେ । ୮ ।

ଝୁଲନ୍ତା ମତ୍ତଗଜ ପ୍ରାୟେ ଝୁଲି ସେ ବେନପାଶକୁ ଚାହିଁବା
ଝମକାଇ ସିଂହପଚାପ୍ରେ ଚମକ ଝଲକ ଯାଇଁ ରହିବା ସେ
ଝଲ ଚନ୍ଦ୍ରମା ମୁଖ
ଝଟ ଝଟ ଝଟକିବା ସୁଖ ସେ
ଝାଲ ବିନ୍ଦୁକୁ କର୍ପୂରରେଖ ସେ
ଝିମିଟକେ ହରେ କେତେ ଦୁଃଖ ସେ । ୯ ।

ନିଶିଦିବସ ସମାନ କରି ବିଜେ କରିବା ସ୍ନାନ ମଣ୍ଡପେ
ନୋହିଲି ନୟନ ସଙ୍ଗେ ସୁନ୍ଦର ସେ ଲଗି ଶୋଭା ନାନାରୂପେ ସେ
ନାନା ଜଳରେ ସ୍ନାନ

ନାଶ କରେ ନାନା ଦୁଃଖମାନ ସେ
ନାହିଁକଲ ଗର୍ଭଜଳ ସ୍ନାନ ସେ
ନରଶ୍ରେଷ୍ଠେ ଦେଲ ଚଉବର୍ଗ ଦାନ ସେ । ୧୦ ।

ଟେକ କଜ୍ୱଳ ପଟ୍ଟତରୁ ନର୍ଝର ଝରିଲ ପ୍ରାୟେକ ହୋଇ
ଟଳ ଆସନ୍ତେ ଶ୍ରୀମୁଖଗ୍ରୁ ଜଳଧାର ଟେକ ଅନାଇଲ ନାହିଁ ସେ
ଟେକ ଚନ୍ଦନ ପଙ୍କ
ଟେକେ ପୂରେ ଶ୍ରୀମୁଖ ଶଶାଙ୍କ ସେ
ଟେକେ ହରିଲ ଭବ ଆତଙ୍କ ସେ
ଟାଣ ପାପୀଙ୍କି କଲ ନଶଙ୍କ ସେ । ୧୧ ।

ଠାଠିକ କରି ଠାକୁର ସ୍ନାନଜଳ ଆନନ୍ଦେ ନ କଲ ସେବା
ଠେଲଠେଲ ପେଲପେଲ ଯହିଁପାଇଁ ସକଳ ମାନବ ଦେବା ସେ
ଠଣ ପଦ୍ମ-ନୟନ
ଠିକେ ଦେଖିଲ ନାହିଁ ନୟନ ସେ
ଠାବ କରନ୍ତା ଗଣ୍ଡ ନୟନ ସେ
ଠୂଳେ ଲଭନ୍ତା ଆନନ୍ଦ ଦାନ ସେ । ୧୨ ।

ଡୋଳେ ନ ଦେଖିଲ ପୀତବାସ ଲଗି ଡାଳମ୍ବ ନେତ୍ରା ପଉଞ୍ଛା
ଡେରି ହୋଇଛୁ ଏବେହେଁ ରୋମ ଅଙ୍ଗେ କରି ଦରଶନ ବାଞ୍ଛା ସେ
ଡକା କଣ୍ଟ ଦଇବ
ଡାକଦେଲ କେତେ ପରାଭବ ସେ
ଡାକ ମୃଗ କରି ମୋ ସ୍ୱଭାବ ସେ
ଡଆଇଁବାରେ ଦେଲ ସେ ଜ୍ୱର ସେ । ୧୩ ।

ଢାଳେ ନ ଦେଖିଲ ମଳାଦ୍ରି ସିଂହରି ନାନା ଫୁଲେ ହାଥୀ ସାଜ
ଢୋକଲ ଅମୃତ ହାଥୁନେଇ ମତେ ଏହା କଲ କୁଶଧ୍ୱଜ ସେ
ଢାଳେ ହୋଇଲ ନାଶ
ଢଗ ପସରିକୁ କରି ଆଶ ସେ
ଢମପଣେ ହୋଇଲ ଆବେଶ ସେ
ଢାଳେ ନ ଗୁହିଁଲ ଜଗଦୀଶ ସେ । ୧୪ ।

ଆହା ସେ ଫୁଲ ଚୂଳକରେ ପଲ୍ଲବ ଆହା ସେ ଅଳକାପନ୍ତି
ଆହା ସେ ଫୁଲମାନଙ୍କରେ ବସ୍ତ୍ରାର ହୃଦୟରେ ଯନ୍ତ୍ରାଯନ୍ତ୍ର ସେ
ଆହା ସେ ଶୋଭା ଦେଖି

ଅତ ପବଷ କରନ୍ତ ଆଖି ସେ । ଆନନ୍ଦରେ ହେଉଥାନ୍ତି ସୁଖୀ ସେ
ଆଉ କାହାଁକ ହୁଅନ୍ତ ଦୁଖୀ ସେ । ୧୫ ।

ତ୍ରୈଲୋକ୍ୟମୋହନ ନିତାପଦହନ ମଧୁର ମୂର୍ତ୍ତି କ ଗୃହାଁ
ତାହା କର ମହାପ୍ରଭୁ ମହାବାହୁ ବୋଲ ଡ଼ାକ ଦେଲ ନାହାଁ ସେ
ତେତେ ସମସ୍ତ ଗଲା
ତନ୍ମ ତାପ ମୋହର ନ ଗଲା ସେ
ତହାଁ ଯେତେ ମୋର ଆଶା ଥିଲା ସେ
ତେତେ ଦଇବ ନବୃଶ କଲା ସେ । ୧୬ ।

ଥାବରଜଙ୍ଗମ କୀଟପତଙ୍ଗରେ କାହାଁ ମୁଁ ନୋହିଲ ଲେଖା
ଥିରେ ନ ଦେଖିଲ ଚନ୍ଦ୍ରମାବଦନେ କର୍ପୂର ଚନ୍ଦନ ରେଖା ସେ
ଥିଲା କର୍ମରେ ଏହା
ଥାଉ ଘ୍ରାଣେ ନ ଦେଖିବ ତାହା ସେ
ଥାଉ ଅମୃତ ବକ୍ଷେ ସୋରେହା ସେ
ଥରେ ପ୍ରଭୁହାଁ ନ କଲେ ଆହା ସେ । ୧୭ ।

ଦୀନଜନବନ୍ଧୁ ଦୟେଣାଭୂଷଣ ଦୟାସିନ୍ଧୁ ଜଗନ୍ନାଥ
ଦାଣ୍ଡଯାକପୂର ଦେଖୁଥିବେ ଲୋକେ ଆହା ଶଙ୍ଖଚକ୍ର ହାଥ ସେ
ଦିବ୍ୟସୁବେଶ ଶୋଭା
ଦରଶନେ କେ ନୋହିବ ଲୋଭା ସେ
ଦେବତାଙ୍କୁ କରଥିବ ଲୋଭା ସେ
ଦଶଦ୍ଦଶେ ପୂରଥିବ ପ୍ରଭା ସେ । ୧୮ ।

ଧବଳ ଛତ୍ରଗ୍ରମର ଚନ୍ଦ୍ର ସୂର୍ଯ୍ୟ ତଗ୍ସ ମେଘ ଡମ୍ବର
ଧରଣୀଧର ପ୍ରଭୁଙ୍କ ପାଶରେ କ ଦିଶୁଥିବେ ଆଡ଼ମ୍ବର
ଧନ୍ୟ ସେବକଜନେ
ଧର ଚନ୍ଦନଜଳ ବସନେ ସେ
ଧରଧର ବୋଲ ତୋଷମନେ ସେ
ଧୀରେ ଦେଉଥିବେ ଯଜମାନେ ସେ । ୧୯ ।

ନୀଳାଦ୍ରି ସିଂହ ସ୍ତମ୍ଭରେ ନୃସିଂହ ପଚ୍ଚୋଆର ହୋଇ ରହି
ନଶାକରକୁ ଚକୋରପନ୍ତ ପ୍ରାୟେ ସମସ୍ତେ ହୋଇ ଥିବେ ଗୃହାଁ ସେ
ନାନାପ୍ରକାରେ ଗୀତ

ନାନା ବାଦ୍ୟ ନାନା ରୂପେ ନୃତ୍ୟ ସେ
ନିରନ୍ତରେ ହେବାରୁ ଏକତ୍ର ସେ
ନିରବଧି ଉଚ୍ଛୁଳଇ ମତ୍ତ ସେ । ୨୦ ।

ପୋଡ଼ୁ ପୋଡ଼ୁ ମୋର ପାପିଷ୍ଠ କରମ ଧିକ ଧିକ ମୋ ଜୀବନ
ପଦ୍ମଲୋଚନ ଧୂପଦୀପ ଆଳତି କଲିନାହିଁ ଦରଶନ ସେ
ପରମାନନ୍ଦ ସୁଖ
ପରଶରେ ହେଁ ପଳାନ୍ତା ଦୁଖ ସେ
ପଲକେ ହେଁ ନ ଛାଡ଼ନ୍ତ ପାଖ ସେ
ପୁଷ୍ପ ଯେସନ୍ତେ କରେ ଶିଳୀମୁଖ ସେ । ୨୧ ।

ଫୁଲମାଳ ଚୂଳ ଉଲଗି କରି ସେ ସେବକେ ଅଙ୍ଗ ମିଶିବା
ଭଲ ଲୋଭେ ମହା କଳପ ବୃକ୍ଷକୁ ବେଢ଼ିଲା ପ୍ରାୟେ ଦିଶିବା ସେ
ଫୁରୁଅଛୁ ଲୋଚନେ
ଫେଡ଼ି କହିବି କେତେ ବଚନେ ସେ
ଫଣୀଧର ଧରେ ଯାହା ମନେ ସେ
ଫନ୍ଦା ଏଣ୍ଟି ଭବମୋଚନେ ସେ । ୨୨ ।

ବାମଦେବ କଇଲାସ ପର୍ବତରୁ ଓହ୍ଲାଇଲା ପ୍ରାୟେ ହୋଇ
ବାହୁଡ଼ା ବିଜେ କରିବା ନ ଦେଖିଲି ରେବତୀଙ୍କ ପ୍ରାଣସାଇଁ ସେ
ବନ୍ଦାପନା ବଢ଼ାଇ
ବେନିପାଶକୁ ହସି ଅନାଇ ସେ
ବାଞ୍ଛାପୂର୍ତ୍ତି ଲୋକଙ୍କୁ କରାଇ
ବଡ଼ଦେଉଳେ ପଶିଲେ ଯାଇଁ ସେ । ୨୩ ।

ଭଦ୍ରଦାଇମା ସୁଭଦ୍ରାଙ୍କ ବିଜୟେ ଝଟକ ବିଜୁଳି ପ୍ରାୟେ
ଭଲି ଝଟକ ଅଦୃଶ୍ୟ ହୋଇଥିବେ ଗୁଣ୍ଡିଚା ଉତ୍ସବଯାଏ ସେ
ଭଲି ଭଲି ସେ ଛବି
ଭବଭୟ-ପର୍ବତକୁ ପବି ସେ
ଭକ୍ତଜନ-ମନ-ପଦ୍ମ-ରବି ସେ
ଭଗ୍ୟ ଥିଲେ ସେ ଛବି କି ଲଭି ସେ । ୨୪ ।

ମର୍କତ ପର୍ବତଶୃଙ୍ଗ ପ୍ରାୟେ ହୋଇ ମହାବାହୁ ଥିବେ ରହି
ମହାମେଘକୁ ଚାତକପକ୍ଷୀ ପ୍ରାୟେ ଭକ୍ତଜନେ ଥିବେ ଚାହିଁ ସେ
ମାଳଚୂଳ ଉହାର

ମନ ନେବେ ଆନନ୍ଦ ବସ୍ତାର ସେ
ମହାକଷ୍ଟୀ ଲୋକଙ୍କୁ ନସ୍ତାର ସେ
ମହା ମହୋତ୍ସବ ଥିବେ କରି ଯେ । ୨୫ ।

ଜଗତ ବ୍ରହ୍ମାଣ୍ଡଧରକୁ ଧରି ସେ ଚକା ଛଡ଼ାଇବାବେଳେ
ଜଗତଯାକ ଉଚ୍ଛୁଳି ପଡ଼ୁଥିବ ଜୟ ଶବଦ ଗହଳେ ସେ
ଯଉଁ ସୁଖ ସେ କାଳେ
ଯୋଗୀ ନ ଜାଣନ୍ତି ଯୋଗବଳେ ସେ
ଜୀବ ପରମକୁ ଧ୍ୟାନ ଖେଳେ ସେ
ଜାଣିଥିବ ଯେ ଦେଖିଛି ଡୋଳେ ସେ । ୨୬ ।

ରଜତ ଗିରିଶିଖରୁ ମତ୍ତଗଜ ପଡ଼ିଲା ପରାୟେ ହୋଇ
ରାଜ୍ୟବନଯୂନ ବଜାୟେ ଭୃତ୍ୟଙ୍କ ଶ୍ରୀକର ପଇଠ ଦେଇ ଯେ
ରହି ଦକ୍ଷିଣ ମୁଖେ
ରଖି ସେବକମାନଙ୍କୁ ପାଖେ ସେ
ରଙ୍ଗେ ବନ୍ଦାପନା ହେବା ସୁଖେ ସେ
ରହିଥିବେ ଲୋକେ ଯେଝା ସୁଖେ ସେ । ୨୭ ।

ଲାବଣ୍ୟ ବାରିଧିଲୀଳା ବଳେ ସୁଧା ଜଳଧିରେ ପଡ଼ି ଜନେ
ଲୋକାପ୍ଳୁତ ହୋଇ ସ୍ନାନ କରୁଥିବେ ପରମ ଆନନ୍ଦ ମନେ ସେ
ଲୀଳା ଏବେ ସୁମରି
ଲୋଭେ ହୃଦୟ ହେଉଛି ଭାରି ଯେ
ଲୋଚନରେ ନେଉଅଛି ପୂରି ସେ
ଲକ୍ଷେଗୁଣେ ରୋମ ହୁଏ ଡେରି ଯେ । ୨୮ ।

ବାହାକୁ ବାହା ହୁଆକୁ ହୁଆ ଭରି ପିଠିକି ପିଠିକେ ଦେଇ
ଝାଟଝଗଡ କରିବାରୁ ହୁଙ୍କାର ଧ୍ୱନମାନ ଥିବ ହୋଇ ଯେ
ବଷ୍ଣୁପାଦ ଶବଦ
ବ୍ରହ୍ମାଣ୍ଡରେ ବାଜି ପ୍ରତି ନାଦ ସେ
ବଷ୍ଣୁପଦ କରିଥିବ ଭେଦ ସେ
ବନାଶିବ ସଂସାର ପ୍ରମାଦ ସେ । ୨୯ ।

ଶ୍ରୀଅଙ୍ଗ ସୁବାସ ପୂରି ଦଶଦଶ ମଧୁରି ମନ ତୋଷିବା
ସୁଧାବନ୍ଦୁ ପ୍ରାୟେ ସ୍ୱର୍ଗରୁ ସତତେ ଫୁଲମାନ ବରଷିବା ସେ
ଶୋଭା କହିବ କେତେ

ସିନ୍ଧୁଲହରୀ କଳଙ୍କ ଚତୁର ସେ
ସବୁପ୍ରକାରେହେଁ ନୋହେଁ ପ୍ରତେ ସେ
ସୁରମାର୍ଗ ବୋଲି ଏତେ ତେତେ ସେ । ୩୦ ।

ସିଂହପର୍ଯ୍ୟତ କନ୍ଦରୁ ପ୍ରବେଶ ପର୍ଯ୍ୟନ୍ତ ଅନ୍ତ ଶଯ୍ୟରେ
ଶ୍ରୀ ଜଗମୋହନ ବିଜେ କରିଥିବେ ଶ୍ରୀ ଜଗମୋହନ ଘରେ ସେ
ସୁଧାକର ଯେମନ୍ତ
ଶ୍ୱେତ ମେଘ ହୋଏ ଅବଧୂତ ସେ
ସେହିରୂପେ ସେ କମଳାକାନ୍ତ ସେ
ଶୀଘ୍ରେ ହୋଇଲେ ଅନ୍ତରହିତ ସେ । ୩୧ ।

ସକଳ ବ୍ରହ୍ମାଣ୍ଡନାଥ ସବୁସୁଖ ଶ୍ରୀ ଗୋପୀନାଥଙ୍କୁ ଦେଇ
ଶୁଭେ ବିଜେକଲେ ଅଣ ଅପସରେ ଗୁମୁରେ ତାଟି ବନ୍ଧାଇ ସେ
ସ୍ନାନ ଯାହାହିଁ ଗଲା
ଶ୍ରୀଗୁଣ୍ଡିଚ୍ଛ ନିକଟ ହୋଇଲା ସେ
ସବୁଅଡ଼େ ଉଗ୍ରହା ହୋଇଲା
ସଜହେବାକୁ ମନ ଧାଇଁଲା ସେ । ୩୨ ।

ହୃଦୟୁ ଏତେବେଳେ ଯାହା ହେଉଛି କାହାକୁ କହିବ ତାହା
ହରି ବାହାରେ ଏ ଦୁଃଖ ଜାଣିବାକୁ ଆଉ କେହିନାହିଁ ସାହା ସେ
ହାନିଲାଭ କରତା
ହେଲେ ପରମପଦ ବିଧାତା ସେ
ହର ବ୍ରହ୍ମାଦି ଦେବ ଦେବତା ସେ
ହେବେ ସତେ ପ୍ରଭୁ ପ୍ରସନ୍ନତା ସେ । ୩୩ ।

କ୍ଷମାସାଗର ନାଗରବର ଆହେ ପ୍ରଭୁ କୃପା-ରତ୍ନାକର
କ୍ଷଣେ ନନ୍ଦିଘୋଷ ରଥେ ବିଜୟେ ଦରଶନ ଦଉକର ସେ
କ୍ଷେତ୍ରବରକୁ ନେଇ
କ୍ଷାର କ୍ଷୋଭ ମନରୁ ଛଡ଼ାଇ ସେ
କ୍ଷେମେ ନେତ୍ର ଉତ୍ସବ କରାଇ ସେ
କ୍ଷାମୁ କ୍ଷଣେ ଛଡ଼ାଇବ ନାହିଁ ସେ । ୩୪ ।



# କୋଳାହଳ ଚଉତିଶା

( ରାଗ—କୋଳାହଳ )

କୁସୁମ ସାୟକ ସାୟକେ ବିବେକ ହତରେ କାତର କାତରାକ୍ଷୀ
କୁସୁମ ଶର ପିଅର ବିନୁ ତାର କଳେବରେ ବିରହ ଶିଖୀ
କରେ ମହାଜ୍ୱାଳା
କାନ୍ତେ ଆକୁଳ ହୁଅଇ ବାଳା
·········ଲୋଚନ କୃଷ୍ଣ ରଖ ରଖ ବୋଲି ଖୋସେ ଚଡ଼ାଳା ।୧।

କ୍ଷିତିଧର ଗୁଣ୍ଡା ସୁଧାକର ମନ ଗଗନେ ଉଦେ କରନ୍ତେ ବାଳା
··· ···  ··· ··· ··· ··· ···
ଖଣ୍ଡି ସବୁ ଦୁଃଖ
·········ରେ କ୍ଷିତି ବିମୁଖ ।
ଖଟ୍ୱାଙ୍ଗଧର ପରଶର ପ୍ରହାରେ ନ ଲଭିଲି ଅବା କେଉଁ ଦୁଃଖ ।୨।

ଗାଢ଼ ବେଦନା ଲଭିଲା ଗୁରୁସ୍ତନା ଗୋବିନ୍ଦ ···  ··· ।
··· ।
ଗତକ୍ଲାନ୍ତ ଭାବ
ଗୁପତେ ନିରତେ ଭାଳି ଭାଳି
ଗଳାପଡ଼ିଲି କରଭ ନେକଣି ତାର ଗୁରୁ ହାଟକ କଣ୍ଠକାବଳି । ୩ ।

ଘଟଣି ଲପନା ସ୍ତନମଣ୍ଡଳରେ ସଘନଘାର ଚନ୍ଦନ ଲେପ
ଘଷନ୍ତେ ଘୂର୍ମିତଲୋଚନା ଘୂମାଇ ମନେ ମଣାଇ ଅନଳତାପ
ଘୋର କାମଜ୍ୱର
ଘଟିକି ଘଡ଼ି ଦୁଃସହତର
ଘୋଟନ୍ତେ ଘନଜଘନା ସ୍ଥିର ନୋହି ଆକୁଳେ ହୋଇ ଥରଥର ।୪।

ଙରଦ କେଶୀ ଅସିତ ଚତୁର୍ଦ୍ଦଶୀ ନିଶି ଶଶୀ ପାପ୍ରେ କଳ ଅଙ୍ଗ
ଙରତେ ଅନଙ୍ଗସାୟକ ତରଙ୍ଗ ଘାତରେ ଲେଢ଼େ ଶ୍ରୀରଙ୍ଗ ସଙ୍ଗ
ଙଧ୍ୱନ ବିନୁ
ନୋହେ ମନ ସ୍ଥିର ଆନଠାରେ
ଙଶିଦବସ ଅନିଶ·········ନିଶି ଚିନ୍ତି କଳତନୁ ଶୟନରେ । ୫ ।

ଗୃରୁ ଗୃମିକର ବସନାର ଏହୁ ଦୁଃସହ କଷ୍ଟ ଦେଖିତା ସଖୀ
ଚଉରେ ବଗୃର କରେ କୃଷ୍ଣବନୁ ଏହାକୁ କେହୁ ପାରବ ରଖି
ଚଭୁଷ ସେ ବାଳୀ
ଗୃଣ୍ଡେ ଚନ୍ଦ୍ରଧର ପାଶେ ମିଳ
ଚଢୋଇ ସଖୀ ବେଦନା ନବେଦନା କରଇ ଶୁଣ ହେ ବନମାଳୀ ।୭।

ଛୁଡ଼ ସବୁ ଆଶ ତୁମ୍ଭ ପ୍ରୀତି ରସରସେ ଯେ ରସିଲ ମୋର ସଖି
ଛୁର ପାମର ମାର ହାତରେ ଏବେ ଅନବରତ ହେଉଛି ଦହି
ଛଇଳ ନାଗଶ କର
ଛଟକ ନୟନା କଳେବର
ଛୁଟୁକୁଅଛି ଛୁଶମାରଲ ପ୍ରାୟେ ପାଶଲେ ଏ କଷ୍ଟ ପାରୁକର ।୭।

ଯୋଷିତ ଜନ ଦୋଷ ଚଉ୍ତ ନଧର କହୁଅଛି ପଦ୍ମପାଦ ଧର
ଯେତେ ପ୍ରକାରେ ଜ······ମୃଠାରେ ନାହ୍ନି କରୁ ଅପରାଧ କର
ଆରେ ଯୁବାସିଂହ
ଯୁବତ ରତନ ଦୋଷ ଏହ୍ନ
ଯୋଗୀ ପର ହୋଇ ଯାମିନୀ ଦବସେ ତୁମ୍ଭ ଦରଶନ ଜଗିଥାଇ ।୮।

ଝସନୟନା ଯେତେବେଳେ ବେଦନା ଲଭୁଛି କହିବା କେତେ ଅବ
ଝସକେତନ ସପନ୍ନ ଶିରଛନ୍ନ ପରାଏ ଭଜଛି ଅଙ୍ଗ ଶୋଭା
ଝଳ ଗୋଶ
ଝୁରୁଅଛି ତୁମ୍ଭ ନାମ ଧର
ଝଗଡ଼ା ନକର କ ଯେ କର ଗ୍ରମାବର କହୁ କହୁ ଯିବ ମର ।୯।

ନଷ୍ଟେ ଯେବେ ଏବେ ନ ଯିବ ତା ଜୀବ ଯିବ ଜବଇଡ଼ା ସଦନକୁ
ନଶାଚରଶକ ଅଗ୍ନିଦୋଷେ ମଇଲେ ଏବେ ଦୋଷ ଦେ·········
················

······ନାଗଶ ରତନ ତୁମ୍ଭ ଦରଶନ ପାଇ ଜୀବନକୁ ଛୁଡ଼ ।୧୦।
ଟଙ୍କଧର ଶରପର ବୈଶ୍ୱାନର ଏବେ କୃଷ୍ଣ ଅଙ୍ଗେ ଗିଳୁଥିଲ
ଟେକବଦନା ବେଦନା ନବେଦନା····················

············ଶରବର ।
ଟାଙ୍କୋରଲ ରେମମାଳ ସେ ବ୍ୟାକୁଳ
ହୋଇ ହୃଦରେ ପଡ଼ଲେ କର ।୧୧।

ଠିକେ ଏ ଖତ ଦେଖି ଦୂତୀ ଶ୍ରୀପତିଙ୍କର କରେ ଧରି ବୋଲେ ବାଣୀ
ଠାକୁର ହୋଇ ଏ ଦଶା ଭଜୁଅଛ ଅବଳା ସିନା ରମଣୀମଣି
ଠିକେ ଚଳ
ଠାଠିକି ବଦନା ପାଶେ ମିଳ
ଠକ ଅବିବେକ କୁସୁମ ସାୟକ ପ୍ରାୟେ ସିନା ଏଥି ପ୍ରତିଫଳ ।୧୨।

ଡୋଳା ବୁଜି କୃଷ୍ଣ ଝମକିଲେ ଦୁଃଖେ ଦୂତିକାଠାରୁ ଏ ବାଣୀ ଶୁଣି
ଡମ୍ବରୁଧର ପରଶର ପ୍ରହାର ଏହି ସମୟରେ କଲ ଜାଣି
ଡୋଳା ବୁଜି ହରି
ଡାଳମ୍ବ ଦଶନା ନାମ ଧରି
ଡାକଲେ ବହି ଅବଳା କି ଦଣ୍ଡରେ ବହିଲୁ କି ଦୋଷ ଥିଲ କରି ।୧୩

................ପଡ଼ିଥିବ ବନା ଝିବ ସିବା...............
÷ ............ନଷ୍ଟେ ଗ୍ରୁମ୍ଭାସାଇଁ ସିବାଯାଏ ନ କଥିବ ଝିଇ
ଢାଳି ନେବ ଅନ୍ତେ
ଢଗ ପଠମି ଗୃହିଁବ ସତେ
ଢୋକଇନା ଘୁଣି ଗରଳ............ମୋହିମା ସ୍ମର ମତେ ।୧୪।

ଅଣିମା ବିଦାତା...................ଅସ୍ତ୍ରକୁ ଭଜଲେ ଦିବାକର
ଅଞ୍ଜନ ନବଘନ ବରନ ଏହି ସମୟେ ଧରି ଦୂତିକା କର
ଅଣୁ ମଧେ ସୂରେ
ଅପ୍ରମାଦେ ହେଲେ ତା..........
ଅସିତ ତନୁ............ସୂତନୁ ଅନୁରାଗ ଭରୁଥିଲ ରୋଷ ।୧୫।

ତାପିହୋଇ କସିଲ ତାପିଞ୍ଛଦଳ ଶ୍ୟାମଳ କରନ୍ତି ଧୀରେ ବୋଧ
ତାଳସ୍ତନା ଦୋଷରେ ବିମନା ହୋଇ ମୋଠାରେ କମ୍ପାଇ... ।
ନିର୍ଲୋଚନ ଅରି
ପ୍ରସୁ କରେ କରେ ଗୃପ ଧରି
ତପମାସ୍ନ ଗୋଷ୍ଠ ଅନ୍ତକ ବିଗ୍ନର ରଖିବକି
ତୋତେ ମୋତେ ମାରି ।୧୬।

ଥୟେବ କଲ ଥାଣୁ ମନକୁ ଯେହୁ ଭ ସୁରଶି ହୋଇଗଲଠାରେ
ଥିର ହୋଇ ଭଲ ଭଲ ରହିଅଛ ଅଖିଷ୍ଣ ମାଗି ତା ସନ୍ମୁଖରେ
ଥିରିମଣ୍ଡମର
ଥରୁଅଛି ମୋର କଳେବର
ଥାଉ ଥାଉ ପ୍ରାଣ ପରଣ ଈଶ୍ୱରୀ ପାରିଲେ ତୁ ପରିତ୍ରାଣ କରି ।୧୭।

ଦାସବତ୍ସଳବାନାକୁ ମର୍ଦ୍ଦ କର ଦର୍ପକଶରେ······ମାଦର୍ପ······
·········ବହି ବହିଛୁ ତୋର କ ଦୋଷରେ କୋମଳାଙ୍ଗୀ
ଆରେ ଦୟାଶୀଳା
ଦ୍ରବୁନାହିଁ ଯାହା ତୋର ମନ
ଦଶୁନାହିଁ ମୋତେ·····························। ୧୮ ।

·············ଶୀ ବନ୍ଧୁର·················ଅଛୁ ଦଶଦଶ
ଧବଳକରବଦନୀ ରହ୍ୟା ନିଧ୍ୱଂସ କରୁଅଛୁ ତୋର ଆଶ
ଧରିମଣ୍ଡମାର
ଧରିଅ ପଛେ ଏ ଶ୍ୱେତଛବ
ଧୀର ବୁଦ୍ଧିରେ ··· ··· ··· ··· ··· ନାହିଁ ଲେଶ । ୧୯ ।

ନ ଜାଣି ବନାଦୋଷେ ଦୋଷୀ ହୋଇଲ ଯେବେ ଜବାଧରି ଗୁରୁକେଶୀ
ନକର ନିଷ୍ଠୁର କର କ୍ଷମା କ୍ଷମା ମଣ୍ଡଳ ମଣ୍ଡନୀ ପିକଭାଷୀ
ନାରି ରତନର
ନାହିଁ ତୋର ମୋର ପର ଭିନ୍ନ
ନବେଶୁଅଛୁ ତୋ ପଦେଶୀ ······ ବେଧନା ବାରେ ଘେନ ।୨୦।

ପରମାନନ୍ଦ ବାଣୀ ଶୁଣି ରମଣୀ ପରମ ଆନନ୍ଦଜାତ ହେଲା
ପଙ୍କଜନୟନୀ ଚକ୍ରପାଣି ପାଣି ସଙ୍ଗରେ ଆଣି ତା ହୃଦେ ଦେଲା
ପ୍ରିୟସଖୀ ପଦ୍ମ
ପଥିକ ନୟନ ପଥେ କରି
ପୂରିଇଲା ଜଳ ନୟନଯୁଗଳ ଆଶ୍ୱାସନା କରେ ଧୀରେ ହରି ।୨୧।

ଫୁଟୁଛି ଅନୁରାଗ ଭରେ ହୃଦୟ ପୁଣି କୃଷ୍ଣ ମୁଖେ ଧୀରେ କହିଁ ।
ଫୁଲାଇ ନାସା ବୋଇଲା ଶ୍ୟାମ·········ମୁଁ ତ ଏ ଦୋଷ କରିନାହିଁ
ଫୁଲଶର·····
··· ··· ··· ··· ଦେହ
ଫଳ କରନକ ଏହି କଥା ରଖିଅଛୁ ମୋର ଆଗେ କହ । ୨୨ ।

ବରଞ୍ଚ ବଧୂ ବଧୂଶେଖର ସାକ୍ଷୀ ଭୁମ୍ଭବନ୍ଧୁ ମୋର······ନ
ବେଭାରେ ନଶାନା ଅବଲା ମୋ ମନ ଜାଣି·············
ବଧୂ ବଦନର
ବଚନ ଶୁଣି ନାଗରବର
ବଳନ ବେଣ ଭୁଜରେ ଭିଡ଼ିତାକୁ କହିଲେ ଆଶ୍ୱାସ ଗିର । ୨୩ ।

ଭବମୋହିନୀ ଭମିନୀ..........ବର୍ଣ୍ଣ ଗୁରକଥା........କର
ଭାସିଲ ଦୂର ଶରଣର ସାଗରେ ରକ୍ଷାକର ଦାସ ସିନା ତୋର
ଭଗବାନ ବୋଲ
ଖିରୁମଣି ଶୁଣି ହୃଷ୍ଟ ହେଲ
ଭଡ଼ାଭଡ଼ି ଗଡ଼ାଗଡ଼ି ଭରେ କୃଷ୍ଣ ଅଙ୍ଗେ ତାର ତନୁ ଜଡ଼ାଇଲ ।୨୪।

ମୁକୁନ୍ଦ କୁନ୍ଦ ଦଶନୀ ଚିବୁକରେ ବାମ ଅଙ୍ଗୁଷ୍ଠ କରଜଦେଇ
ମସ୍ତକ ଦେଇ ଊର୍ଦ୍ଧ୍ୱକୁ ମୁଖକର ସ୍ୱରତରେ ଚୁମ୍ବନ ଦେଲେ ଦେଇ
ମନ୍ଦକର ଧୀରେ
ମର୍ଦ୍ଦନ୍ତେ ଦନ୍ତ ଚୂଚୁକତାର
ମନେ କ ବଗୁର କ କ ପରି କର ଶମ୍ପାବର୍ଣ୍ଣୀ କମ୍ପାଇଲ ଶିର ।୨୫।

ଜରଜର ରସଭରେ ରମାବର ଭଡ଼ି ଜଡ଼ିଗଲ କୃଷ୍ଣ ଅଙ୍ଗେ
ଯେମନ୍ତ ଦିଶେ ଯାମିନୀ କର କର ଯେମନ୍ତେ ଯମୁନା ତୁଙ୍ଗଭଙ୍ଗେ
ଜାତ............

..........................
ଜଡ଼ହେଲେ ବେନିଜନ ଜାଣୁ ଜାଣୁ
ନ ଫେଡ଼ି ଫିଟିଲ୍ନୀ ବ ଗଣ୍ଠି ।୨୬।

ରତି ସମର ଉତ୍ସବ... ... ... ... ... ... ... ... ... ..
... ... ... ... ... ... ... ... ... ... ଦେଲେ
ରସବନ୍ତ ଶଶୀ
ରସିକା ତୁଳରେ ରସି
ରେମ ଟାଙ୍କୁରାଇ କଟି ଚମକାଇ ଇଷି ଇଷି ଭାଷିଗଲ । ୨୭ ।

.... ... ... ... ... ... ... ... ...ରେ
ଲୋଟଣି ବେନ କପୋତ ମହାମତ୍ତଭରେ ଲୋଟି ଧ୍ୱନି କରେ
ଲୋଳ କମ୍ପା ଭୃଙ୍ଗ
ଲାବଣ୍ୟହେମ ପଙ୍କଜେ ବସି
ଲୀଳାକରେ କଳାବସନ୍ତ କୋକିଳ କଳସେ ହେମ ପଙ୍କଜେ ବସି ।୨୮।

ବଢ଼ନ୍ତେ ବିବିଧ ନିଧୁବନ ବନମାଳୀ କ୍ରୀଡ଼ା ରସେ ହେଲ
ବଲ୍ଲଭର ଶ୍ରାନ୍ତ ଜାଣି ବେଣୁ ବୀଣା ବାଣୀ ବିପରୀତ ଆରମ୍ଭିଲ
ବିଧୁ ପରେ ଧାଇଁ
ବିଧୁମୁଖୀ ବଡ଼ ଶୋଭା ଦିଶେ
ବିକର୍ତ୍ତନ ତନୟା ତରଙ୍ଗରେ କ ତପନୀୟ ରାଜହଂସୀ ଭାସେ ।୨୯।

ସାର ରତିରସ ହୋଇଣ ହରଷ ସୁନ୍ଦର କ ଶ୍ୟାମ କଲେ ବେଶ
ସୁବାସ ସୁଚୀନ ବସନପିନ୍ଧାଇ ସଜାଡ଼ି ବାନ୍ଧିଲେ କେଶ ବେଶ
ସୁମନେସ ସ୍ତାନ
ସର ସର କର ତହିଁ ଖଞ୍ଜି
... ... ... ଲ୍ଗାଲେ ... ... ଦେଲ ନୟନେ ... ... ।୩୦।

... ... ନମଣ୍ଡି ଖଣ୍ଡି ଖଣ୍ଡି କରି ଲେଖି ଗଣ୍ଡେ ମକଶ୍ରୀଶ
ସୁନାସାପୁଟେ ନାକଚଣା ଖଞ୍ଜିଣ ଚିବୁକେ ରଚିଲେ ଭ୍ରମରିକା
ସୁନ୍ଦରୀ କ ହରି
... ... ... ... ... ...
ସରସ ସଦ ... ... ... ... ... ... ...ଇଲେ । ୩୧ ।

ଶତପତ୍ର ମୁଖ ବୋଲନ୍ତି ଶୁଣରେ ଶିରମଣ୍ଡନା ଜୀବନଧନ
ସୁମନସ ଶର ସାରିବାକୁ ବନ୍ଧ କରିଥିବୁ ମୋତେ ଅବଧାନ
ଶିବ ମୋହନାରେ
ସହଜେ ମୁଁ ତୋର କଣା ଦାସ
ଶରଣ ତୋ ବେନଚରଣେ ପଶିଛି ମକୁପ୍ରକାରେ କରିଛି ଆଶ ।୩୨।

ହସ ହସ ହୋଇ ବୋଲେ ହରିଣାକ୍ଷୀ ହେ ହେମ ନଭବସନ ହରି
ହର ପରଶର ଦୂର କରିଅଛି ହୃଦ ମଧ୍ୟରେ ତୁମ୍ଭଙ୍କୁ ଧରି
ହୃଦମଣ୍ଡନ ହେ
ହେଜଥିବ ଯିବାଯାଏ ଜୀବ
ହାର ସଙ୍ଗେ ମୁକୁତା ଗୋଟିଏ ହୋଇ
ଲମ୍ବିଛି ଏ ଅବଧାନେ ଥିବ ।୩୩।

କ୍ଷଣେହେଁ ଅନ୍ତର ନୋହି ଏହି ହୋଇ ନନ୍ଦ୍ୟସ୍ଥଳେ ବନମାଳୀ
କ୍ଷୀଣାଙ୍ଗ ରାଧାଙ୍କ ସଙ୍ଗରେ ରଙ୍ଗରେ କରିଅଛନ୍ତି ଅନଙ୍ଗ କେଳି
କ୍ଷମେ ତାଙ୍କ ପାଦୁ
କ୍ଷଣେହେଁ ମନ ଅନ୍ତର ନୋହୁ
କ୍ଷମା ଗୀର୍ବାଣ ନାରାୟଣଙ୍କୁ ଏହି ଭକ୍ତି
ଜନ୍ମେ ଜନ୍ମେ ସୁଖ ଦେଉ ।୩୪।



# ସାରଙ୍ଗ ସୁଦନ ଚଉତିଶା

କାଦମ୍ବିନୀ ଯାନ ଯାନ    ତା ଯାନ ଶିର ମଣ୍ଡନ
କଳାଷ୍ଟ ଦଶ ମୁଖ ଅରୁଣ କଲ୍
କେଶରୀ ଧ୍ୱଜର ବଚ୍ଛ    ବାହାନ ଭକ୍ଷ୍ୟର ଭକ୍ଷ୍ୟ
ତା ସୁତ ଭଣ୍ଡାରେ କଞ୍ଜ ପାଣି ମୁଦ୍ଦଲ
କଣ୍ଠୀରପୁ ଭକ୍ଷ ନୟୂନୀ
କନକ ଅଇର ତେଜ କାନ୍ତେ ମାନନୀ । ୧ ।

ଖଗରାଜ ଧ୍ୱଜ ବାମା    ଯାନ ନୟୂନୀ ଉପମା
ଖେଦ ଚତ୍ତ ଅଶ୍ରୁ ପ୍ରାତ ପୟୋଦପର
କ୍ଷୀର ସିନ୍ଧୁ ସୁଧା ପତି    ପାଦର ଉଦକ ଗତି
ଖରରପୁ ପତି ଧରଣୀରେ ବେହାର
ଖରଶ୍ୱାସ ପୟୋଜ ମୁଖୀ
କ୍ଷିତି ମୁଖ ବଳପଇ କାନ୍ତେ ନିରେଖି । ୨ ।

ଗଙ୍ଗାଧର ରପୁ ଶାଖା    ଅର୍ଦ୍ଧ ଭାଳପଟେ ଲେଖା
ଗଜରପୁ ଭକ୍ଷ ମଦ ସଙ୍ଗତେ ଶଶୀ
ଗରୁଡ଼ ଅଗ୍ରଜ ହେର    ଗ୍ରାସୁଛି ଗାଟେ ତମିର
ଗ୍ରାସୁ ଖସି ଗଗନେ କି ଉଦିତ ଶଶୀ
ଗଣ୍ଡଦେଶେ ତାମ୍ବୁଳ ଚିହ୍ନ
ଗରିଷ୍ଠ ଜଳ ବଦନେ ଅରୁଣ ଘନ । ୩ ।

---

ଘଟଣି ବିମ୍ବ ଅଧର    ଧରିଛି ଘନ ଆକାର
ଘନ ଘନ ଚୁମ୍ବନ ତା ନୟନ ଦ୍ୱେଶେ
ଘୋଟିଲ୍କି ସିଂହିକା ସୁତ
ଘନ ଯାନ ଯାନ ଧର ଅଗ୍ରଜ ପାନ୍ଥ । ୪ ।

............ମରମ ଦେଶେ
ନାଗକର ଭଗ୍ନୀ ତନୁ     ପରାଗେ ଧୂସର ଭାନୁ
ନିତମ୍ବିନୀ ଆଲିଙ୍ଗନ ହରିଦ୍ରା ଦିଶେ
ନିରେଖିଣ କାନ୍ତର ଚିହ୍ନ
ନିର୍ଧୂମ ଅନଳ ଦହେ ନଳିନ ବନ । ୫ ।

ଚନ୍ଦ୍ରଧର ଶାଖା ବନ୍ଧି     ତା ନାସ୍ତ ନ ଦେଇ କଣ୍ଠ
ଅଭିମୁଖ ପୟୋଧର ପରେ ଥୋଇଲ
ଚିତ୍ରସେନ ତାତ ଯାନ     ତାରିପୁ ଧ୍ୱଜ ମରଣ
ପର ଶିରପରେ ନାଗଧର ଉଲିଁଲ
ଗୁରୁବାଣୀ ପୂତନା ରିପୁ
ଗୁରି ଜାଗ ଯୁଗ ଯାନେ ନବେଶି ବପୁ । ୬ ।

ଛତାନନ ମାତା ଯାନ     ତା ରିପୁ ବଜେ ଗଗନ
ଷୋଭିଚତ୍ର କସଲଗି କହରେ ସଖୀ !
ଷିତି ଧର ଧର ଧର     ବଦନ ନନ୍ଦିତ ତୋର
ଷଁ ତ ବନ୍ଦୁରଙ୍କ ପ୍ରାପ୍ତ ବରସ ଦେଖି
ଛଡ଼ି ଅଷ୍ଟ ଭୁବନେ ବାମା
ଛଇଳ ସଭାବେ ତୋତେ କାହିଁ ଉପମା । ୭ ।

ଯିବ ମଧୁକର ଜ୍ୟୋତି     ତୋ କେଶ ରୁଚିର ଭ୍ରାନ୍ତି
ଯୂଥି କୁସୁମ ମଥାରେ ଦିଶଇ ଶୋଭା
ଜନ୍ତୁପତି ତାତ ପ୍ରୀତି     ତାରିପୁ ଭୂଷଣ ଯନ୍ତ୍ର
ଯାମିନୀ କାଳରେ ଯେହ୍ନେ ସୁନ୍ଦର ଆଭା
ଜଡ଼ୀଭୂତା ଲମ୍ବଇ ବେଣୀ
ଜଳଯାତ ଭକ୍ଷ୍ୟ ଶଇଳ ଗାମୀ । ୮ ।

ଝାଡ଼ ପତି ପତି ପତି     ହାର ରିପୁ ଭ୍ରାଥ ଜ୍ୟୋତି
ଝଟକେ ସିନ୍ଦୂର ବିନ୍ଦୁ ଅଳକ ଦେଶେ
ଝସ କେତନର ଶାଖା     ଅର୍ଦ୍ଧ ଭାଲପଟେ ଲେଖା
ଝସ ଗୃହ ପତିସୁତ ଅରୁଣ ପାଶେ
ଝାମ୍ପ ଅଛି ନୀଳ ମୂଦର
ଝରପ୍ରାପ୍ୟେ ବେଢିଅଛି ଚୂର୍ଣ୍ଣ ଚିକୁର । ୯ ।

# ଚଉତିଶା ସଞ୍ଚୟନ

ମାର କଧିସୁତ ଯାନ  ରିପୁକର ତିରାସନ
ଝଦା କରୁଅଛୁ ତୋର ଭ୍ରୁରୁ ଯୁଗଳ
ନିର୍ମାଣ ଅଞ୍ଜନ ଗୁଣ  ସନ୍ଧିଛୁ କଟାକ୍ଷ ବାଣ
ନାଶ କରିବାକୁ ନବ କିଶୋର କୁଳ
ନୟନ ନିରେଖି କମଳ
ନଦମ୍ବୋଦର ମାତ ଯାନ ତା ଭକ୍ଷ୍ୟ ଭୋଳ । ୧୦ ।

ଟଙ୍କଧର ନାଶି ଧର  ରିପୁ ଫଳ ନାଶେ ତୋର
ଟେକ ମାରୁ କୁନ୍ତ ଶର ମରମେ ମାରେ
ଟଙ୍କଧର ଯାନ ଭକ୍ଷ  ଟେକୁଛୁ ଦଶନେ ଦେଖ
ଟେକ ମୁଖ ଶଶୀ ହସି କହ ମୋହର
ଟୋପି ଟୋପି ସ୍ୱେଦ ବଦନେ
ଟଳୁ ମନସିଜ ବାଧା ଅଧର ପାନେ । ୧୧ ।

ଠଣ ରୁଚିର ଅମ୍ବୁଜ  ଲଗି ଶଶଧର ତେଜ
ଠିକ ଜ୍ୟୋତି ତେଜ ଦୁଃଖୀ ନୟନ କାନ୍ତ
ଠଣ ସୁନ୍ଦର ଦଶନ  ଡାଳିମ୍ବ ବୀଜ ଯେସନ
ଠୁଳ ସିନ୍ଦୂରେ ମଣ୍ଡିତ ମୁକୁତା ପନ୍ତ
ଠିକେ ହସ ଦଶନ ଦିଶୁ
ଠିକେ ମାର ତମିରକ ଚନ୍ଦ୍ର ପ୍ରକାଶୁ । ୧୨ ।

ଡମ୍ବରୁଧର କୁମର  ଯାନ ଭକ୍ଷ୍ୟ ଭକ୍ଷତାର
ଦହିଲା ତା ସୁତ ଯେହ୍ନେ ହେମ ନଗର
ଡଙ୍କଧର ରିପୁ ଶର  ଡହୁଛି ହୃଦରେ ମୋର
ଡୋଳେ ନିରେଖିଣ ପ୍ରିୟେ ବିରସ ତୋର
ଡଙ୍କ ଜାଣି ଶରୀର ବାଧା
ଡଙ୍କକୁ ଗାରେଡ଼ ତୋର ଅଧର ସୁଧା । ୧୩ ।

ଢଳ ଢଳ ଗଣ୍ଡ ଯୁଗ  ରୁଚିର ଶଶୀ ସଂଯୋଗ
ଢମପଣେ କରିବାକୁ ଲୋହିତ ବର୍ଣ୍ଣ
ଢଳଇ ମଣିତାଟଙ୍କ  ଢଳଢଳ ଜ୍ୟୋତି ଛାକ
ଢଳଇ ଅଙ୍ଗଲି ବଧୂ ଚେନ ପାଶେଣ
ଢାଙ୍କି ଅଛୁ ବସନ ତୋର
ଢାଙ୍କିଲି ରିବକ ଯେହ୍ନେ ମୁଦ୍ଗର । ୧୪ ।

ଅନଙ୍ଗ ରିପୁ କାମିନୀ    ତା ଯାନ ଅରି ଘେନି
ଅମ୍ବୁଜ ସୁତଙ୍କୁ ଏବେ ନଦିଅ ଦୁଃଖ
ଅନନ୍ତ ଶାଖାର ସୁଖ    ତା ସୁତ ଦେଇଣ ମିତ
ଅପରାଧ ଥିଲେ ପ୍ରିୟେ କ୍ଷମିର ଦେଖ
ଅନ୍ତରୋଷେ ନୁହଇ ଯଶ
ଅଖିଳ ଯୁବତୀ ତୋତେ କରିବେ ହାସ । ୧୫ ।

ତ୍ରୈଲୋକ୍ୟ ନାଥ ଜାଣନ୍ତି    ତୋଠାରେ ଯେସନ ମତି
ତୁ ଯେବେ ସୁନ୍ଦରୀ ମତେ କଲୁ ନିରାଶ
ତମିର ଜନ ..........    ..........
.......... ଯାଇ ଦେବଇ ଖ୍ୟାସ
ତୋତେ କସ ବୋଲିବେ ଆଉ
ତରୁଣୀ ରତନ ବୋଲି ତୋ ଯଶ ଥାଉ । ୧୬ ।

ଥାଣୁର ହାର ଆହାର    ତା ସୁତ ଭଣ୍ଡାର ଘର
ଥୋଇ ତୋ ରୁଚିର .......... ରହିଛି ଭଲ
..........    .......... ଅନ ଘେନି ତାର
ଥାଣୁର ଅରି କଏ ଶଶୀ ପୂଜଲ
ଥମ୍ଭ ମୋହ ଉଚ୍ଚାଟ ବାଣ
ଥୋଇଛି ନୟନେ ତୋର ମୂର୍ତ୍ତ ମୟାଣ । ୧୭ ।

ଦ୍ୱାଦଶ ଲୋଚନ ଯାନ    ଭକ୍ଷ ଭକ୍ଷ ଶାଖାଯାନ
ଦହଇ ମୋ ଶରୀରେ ତାର ପଞ୍ଚମ ବାଣ
ଦ୍ୱିଜମଣି ପ୍ରିୟେ ନଥି    ଦହ କନକ କବାଟ
ଦ୍ରବ୍ୟ ଭୁଜ ପରିରମ୍ଭେ ରଖ ପରାଣ
ଦହୁଅଛି ମାର ଗରଳ,
ଦେଇଣ ଅଧର ସୁଧା କର ଶୀତଳ । ୧୮ ।

ଧରଣୀ ଧାରଣ ଧର    ନାସା ଧର ଧର ଫଳ
ଧନ୍ୟ ତୋ ରୁଚିର ହେ ଯୂଇ କୁସୁମ
ଧରଣୀଧର କୁମର    ଆମଣ୍ଟିଛି ପଞ୍ଚଶର
ଧ୍ୱଂସ ନକରିବ ନବ ତରୁଣୀ ଜନ
ଧଇର୍ଯ୍ୟକୁ ଛେଦନ ମାର
ଧରିଅଛି ଚନ୍ଦ୍ର ଭଲ ପଞ୍ଚମଶର । ୧୯ ।

ମାର ଧର ଧର ଧର        ତାଧର ଡ଼ିଣ୍ଡିମ କର
ନନ୍ଦା କରୁଅଛି ସବୁ ମତ୍ସ୍ୟ ଶୋଭନ
ନୟନ ସହସ୍ର ଯାନ        ତା ଶପୂ ଶପୂ ମଣ୍ଡନ
ଲାଜେ ଲାଜେ ପଳାଇଲା ଘୋର ବିପିନ
ନବଙ୍କେ ତୋ ଆଢ଼େଣି ଦେଖି
ନବୀନ କିଶୋର କୁଳ ମଦନେ ଦୁଖୀ । ୨୦ ।

ପର ଲୋକ ପଡ଼ି ପିତା        ତା ପ୍ରୀତିରୂପୁ ଧରନ୍ତା
ପାଣିର ଡ଼ିଣ୍ଡିମ ତେଜି ରହିଲା ହର
ପାଣି ଦେହ ହତ ଯାତ        ରୂପର ଭୁ ମୁଖ ମାତ
ଯାନଭକ୍ଷୀ ମଧେ ପ୍ରତାବଳୀ ତା ଉର
ସୂକ୍ଷ୍ମନୀଳ ଉତ୍ପଳ ଦେଇ
ପୁଷ୍ପ ଧନୁଧାଙ୍କ ହେମ ଶମ୍ଭୁ ପୂଜଇ । ୨୧ ।

ଫୁଲ ଧନୁଧର ବାଣ୍ଟି        ତା ନାଶି ଧାଶି ତା ଧାଶି
ଫଳତା ସୁସଞ୍ଜ ଦାମ ପଟ୍ଟୋଜ ପଣ
ଫଣୀର ଅଇରି କାନ୍ତ        ତାଙ୍କର ପାଦ ସଂଘାତ
ଫାଇ ହେମ ଗିରିଶିଖେ କରେ ବେହାର
ଫୁଟାଣି ଦୁକୂଳ ବିକାଶେ
ଫାଟଇ କଠିନ ହିଆ ମଦନ ତ୍ରାସେ । ୨୨ ।

ବିଶ୍ୱକର୍ମା ଭାବେବେନ        ବିରଞ୍ଚି ଦେବଙ୍କୁ ଘେନ
ବିଶ୍ୱରେ ତୋ ରୂପ କେତେ ଯତ୍ନେ ଗଢ଼ିଲା
ବ୍ରହ୍ମାଣ୍ଡ ବେନି ଧପଟେ        ପଟାନ୍ତର ନାହିଁ ତୋତେ
ବଦନ ଦେଖି ମଦନ ମୋହିତ ଗଲା
ବିଧୁକୋଷ ନିନ୍ଦଇ ମୁଖ
ବିରହ ଜନଙ୍କ ଶୋକ ସାଗର ଦୁଃଖ । ୨୩ ।

ଭାବଇ ତୋତେ ମିତଣୀ        ଭୂଷଣ ଧିଆନ ଜାଣି
ଭୂତନ୍ତ ନନ୍ଦନୀ ତୋରେ ଏଡ଼େକ ମାନୀ
ଭୂଷ ଯାନ ଯାନ ଯାନ        ଭକ୍ଷ୍ୟ ଦେଉଛି ଦଶନ
ଭୂଗତ ଘେନ ସଦୟ କର ସଜନୀ
ଭଟେଲ ତୋର ନିଷ୍ଠୁର ଦେଖି
ଭୂତ ପଞ୍ଚମକୁ ଆସ ନାହିଁ ମୋ ସଖୀ । ୨୪ ।

ମରାଳ ଗତି ଆନନ ମୟୂର ଗତି ବଦନ
ମେଘନାଦ ତାତ ମୁଖ ମିଶାଇ ଗଣ
ମରବଇଁ ପର ଭକ୍ଷି ଏ ତୋର ବହୁନେ ସଖୀ
ମିଛ ଯେବେ କହୁଅଛୁ ମାମୁଁଙ୍କ ରଣ
ମାର ଦୁଃଖେ ମରଣ ଲଭ
ମଙ୍ଗଳ ଜନନୀ ମଧେ କେ ଦେବ ଠାବ । ୨୫ ।

ଜଗତ ପିତାର ତାତ ତା ପ୍ରୀତି ତାହାର ସୁତ
ଜାଣିନ ତାହାର ଭ୍ରାଥ ପଞ୍ଚମ ବାଣ
ଜଳେ କ ତୃଣ ବପିନ ଜାଣି ସମାକୁଳ ମନ
ଜନ୍ତୁଗଳେ ପଡ଼ ତମ୍ବା ହୋଏ ଏସନ
ଜୀବକୁ ହ୍ୱ ଜପନ ଦହ୍ୱ
ଦୂର ରୋଗ ବନାଶନେ ଔଷଧ ଏହ୍ୱ । ୨୬ ।

ଲୁଳତ ପୟୋଗ ପର- ଆନନୀ କ କେ ଆଭ୍ରର
ଲଲଣି ପିଅର ସୁତ ନାଥ ନ ପାଇ
ଲଲନା ରଥରେ ମୁହିଁ
... ... ... ... ପାଇବ ସହ୍ୱ
ଲଜେ କଳାକାର ଲୁଚଲା
ନଗନ ଆନନ୍ଦ ଭାବ ସହୁଁ ଦେଖିଲା । ୨୭ ।

ବନତା ସୁତ ପିଅର ଗୁଣ ଧର ଧର ଧର
ଭକ୍ଷ ବେଗେ କହୁଛୁ... ... ... ।
... ... ... ... ... ... ...ମୀକୃତ
ବାଗସର ଗୁଣିତ:ର ନ ଯାଉ ମନ
ବମ୍ବାଧରୀ ବନୟ ଘେନ
ବଳମ୍ବ ନକର ମୁଖେ ଦଅ ଚୁମ୍ବନ । ୨୮ ।

ଶ୍ରୀପତିର ପତ ବାଣୀ ଶୁଣ ଶୀଘ୍ରେ ଉଠି ରଖ ପ୍ରାଣ
ଶରଦ ନୟନୀ ରସାଦର ମୋହ୍ୱଲେ
ଶରଣ ପଞ୍ଜର ହର ପାଦରୁ ଯେ ଅବତର
ସତ୍ୟ କରୁଅଛୁ ତହିଁ ଖ୍ୱାସିବ ଭଲେ
ଶଶୀଶପୂ ପ୍ରଭୁଙ୍କ ରାଣ
ଶିବକର କୁଚ ତୋ ଛୁଇଁବ ପ୍ରମାଣ । ୨୯ ।

ସାଗର ବନ୍ଦନ ସୁତ     ପାଉଛୁ ଦୁଃଖ ବହୁତ
ଶୋକ ତୋର ଦେଖି ପଞ୍ଚ ଆନନ ବାଧା
ଶବଶଶେ ଭିନ୍ନ ପ୍ରୀତି     ତା ରିପୁ ପ୍ରିୟା ସନ୍ତତି
ସମ ହୋଇ ପାଣି ଯେନ ତାହାଙ୍କୁ ମୋଦ୍ଧ
ଶୋଭାଗଣ୍ଡ ମୁଖ ସ୍ମିତ
ସିଂହ ସୁତ ପ୍ରାୟେ ତନୁ ହୁଏ ଉଦ୍ଧତ । ୩୦ ।

ସମୀର ଚନ୍ଦ୍ର ବଦନ     ବାସ ଅଶନ ବସନ
ଆଶୀବିଷ ବିଷ ପ୍ରାୟେ ତୋର ଅଭାବେ
ସାଙ୍ଗେ ମାର ହୃଦେ ମୋର     ଦହଇ ବିକୋତ ତାର
ଶଶୀର ଯାଇଛୁ ମୋର ତୃଷ୍ଣା ଅନ୍ତରେ
ସୁଖ ଯେନ ମୋ ଦୁଃଖ ନାଶ
ସୂର୍ଯ୍ୟ ପ୍ରିୟା ପ୍ରାୟେ ତୋର ହୋଇବି ଦାସ । ୩୧ ।

ହରିଧ୍ୱଜ କାନ୍ତ ଭ୍ରାଥ     ହ୍ଲନୟ ଭାବ ଉଷତ
ହରଷ ହୋଇ ଗଜ ଗମନୀ ଉଠି
ହରି ସମ୍ଭାଷଣା କରି     ସୁଖ ବେନି ମନ ହରି
ହରଷ ହୋଇଲେ ହରି ଗୃହୁଁ ବିମ୍ବୋଷ୍ଠୀ
ହରିରିପୁ ନାଶିର କଳା
ହରଷ ନୟନେ ପଶି ହୋଇଲେ ଭୋଳା । ୩୨ ।

କ୍ଷତ୍ରିବର ନରହରି     ଶଙ୍ଖ ଚକ୍ର କରେ ଧରି
କ୍ଷତ୍ରିବର ଭକ୍ତଜନ ମାନଙ୍କୁ ସ୍ନେହା
କ୍ଷମା ନିଧି ଉଗ୍ରଧନ     ଅବନ୍ଧୁ ଲୋକ ଜୀବନ
କ୍ଷତ୍ର କୁଳ ଜୀବନ ଆରତ ଭଞ୍ଜନ
କ୍ଷୀରୋଦ ନନ୍ଦନୀ କାନ୍ତର
ଗୁରୁ ସିନ୍ଧୁଦାସ ହରି ପାଦେ କିଙ୍କର । ୩୩ ।



# ଯମକସାଗର ଚଉତିଶା

## ( ରାଗ—କୌଶିକ )

କୃଶାଙ୍ଗୀ କମଳଜ ମୋହିନୀ କମଳଜ ନେତ୍ର ବିହୀନେ କୁଞ୍ଜବନେ
କହନ୍ତି ସୁଧାକର ହାସିନୀ ସୁଧାକର ମୁଖୀ ନୀରଦ ଦରଶନେ
ରେ ଜଳଧର, କହିଲେ ଯୋଡ଼ି ବେନିକର
କମ୍ପା ଦେଖନ୍ତୁ ଆମ ଗିର
କନ୍ଦର୍ପର ତନୁହତକର... ... ... କାଳିକା ନାମରୁ ତୋହର ।୧।

କ୍ଷୀଣାଙ୍ଗୀ ଗଣପତି ବିହୀନେ ଗଣପତି ତାତପର ଶରରେ ଭିନ୍ନ
ଖେଦେଣ ପୟୋଧରେ କହନ୍ତି ପୟୋଧରେ ନୟନୁ ଅଶ୍ରୁଜଳ ଧରିଲେ
ରେ ଜଳଧର, ଖଣ୍ଡନ୍ତୁ ଯାହା ଆମ ତ୍ରାଣ
କ୍ଷୀରଦ ସାବଧାନେ ଶୁଣ
ଖେଦ କହୁଛୁ ଝିରୁ ଧାରାଧର ନାମରୁ ପରାଣ ନେବାର ତୋ ଗୁଣ ।୨।

ଗୋକୁଳ ହିମକର ବିହୀନ ହିମକର ଚନ୍ଦନ ଅନଳ ସମାନ
ଗରଳ ବିଧୂଭାନୁ ନ ଦେଖି ବିଧୂଭାନୁ ବନ୍ଧୁ ବନ୍ଧୁର ସୁବଦନ
ରେ ଜଳଧର, ଗୋବିନ୍ଦ ସଙ୍ଗତେ ଆମର
ଗରବ ଗଲା ଦେଶାନ୍ତର
ଗାଢ଼େ ମନ ମଥନ କରିବାର ବିଧାନ ଶମ୍ବରଦନାମରୁ ତୋର ।୩।

ଘନଜଘନା ଘନ କୁନ୍ତଳା ଘନାଘନ ନାଦଶ୍ରବଣେ ଡେରି କାନ
ଘଟଣ ଘନରସ ସୁମରି ଘନରସ ଧରକୁ ବୋଲନ୍ତି ବଚନ
ରେ ଜଳଧର, ଘେନାଇ କହିଲେ ଆମ୍ଭର
ଘେନନ୍ତୁ ନାହିଁ ବାରିଧର
ଘେନ କହୁଛୁ ଝିରୁ ତୋ କାଳ ସ୍ୱରୂପରୁ ସ୍ୱଗତ ପରାଣନେବାର ।୪।

ନାହିଁ ଦୋଷ ନକର କମ୍ପାଇ ସନକରଷରୁ ତେଜିଲେ ନାରାୟଣ
ନ ପାଇ ମଧୂପର ଅଧର ମଧୂପର ରସ ନେଉଛୁ ଆମ୍ଭ ପ୍ରାଣ
ରେ ଜଳଧର, ନନ୍ଦୋକ୍ଷେ ଜଗତ ଶାସକ
ନାଶିଲେ ଅବଳା ବିବେକ
ନାରୀମାନଙ୍କୁ ଝିରୁଝଟର ସକାଶରୁ ଯାତନା ନୁହଇ ଅଧିକ । ୫ ।

ଗୃଣ୍ଣେ ଅତନୁ ତନୁ କରୁଛୁ ତନୁ ତନୁ ପ୍ରଚଣ୍ଡରେ ଦନୁ ଦନୁ
ଚନ୍ଦନ ଚଣ୍ଡକର ସଦନ ଚଣ୍ଡଙ୍କର ଚନ୍ଦ୍ର ବଦନ କୃଷ୍ଣବନୁ
ରେ ଜଳଧର, ଚନ୍ତାମଣିଙ୍କ ଆଶ୍ରେ କର
... ... ... ... ...
ଗୃଣ୍ଣେ ଜୀବନେବାର ସେକାଳେ ରସଧର
ଠାରେ ତ ଆନ ନ ବଗୃର ।୭।

ଛେମେ ସୁଦରଶନଧରଙ୍କ ଦରଶନ ବିନା ଘେନ ଘୋର ବିପଦ
ଷିତରେ ପୁନର୍ଭବ ଲେଖନ୍ତେ ପ୍ରଭୁ ଭବ ମୋହିନୀ ବୋଲନ୍ତ ଜଳଦ
ରେ ଜଳଧର, ଗ୍ରୁଡ଼ ଆମ୍ଭ ଅପ୍ରାଧବାରେ
ଷୀରଦ ବିଗୃର ମନରେ
ଗ୍ରୁଡ଼ନ୍ତୁ ଘନରସ ଧରଜା ଘୋରଘୋଷ ଏକ ଉଚିତ ପଦ୍ମାରେ ।୭।

ଯୁଗତ ଜୀବନଦ ଏ ତୋର ଜୀବନଦ କୃଷ୍ଣ ହୁଅନ୍ତେ ପାଶୁ ଦୂର
ଜଗତେ ଅପଘନ କରଷି ଅପଘନ ଦହୁଛୁ ଏବାର ଆମ୍ଭର
ରେ ଜଳଧର, ଯଶୋଦାନନ୍ଦନ ବିହୀନେ
ଜୀବନ ଯାଉଛୁ ମଦନେ
ଜାଣନ୍ତ ନାହିଁ ପରଜନ ବେଦନାଭର ଯେଣୁ ଚଞ୍ଚଳାବନ୍ତ ଜନେ ।୮।

ଝମଣ୍ଟେ କେଶୀ ତାର ବିନାଶୁ କେଶୀ ତାର ଭୂତବଚମୀ ଶୋକପରକହ୍ନ
ଝର୍ଣ୍ଣଝସ କମଳନୟନୀ ସକମଳ ଘନକୁ ଏମନ୍ତ ବୋଲଇ
ରେ ଜଳଧର, ଝଟତିହୋଇ ଅବିବେକ
ଝାଡ଼ନ୍ତୁ ଅବଳା ବିବେକ
ଝରକହୁଛୁ ଝରୁ ଆପଦ ସକାଶରୁ ଯାତନା ନୁହଇ ଅଧିକ । ୯ ।

ନ ରେଖି ଘନଘନ ଜଘନୀ ଘନଂଘନ ନିଃଶ୍ୱାସ ପକାଇ ଊର୍ଦ୍ଧ୍ୱକୁ
ନିରେଖି ଚନ୍ଦ୍ରଭାସ ଅତନ୍ଦ୍ର ଚନ୍ଦ୍ରଭାସ ପ୍ରାପ୍ତେ ମଣିଲେ ବିଦ୍ୟୁତକୁ
ରେ ଜଳଧର, ନନ୍ଦନନ୍ଦନେ କର ଆଶ
.........ନାଶିବ୍ୟଶ
ନାହିଁ ଆମ୍ଭଙ୍କୁ ହିଂସା କଲେ ରୁଚିର ବେଶ।
ଚଞ୍ଚଳା ନାମରୁ ତୋ ଦାସ ।୧୦।

ଟିକାକେ ନୀଳକଣ୍ଠ ମୋହିନୀ ନୀଳକଣ୍ଠଧ୍ୱନି ଶ୍ରବଣେ ଜ୍ଞାନହାର
ଟେକେଣ ବନପ୍ରିୟ ଭାଷୀ ଜୀବନପ୍ରିୟ ବୋଲି ଡ଼ାକନ୍ତ ଉଚ୍ଚକର

ହେ ନୀଳକଣ୍ଠ, ଟାଣେ ଦେଇ ଅଧର ରସ
...... କରିଗଲେ ନାଶ
ଟାଣେ କାମନା ଶିବ ଏ କଥା କମ୍ପା
ହେବ ନୀଳକଣ୍ଠର କଚ୍ଛ ଦୋଷ ।୧୧।

ଠାକୁର ନବରତ ଚନ୍ଦ୍ର ନବରତ ନୟନୁ ବହେ ଅଶ୍ରୁ ବାରି
ଠିକ ସାରସଧର ସୂମରି ରସଧର ଦଂଶିଲ ପ୍ରାୟେ ହୋଇ ନାରୀ
ରେ ନଳକଣ୍ଠ, ଠୂଳକରି ଦୁଃଖ ସାଗର
ଠାକୁ......ଲେ ଆତ୍ମ ଶିର
ଠିକେ ତୋର ଦହନ କରିବାର ବିଧାନ
ଶିଖୀ ନାମରୁ ଧର୍ମ ତୋର ୧୨।

ତରେ ସବୁ ବଳୟନୟନୀ କୁବଳୟ ମଦନ କାରିପ୍ରାୟେ ମଣି
ତାଳମ୍ବଦନ୍ତୀ ବରବର୍ଣ୍ଣିନୀ ଦନ୍ତୀବରଗତ କାମକୁ କହେ ବାଣୀ
ହେ ପଞ୍ଚଶର, ତୋଳା ପ୍ରତମା କୃଷ୍ଣ ବିନୁ
ତହୁଛୁ ବିରହ କୃଶାନୁ
ତରାନ୍ତ ତନପୂର ଜନମାନଙ୍କୁ ତୋର ମଧୁ ପରାଣ ପୁଷ୍ପଧନୁ । ୧୩ ।

ତଳ ମେଦିନୀପରେ ପ୍ରିୟେ ମେଦିନୀପରେ କଲ ସୁରତ ସୁମରଣ
ତାଳି ଅଧରେ କ୍ଷଣ ବୋଲନ୍ତ ଧରେ କ୍ଷଣ ଅନ୍ତରେ ମଦନକୁ ପୁଣ
ହେ ପଞ୍ଚଶର, ତାଳେ ତୁ ନକର ବିଗ୍ରହ
ତାଳୁଛୁ ତୋ ପ୍ରୀତି ସାଗର
ତାଳେ ତୋ ଅମଙ୍ଗଳ କରିବା କଥା
ମୂଳ ଶିବରିପୁ ନାମରୁ ତୋର ।୧୪।

ଅତନୁ ବସୁମତୀ ମୋହିନୀ ବସୁମତୀ ମଣ୍ଡନୀ ଅତି ଆରତରେ
ଅତନୁ କରପଦ ହେତୁରେ କରଗଦ ଯୋଡ଼ି କହନ୍ତ କେତକରେ
ରେ ପୁଷ୍ପବର, ବିଶେଷ ଦର୍ପିନୀ ନ ଘେନ
......... ଯୋଗିନୀ
ଆମ୍ଭର ପ୍ରାଣନାଶ କରିବୁ ତୁ ଅବଶ୍ୟ
ଯେଣୁ କଣ୍ଟକଅଛୁ ଘେନି ।୧୫।

ତାମରସ ଚଞ୍ଚଳନୟନୀ ସଚଞ୍ଚଳ ସରସମାନ ଘନ ଦେଖି
ତରୁଣ କୃଷ୍ଣସାର ନୟନୀ କୃଷ୍ଣସାର ମୂରତ ଚନ୍ଦ୍ର ହେଲେ ଦୁଃଖୀ

ହେ ଜଳଧର, ତୋର ଅନନ୍ତ
......ନା ଧର
ତୁମ୍ଭର ପ୍ରମାଦକୁ ବିନାଶ କରିବାକୁ କାରଣ କ୍ଷଣପ୍ରଭା ସର ।୧୬।

ସ୍ଥୂଳସାର ସମ୍ପଦ ସକଳରସ ପଦବାଣୀ ନୁହନ୍ତେ ଶ୍ରୁତିପୁର
ଥିବ ଯାହା ଜୀବନ ତହିଁରୁ ହାଜୀବନରୁହାର୍ଥୀ ବୋଲି ନ ବିସ୍ମର
ହେ ଜଳଧର, ଥରୁଛି ହୃଦୟ ଆମ୍ଭର
ଥରେ ଆମ୍ଭଙ୍କୁ ରକ୍ଷାକର
ସ୍ଥାଣୁତାର ଅନଳନାଶି ତାର ସମୀର
ଜାତନାମରୁ ଜାତ ତୋର ।୧୭।

ଦେଖି ସକଳ ବାମନେତ୍ରୀ ସକଳ ବାମଦେବ ମସ୍ତକ ବିମଣ୍ଡନ
ଦଇତମଣି ରତ୍ତ ଚନ୍ଦ୍ରମଣୀ ରତିପତି ବାଣରେ ହାରି ଜ୍ଞାନ
ହେ କଳାକର, ଦୋଷ ତ ନାହିଁ ତୁମ୍ଭଠାରେ
ଦହୁଛ କେଉଁ ଅବିଗ୍ଣରେ
ଦୁଃଶହ ନାଶିହତ କରିବାର ଉଚିତ ରୁଦ୍ର ଶିରୋମଣି ନାମରେ ।୧୮।

ଧ୍ୟାନରେ ମଣ୍ଡାଧର ପୁର୍ବୀଶ ମହୀଧର ଧରି ନ ପାରେ ଧରି ଯାକୁ
ଧନ୍ୟ ସେ ମଧୁପୁର ନାଗରୀ ମଧୁପୁର ବଚନେ ବନ୍ଧକଲେ ତାଙ୍କୁ
ହେ କଳାକର, ଧରି କହିଲେ ତୁମ୍ଭକର
ଧରିବ ନାହିଁ ନିଶାକର
ଧ୍ୱଂବହିଂସନ ଭାବ ଏ ତୁମ୍ଭର ସ୍ୱଭାବ
ଯେଣୁ ତୋ ନାମ ରୁକ୍ଷବର ।୧୯।

ଅରୁଣ ବନ୍ଧୁଜୀବ ତରୁଣ ବନ୍ଧୁଜୀବ ରାଜଅଧରୀ କେକାମୁଖୀ
ଅଙ୍ଗନା ସରସ୍ୱତୀ କହିବୁ ସରସ୍ୱତୀ ପତିଙ୍କି ବୋଲନ୍ତି ତରୁଣୀ
ହେ ନୀଳକଣ୍ଠ, ଆମ୍ଭଙ୍କୁ ଯଶୋଦାକୁମର
...............ହେଲେ ଦୂର
ନାହିଁ ଆମ୍ଭଙ୍କୁ ନାଶ କଲେ ଯେ କଚ୍ଛି
ଦୋଷ ବିରହୀନାମରୁ ତୋହର ।୨୦।

ପକ୍ଷୀଙ୍କ କଳବାଣୀ ଶୁଣିବି କଳବାଣୀ ଗଡ ନିକୁଞ୍ଜରତ ଶୁଣି
ପ୍ରିୟ ପ୍ରିୟକର ବୋଲନ୍ତି ପ୍ରିୟକର ରକ୍ଷଣ ବିନା ତାଙ୍କ ବାଣୀ

ହେ ପକ୍ଷୀଗଣ, ପରାଣ ପିୟୂଷ ପୀରତି
.............ରୁ ଝୁଣ୍ଟତି
ତାର ପରାଣ ହେମ ଏହୁ ଅର୍ଥେ ଜନମ ପତଙ୍କି କଲ ପ୍ରଜାପତି ।୨୧।

ଫୁଲକାନନେ ହରି ସ୍ମିତ ଆନନେ ହରି କରଣେ ବୋଲିଛନ୍ତି ନାହା
ଫାଟି ନ ଯାଇ ଯିବ ଯେଣୁ ନିର୍ଦ୍ଦୟ ଜୀବପୂଣ ହୋଇଲେ ଶନ୍ତ ଯାହା
ସେ ଗୋପୀମାନେ, ଫୁରୁଣାହାର ଶନ୍ତାଭରେ
ସ୍ଫୁଟେ ବଦନ୍ତି ମରୁତରେ
ସ୍ଫୁଟ ଏ ଜଗତରେ ଦୁଃସହ ଦୁଃଖ
ନରେ ଲଭନ୍ତି ବାତସକାଶରେ ।୨୨।

ବଧୂଙ୍କୁ ବ୍ରଜରାମା ବୋଲନ୍ତି ରାମାନୁଜ ପାଶକୁ ଶୀଘ୍ରକର
ବୋଲିବ ରାସକ୍ଷଣେ ଏକା ନିରାଶକ୍ଷଣେ କଲକୁ ହେତୁ ଯେତେ ସର
ହେ ଶଶଧର, ବହୁତ ଦିନେ ଭଗବାନ
ବାରେ ନ ଦେଲେ ଦରଶନ
ବୋଇଲେ ହେବ କିସ ଲଭିଛୁ ସୁଖଲେଶ
ବିପତ୍ତିରେ କେବଣ ଜନ ।୨୩।

ଭିନ୍ନ ଖଞ୍ଜନକାନ୍ତି ଆଖିରଞ୍ଜନକାନ୍ତ କରି ତୁମ୍ଭଙ୍କୁ ପାଇକରି
ଭୂଜିଲୁ ଭୂୟୁକୂଳ ଗୁଡ଼ ଉଭୟକୁଳ ଭକ୍ତବତ୍ସଳ ନରହରି
ହେ ଜଳଧର, ଭଗବାନଙ୍କ ଆଶ୍ରେ କରି
ଭାସିଯାଉଛୁ ଗୋପନାରୀ
ଭଜନ୍ତୁ ଯାହା ମୃତ୍ୟୁ ଏଥର ଏହୁ ହେତୁ
ଯେଣୁ ତା ନାମବାଣ ଅରି ।୨୪।

ମହତଖିରୁକୁଳ ଲଭଣ ଭିରୁକୁଳ ବୋଲନ୍ତି ଭ୍ରମର କୃପଣ
ମଦନଧନଞ୍ଜୟ ଦହୁଛି ଧନଞ୍ଜୟ ଶାଖାବହନେ ଆମ୍ଭ ପ୍ରାଣ
ହେ ଷଟପଦ, ମହତ କୁସୁମ ସାୟକ
................ ସାୟକ
ମୂଙ୍ଖର ଶିଳୀମୁଖ ସକାଶୁ ତାର ଦୁଃଖ
ହୋଇବା ନୁହଇ ଅଧିକ ।୨୫।

ଯଶୋଦାସୁତରଙ୍ଗ ସୁମରି ସୁତରଙ୍ଗ ସୁରଙ୍ଗ କୁରଙ୍ଗନୟନୀ
ଯମ ସହୃଶମଣି ଚନ୍ଦ୍ରକୁ ଦୃଶମଣି କୃଷ୍ଣ ବିନା ବୋଲନ୍ତି ବାଣୀ

ହେ ଶୀତକର, ଜୀବନ ନେଉଛୁ ମନୋଜ

......................

ଜୀବନ ଦାନେ ତବ କର୍ମାଇ ଉଚିତ୍ ହେବ ଯେଣୁ
ତୋ ନାମ ଦ୍ୱିଜରାଜ । ୨୬ ।

ରସ ସାଗରଧର ଅଗତ ଗିରିଧର ମୋହନୀ ପିକବାଣୀ ଶୁଣି
ରଜନୀ କର ଦରହାସିନୀ କରଦର ଲଭି ବୋଲନ୍ତି ତାକୁ ବାଣୀ
ହେ ପରଭୃତ, ରମଣୀ ଜନଙ୍କ ଜୀବତ
ରଖିବୁ ନାହିଁ ପରଭୃତ
ରାଜୀବଜ ଭିଆଣ ସକଳ ଜନପ୍ରାଣ ନେବାକୁ ବିନକର ସୁତ । ୨୭।

ଲାବଣ୍ୟ ସିନ୍ଧୁରସ ଲଭିଣ ସିନ୍ଧୁରସ ମତ୍ତଗଜ ହଂସଗମନୀ
ଲୋକନେ କଳାକାର ବୋଲେ ବିକଳାକର ଉଚିତୁ ବରଜ ତରୁଣ
ହେ ଶୀତକର, ଲଳନା ଶରୀରକୁ କାମ
ଲକ୍ଷ କର କରିଣ ତମ
ଲକ୍ଷ ରୂପେ ଭିଆଣ ବିଧୁର ଦେହ ଗୁଣ
ନାଶ କରିବାର ସ୍ୱଧର୍ମ । ୨୮ ।

ବିଳାସି ଗୁରୁତର ରସ ବିଗ୍ରହରୁ ତରଳାୟତନେତ୍ରା ଶୋକଭରେ
ବଦନ ପ୍ରତିବିମ୍ବ, ଚନ୍ଦ୍ରକୁ ପ୍ରତିବିମ୍ବ ଅଧରୀ ବୋଲନ୍ତି କାତରେ
ହେ ଶୀତକର, ବ୍ରହ୍ମାଣ୍ଡ ଈଶ୍ୱର ମୁରାର
ବିନାଶି କଲେ ଯେବେ ନାହିଁ
ବୋଲିବା ଧର୍ମନାଶ କରିବା କଥା ଦୋଷ
ନିଶାଚରରେ କି ବିଗ୍ରହ । ୨୯ ।

ଶ୍ୟାମା ବିନା ପ୍ରସୂନ ନୟନୀ ସୁପ୍ରସନ୍ନ ତରୁକୁ ବୋଲନ୍ତି ନିଷ୍ଠୁର
ଶୀଘ୍ରେ ରାଜୀବ ପତ୍ରୀ ଦେଉଛୁ ଜୀବ ପର୍ଣ୍ଣ ପତ୍ର ପ୍ରଭୃ ବିନା ଆମ୍ଭର
ହେ ତରୁଲତା, ସକଳ ଦ୍ୱିଜରାଜ ପୁରେ
ଶ୍ୱର·········ମଧୁପରେ
ସବୁକାଳେ ଭ୍ରମର ପ୍ରଫୁଲ୍ଲ ହୋଇବାର
ଉଚିତ ବିଟପୀ ନାମରେ । ୩୦ ।

ଶ୍ରବଣେ କଳରବ ଭ୍ରମଣ କଳରବ ବୋଲନ୍ତି ପେଷିଛୁ ଯତନେ
ଶମନ ପ୍ରତିଭଟ ସୁରସ ପ୍ରତିଭଟମାନଙ୍କୁ ନିଯୋଗି ନାଶନେ
ହେ ଜଳଧର, ଶ୍ରୀହରି ସୁତ ପଞ୍ଚଶର

.........ହେ ଈଶ୍ୱର ।
ସଂଘରୁ ନାଶଚଯ୍ୟ ଯାହା ମାରୁ କରଯ୍ୟ ଏ ମଧ୍
ପ୍ରିୟ ଗୁଣ ତୋର । ୩୧ ।

ସୁରତ ବଶାରଦ ସୁରସ ବଶାରଦ ଶଶୀ ବଦନ ପୀତବାସ
ସନ୍ତାପ ଭୁବନରେ ପକାଇ ଭୁବନେଶ୍ୱର ପାଇବ ତୁମ୍ଭେ କେଉଁଯଶ
ହେ ମହାପ୍ରଭୁ, ଶରଣ ରକ୍ଷଣ ବୋଲାଣ
ସମର୍ପି ହେଲୁ ନାଶଗଣ
ସତ୍ୟ ସର୍ବ ପ୍ରକାରେ ଚକ୍ରଧର ନାମରେ
କମ୍ପା ରଖିବ ଆତ୍ମ ପ୍ରାଣ । ୩୨ ।

ହରିଙ୍କି ବାମ ଅଙ୍କ କହିବୁ ବାମଅଙ୍କ ଉପରେ ବସାଇ ଯାହାଙ୍କୁ
ହରିତ ଛାମପାର ଦୁଃସହ ଛାମପାର ଯାତନା ହେଉଛନ୍ତି ଆତ୍ମଙ୍କୁ
ହେ ଶୀତକର, ହର ଚରଣ ଅଶ୍ରେ କର
ଦୂତ ହେଉଛୁ ଏତେ ନାଶ
ହତ କରିବ ପ୍ରାଣ ଏ ତୁମ୍ଭର ନିର୍ବାଣ
ଯେଣୁ ତୋ ନାମ ଜୀବଅରି । ୩୩ ।

କ୍ଷଣାଙ୍ଗ କୁଶଳାପି ବୋଲନ୍ତ କୁଶଳାପି କଳାପ କୁନ୍ତଳା ଚନ୍ଦ୍ରକୁ
କ୍ଷୁଦ୍ର ଭୁ ସଲକ୍ଷଣ ନୟାମ୍ବୁରୁ ସଲକ୍ଷଣ ଶ୍ରୀକୃଷ୍ଣ ସୁନ୍ଦର ମୁଖକୁ
ହେ ଶୀତକର, କ୍ଷିତି ମଣ୍ଡଳେ ହଳଧର
କ୍ଷେମଦ ନୁହଇ କାହାର
କ୍ଷୀରୋଦ ସୁତନାଥ ଚରଣେ ଲୋକନାଥ ଦାସ
ମାନସ ମଧୁକର । ୩୪ ।

---

# କରୁଣାସାଗର ଚଉତିଶା

କେତେ କେତେ ଯୁଗଗଲା ନୀଳକନ୍ଦର
କଳ୍ପବଟ ତଳେ କରିଅଛନ୍ତି ଘର । ଘୋଷା
କରୁଣାସାଗର ବାହୁପ୍ରସାରି କର
କରିବେ ଗୁଣ୍ଡିଚି ଯାତ୍ରା ଅଛି ମନର । ୧ ।

ଖଟିଛନ୍ତି ଅଶେଷ ବ୍ରହ୍ମାଣ୍ଡ ନାହାକୁ
ଖଟିଛନ୍ତି ଖଗପତି ସେହି ପାଦକୁ
କ୍ଷଣେ କ୍ଷଣେ ଚହଲ, ହରି ଶବଦ ଗୋଳ
ଖଞ୍ଜୁଛନ୍ତି ରଥେ ହୀରାମୋତି ପ୍ରବାଳ । ୨ ।

ଗୁଣ୍ଡିଚି ଉଚ୍ଛବ ଗୋଳ କେ କହୁ ଅନ୍ତ
ଗଜଦନ୍ତେ ଗଜପତି ରଥ ଗଢ଼ାନ୍ତି
ଗଜମୁକୁତା ଝରି, ଗର୍ଣ୍ଣି ମାଣିକ୍ୟସ୍ତ୍ରୀ
ଗଢ଼ୁଛନ୍ତି ବିଶ୍ୱକର୍ମା ପତନି ଫେରି । ୩ ।

ଘଟୁଆଳ ପଣେ ଦାନସାଧୁତା ଥିଲେ
ଘେନିଭାଇ ବହ୍ଣୀଙ୍କି ରଥେ ଚଢ଼ିଲେ
ଘରଘରଣୀ ଛାଡ଼ି, ନନ୍ଦିଘୋଷରେ ଚଢ଼ି
ଘରବରଲାଜ ଦୂରେ ଥୋଇଲେ ଏଡ଼ି । ୪ ।

ଅନ୍ଧାର ପକ୍ଷରେ ଅଣସରେ ରହିଲେ
ଅଣିହୋଇ ଦଶ ପାଞ୍ଚଦିନ ଶୋଇଲେ
ଅନନ୍ତର ମହିମା, ଜାଣି ନୁହଇ ସୀମା
ଅହଲ୍ୟାକୁ ତାରିଛନ୍ତି ଏହିଟି ସିନା । ୫ ।

ଚତୁରମାନଙ୍କ ଗୁରୁ ଚକ୍ରକଣ୍ଠଙ୍କ
ଚୋରାଇ ଆଣିଲେ କନ୍ୟା ଅତି ଛଟକ
ଚନ୍ଦେ ଛେଦିଲେ ଭାଇ, ଚିତ୍ତେ ଲେଖା ନ ଯାଇ
ଚହଲ ଗହଳ ହରିଧ୍ୱନି ଶୁଭଇ । ୬ ।

ଛତିଶା ନିଯୋଗ ଘେନି ସେ ଛତ୍ରପତି
ଛଡ଼ାଇଲେ ନୀଳଗିରିଙ୍କୁ ମନେ ଚିନ୍ତି

ଛତ୍ରଗହଳ, ହରି ଶବଦ ଗୋଳ
ଛଛନ୍ଦେ ଶ୍ରୀମୁଖ ଦେଖି ଏ ଚର୍ମ ଡୋଳ । ୭ ।

ଜଗନ୍ନାଥ ଜଗବନ୍ଧୁ ଜଗତପତି
ଜଗସନ୍ଧ ମଗାଇଲେ ଏହି ମୂରତି
ଯୋଗୀ ଜପିଲେ ଜପ, ଯୋଗ ସାଧିଲେ ତପ
ଜଗନ୍ନାଥ ରଥେ ଦେଖି ଛଡ଼ାଅ ପାପ । ୮ ।

ଝାଡ଼ ବନୋଦଆ ଏହୁ ଝଡ଼ାଡ଼ ଗୁରୁ
ଝଗଡ଼ା ଲଗାଇଗଲେ ନୀଳକନ୍ଦରୁ
ଝିମିଟି ରହି ଦେଖ, କଳାପଙ୍କଜ ମୁଖ
ଝୁଲି କରଛନ୍ତି ଯାକୁ ତ୍ରୈଲୋକ୍ୟ ଲୋକ । ୯ ।

ନାହିଁ ଆଦ ଅନ୍ତ ଏହୁ ନୁହନ୍ତି ନୂଆ
ନ ଜାଣି ନୁହଇ ତାଙ୍କର ଅଶେଷ ମାୟା
ନୀଳଗିରିଙ୍କି ଗୁଡ଼ି, ନନ୍ଦଘୋଷରେ ଚଢ଼ି
ନବୀନ ଘରଣୀ ଗୁଡ଼ି କି ମୁଖ କଢ଼ି । ୧୦ ।

ଟାଣୁଛନ୍ତି ଗଜପତି ଆପଣେ ରଥ
ଟଳଟଳ ହେଉଛନ୍ତି ଶ୍ରୀ ଜଗନ୍ନାଥ
ଟେକ ଗୃହଁ। ଶ୍ରୀମୁଖ, ଦେଖି ଖଣ୍ଡିବ ଦୁଃଖ
ଟାକଲେ ଖଣ୍ଡିବ କୋଟି ଜନ୍ମର ଦୁଃଖ । ୧୧ ।

ଠାକୁରପଣକୁ କିସ ଦେବା ଉପମା
ଠକଙ୍କର ଗୁରୁ ଏଡ଼େ ନାହିଁ ବଡ଼ିମା
ଠକି ଗୋପରୁ ଗଲେ, ପୁନରପିନଇଲେ
ଠାକୁର ହୋଇଣ ଏବେ ରଥେ ଚଢ଼ିଲେ । ୧୨ ।

ଡଙ୍ଗର ଗଉଡ଼େ ତାଙ୍କର ବଡ଼ହିଁ ମିତ୍ର
ଡେଇଁ କାଳନ୍ଦୀରେ ଏହୁ କଲେନା ନୃତ୍ୟ
ଡରେ ପଳାଇଗଲେ, ଗୋପେ ଲୁଚି ଯେ ଥିଲେ
ଡରଭୟେ ଗୁଡ଼ି ଏବେ ରଥେ ଚଢ଼ିଲେ । ୧୩ ।

ଢୋଲ ଡାକ ନାନା ବାଦ୍ୟ କେ କହୁ ଜାଣି
ଢେଉକେ କରିବ ଏଡ଼େ ଲୋକକୁ ଆଣି
ଢଳଢଳ ଶ୍ରୀମୁଖ, ଦେଖି ଖଣ୍ଡିବ ଦୁଃଖ
ଢାଙ୍କୁଣି ଫେରିଣ କି କେ ରଥେ ନ ଦେଖ । ୧୪ ।

## ଚଉତିଶା ସଞ୍ଜୀବନ

ଆସିଛନ୍ତ ଅନନ୍ତ ସେ ନାଗନ୍ତ ମିଳି
ଅଶେଷ ବ୍ରହ୍ମାଣ୍ଡନାଥ ଯହିଁରେ ମିଳି
ଆଉ ନ ହୋଇବ ଦେହ, ଏଡ଼େ ଯାତ୍ରା ସୁଲଭ
ଏଡ଼େ ଜନ୍ମ ଯାଉଅଛି କି କେ ନ ଲଭ । ୧୫ ।

ତିନରଥ ଯାଉଛନ୍ତ ତ୍ରୈଲୋକ୍ୟ ଜିଣି
ତିନଗୁଣେ ଅବତାର ତିନଗଉଣୀ
ତାଳେ ରହିଣ ଦେଖ, ତାଙ୍କ ପଙ୍କଜ ମୁଖ
ତିନଜନ୍ମର ଯେ ଛଡ଼ାଅ ପାପ ଦୁଃଖ । ୧୬ ।

ଥାପିଲେ ଉଗ୍ରସେନଙ୍କୁ କରିଣ ରାଜା
ଥକି ବାଳଗଣ୍ଡିଠାରେ ଘେନିଲେ ପୂଜା
ଥୟେ କର ହୋ ମନ, ପାଦେ ପଶ ଶିର ଶରଣ
ଥମ୍ବରୁ ବାହାର ଏହୁ ମନରେ ଘେନ । ୧୭ ।

ଦାନସାଧି ବୁଲୁଥିଲେ ଦରିଦ୍ରପଣେ
ଦେଉଳ ଛୁଡ଼ିଲେ ଏବେ କିସ କାରଣେ
ଦୁଃଖ ତୋ ମନକର, ଦେଖ ବାଳଗଣ୍ଡିର
ଦୟାନିଧି ଯାଉଛନ୍ତ ଗୁଣ୍ଡିଗୃଘର । ୧୮ ।

ଧନୁ ଧରି ବୁଲୁଥିଲେ ବ୍ରାହ୍ମଣପଣେ
ଧରିଣ ନନ୍ଦଦଳେ ଷଣ୍ଡି ଏହି ଆପଣେ
ଧୀରେ ଧୀରେଣ ହରି, ରଥୁ ବିଜୟକର
ଧୀରେ ଧୀରେ ବିଜେକଲେ ଶ୍ରୀ.ମଳଗିରି । ୧୯ ।

ନବଦିନ ନାନାବିଧ ନୁହଇ କହି
ନବରେ ମିଳିଲେ ଲକ୍ଷ୍ମୀ ଦର୍ଶିବାପାଇଁ
ନିଜ ସେବକ ବଳି, କରୁଛନ୍ତ ଚହଳ
ନନ୍ଦିଘୋଷ ଭାଙ୍ଗୁଛନ୍ତ କରିଣ ଗୋଳ । ୨୦ ।

ପିଣ୍ଡାପିଠି ହେଉଛନ୍ତ ପହଣ୍ଡିବେଳେ
ପେଲପଶି ଦେଖୁଛନ୍ତ କେ ବାହୁବଳେ
ପ୍ରଭୁ ଉଠିଲେ ରଥେ, ତିନଜଣେ ସହିତେ
ପୀତାମ୍ବର ପରିଧାନ ପଣ୍ଡା ସଙ୍ଗତେ । ୨୧ ।

ପୂରୁଛନ୍ତି ଶଙ୍ଖଧ୍ୱନି ଅତି ସୁରେଶ
ଫୁଲି ଫୁଲି ଗୂଳଛନ୍ତି କଳା ଶ୍ରୀମୁଖ
ଫାନ୍ଦେ ପଡ଼ୁଛନ୍ତି ମନ, ଫିଟି କର ଦର୍ଶନ
ଫିଟିଯିବ କୋଟି କୋଟି ଜନ୍ମ ବଂଧନ । ୨୨ ।

ବାସୁଦେବ ବୈକୁଣ୍ଠ ଶ୍ରୀ ବନମାଳୀ
ବିକ୍ରମେ ବାମନ ରୂପି ପାତାଳେ ବଳୀ
ବିରବରଙ୍କ କର, ବିଯେ ନନ୍ଦିଘୋଷର
ବହ୍ନିଣୀ ସୁଭଦ୍ରା ଭାଇ ଲଙ୍ଗଳଧର । ୨୩ ।

ଭାବଗ୍ରାହୀ ଭଗବାନ ଭୟ ଭଞ୍ଜନ
ଭାରତ ସଭାରେ ରଖ ଦ୍ରୌପଦୀ ମାନ
ଭକ୍ତ ଭାବରେ ବଶ, ଭକ୍ତ ଜନେ ବିଶ୍ୱାସ
ଭୁଞ୍ଜିଲେ ବିଦୁର ଘରେ ଯେ ଷଡ଼ରସ । ୨୪ ।

ମାର୍କଣ୍ଡ ଗର୍ଭରେ ଖୋଜି ନ ପାଇ ଅନ୍ତ
ମାଟି ଖାଉ ଯଶୋଦା ଦେଖିଲେ ସମସ୍ତ
ମିତ୍ର ବ୍ରାହ୍ମଣ ପଯୂର, ଧରି କମଳାବର
ମୁଠିଏ ତଣ୍ଡୁଳ ଖାଇ ତାଙ୍କୁ ଦେଲେ ଅପାର । ୨୫ ।

ଜଗତ ଈଶ୍ୱର ଯୋଗୀ ଜଙ୍ଗମ ଯେନ
ଯାଉଛନ୍ତି ଧୀରେ ଧୀରେ କମ୍ପେ ମେଦିନୀ
ଜାହ୍ନବୀ ନଦୀ ଯାର, ପଦୁ ଛାଡୁ ବାହାର
ଯାମଳାକୁ ଭାଞ୍ଜିଛନ୍ତି ଏହି ଠାକୁର । ୨୬ ।

ରାଜସୂୟ ଯାଗରେ ଏହୁ ଉଗର ଥିଲେ
ରାବଣ ମାରଣ ଲଙ୍କା ଗଡ଼ ଜିଣିଲେ
ରଥେ ପ୍ରବେଶ ହୋଇ, ସିଂହ ଦ୍ୱାରେଣ ରହି
ରତ୍ନ ସିଂହାସନେ ଛନ୍ତି କମଳ ଦେଇ । ୨୭ ।

ଲଲାଟ ପଟିରେ ଶୋଭା ଅତି ସୁନ୍ଦର
ଲମ୍ବିଛନ୍ତି ହୃଦେ ହାର ଅମୂଲ୍ୟ ସାର
ଲକ୍ଷ୍ମୀ ଦେବୀଙ୍କ ବାଣୀ, ଲଜେ ଭିନ ପରାଣୀ
ଲେଉଟି ତ ଯାଅ ନୂଆ ଘରଣୀ ଯେନ । ୨୮ ।

ଖାରପଣେ ମାରୁଥିଲେ ମଲ୍ଲ ମାହୁନ୍ତ
ବଟପୁଟେ ଭାସୁଥିଲେ ଏହି ସାଆନ୍ତ
ବରୁଣ ବନ୍ଧନୀ ଗୁଣ୍ଡ ଶ୍ରୀ ଚକ୍ରପାଣି
ବଳ୍ମୀକ ଯେନ ଲଜ ନୁହଇ ଗଣି । ୨୯

ଶ୍ରୀପୁରୁଷୋତ୍ତମ ବୋଲି ଯାହାର ନାମ
ଶ୍ରୀମୁଖଙ୍କୁ ଗୁଡ଼ିଲେ କସ ପାଇଁ ଉତ୍ତମ
ସତ୍ୟ ଯୁଗରେ ହରି, ଶଙ୍ଖାସୁରକୁ ମାରି
ସୃଷ୍ଟି ପାଳିବାର ପାଇଁ ବେଦ ଉଦ୍ଧରି । ୩୦ ।

ସାତ ଯୋଜନରେ ଗଜ ଡ଼ାକିଲି ହରି
ସତ୍ୟଭାମା ସ୍ନେହ ଗୁଣ୍ଡ଼ କୁମ୍ଭୀକ ମାରି
ସେହି ନୃପତି ଏହି, ସିଂହଦ୍ୱାରେଣ ରହି । ୩୧ ।

ସକଳ ଦେବତା ଶିରେ ଯୋଡ଼ିଲେ କର
ସନ୍ତୋଷ କରଣ ହେଲେ ପ୍ରଭୁଙ୍କ ଘର
ଶଙ୍ଖ ଶବଦ ପୂରି, ରଥ ବଜସ୍ତେ କରି
ସଧୀରେ ସଧୀରେ ବଜେ ଶ୍ରୀ ନୀଳଗିରି । ୩୨ ।

ହରଷ ହୋଇଣ ହରି ହଳୀ ପଛର
ହଳଧରମୁହିଁ । ଡ଼ରେ ଯେନ ମଧର
ହରିଶବଦ ନାଦ, ଭକ୍ତପୁରେ ଆନନ୍ଦ
ହରିଙ୍କର ଘରେ ସୁଖ ଭାଜିଲା ଦ୍ୱନ୍ଦ । ୩୩ ।

କ୍ଷିତି ମଧ୍ୟେ ଏତେ ଯାତ୍ରା ନାହିଁ ନୋହିବ
କ୍ଷଣେ ମାତ୍ର ରଥେ ଦେଖି ନସ୍ତରି ଯିବ
କ୍ଷୁଦ୍ର ବୁଦ୍ଧି ମୋହର, ବସ୍ତ୍ର କାଶୀ ପାମର
କ୍ଷମା ନିଧି ପଦ୍ମ ପାଦେ ଶରଣ ମୋର । ୩୪

---

# ଜଗବନ୍ଧୁ ଚଉତିଶା

କରୁଣା ସାଗର ହରି
ଅପୂର୍ବ ବାଳକା ଅନାଥ କରି
ହେ ଜଗବନ୍ଧୁ
ମୋ ବନ୍ଧୁ ପ୍ରାଣ ଈଶ୍ୱରୀ ।୧।

ଖଣେ ନ ଛାଡ଼ଇ ମୁହିଁ
ଝଣ୍ଟି କରିଗଲେ ଦାରୁଣ ବ୍ରହ୍ମା
ହେ ଜଗବନ୍ଧୁ
ମୋତେ ତ କାହାକୁ ଦେଇ ।୨।

ଗରୁ ଯଉବନ ମୋର
ଯୁବାକାଳେ ବ୍ରହ୍ମ କଲ ଅନ୍ତର
ହେ ଜଗବନ୍ଧୁ
ରହିଲେ ବାରବାଟିର ।୩।

ଘରୁ ଯେତେବେଳେ ଗଲେ
ଚରଣ ଧରି ମୁଁ ପଡ଼ିଲି ତଳେ
ହେ ଜଗବନ୍ଧୁ
ମୋତେ ନାସ୍ତି କରି ଗଲେ ।୪।

ଊଇଁ ଆସୁଥିଲେ ଜହ୍ନ
ଶନିବାର ଦିନ କଲେ ଗମନ
ହେ ଜଗବନ୍ଧୁ
କଟକେ ହେଲେ ବନ୍ଧନ ।୫।

ଚମକଇ ଅଙ୍ଗ ମୋର
ସପନ ଦେଖିଲି ନିଶାରାତିର
ହେ ଜଗବନ୍ଧୁ
ସ୍ୱଜନ ଛାଡ଼ି ଯିବାର ।୬।

ଛନ ଛନ ମନ ହେଲା
ନବ ଯଉବନ ବୃଥାରେ ଗଲା
ହେ ଜଗବନ୍ଧୁ
ଭୃତ୍ୟଙ୍କୁ ସାହେବ ନେଲା ।୭।

ଜୀବନ ଯାଉ ମୋହର
ମୋ କାନ୍ତ ରହିଲେ ମେଦିନୀ ପୂର
ହେ ଜଗବନ୍ଧୁ
ବରୁଣାଳିଙ୍କୁ ସୁମର ।୮।

ଝୁରଇ ବାମ ନୟନ
ଘରକୁ ଗଲେ ମାଡ଼ଇ ବେଦନ
ହେ ଜଗବନ୍ଧୁ
ନ ଥିବାରୁ ପ୍ରାଣଧନ ।୯।

ନିର୍ଗୁଣ କରିଣ ଗଲେ
ମାସକୁ ଯାଇ ଛ ମାସ ରହିଲେ
ହେ ଜଗବନ୍ଧୁ
ବଡ଼ ତ ନିର୍ଗୁଣ କଲେ ।୧୦।

ଟଙ୍କା ସୁନା ଲୁଗା ମୋର
ସୁବର୍ଣ୍ଣବାହୀ ଦଣେ ଅସୁନ୍ଦର
ହେ ଜଗବନ୍ଧୁ
ରାଜନ ଗୁଡ଼ ସିବାର ।୧୧।

ଠିକ କଥା ନ କହିଲେ
ଠିକ କରି ପଦେ କହି ନ ଗଲେ
ହେ ଜଗବନ୍ଧୁ
ବଡ଼ ତ ନିର୍ଗୁଣ କଲେ ।୧୨।

ଡ଼ଗରି ଯାଉ ମୋହର
ଚଟାଉ ଦେବ ମୋ କାନ୍ତ ଘୁମୁର
ହେ ଜଗବନ୍ଧୁ
ରାଜନ ଆସନ୍ତୁ ମୋର ।୧୩।

ଚେ଼ାକବ ଗରଳ ମୁହିଁ
ଯେବେ ନ ଆସିବେ ମୋ ନିକ ସାଇଁ
ହେ ଜଗବନ୍ଧୁ
ଅନାଥ ହୋଇଲି ମୁହିଁ ।୧୪।

ଅଣ ଆୟୁଷ ମୋହର
ଯେବେ ନ ଆସିବେ ନନ୍ଦ ଠାକୁର
ହେ ଜଗବନ୍ଧୁ
ଅକାରଣ ପ୍ରାଣ ମୋର ।୧୫।

ତେର ଲକ୍ଷ ଟଙ୍କା ମୋର
ନେଉ ଅଛେ ସେଇ ସାହେବ ଘର
ହେ ଜଗବନ୍ଧୁ
ରାଜନ ଆସନ୍ତୁ ମୋର ।୧୬।

ଥୟୁ ହେଉ ନାହିଁ ମନ
ଥିଲେ ନିକଟରେ ମୋହର ପତ
ହେ ଜଗବନ୍ଧୁ
ଥାଆନ୍ତା ଏମନ୍ତ ଗତ ।୧୭।

ଦକ୍ଷିଣ ମେଲକୁ ଗଲି
ରତ୍ନ ପଲଙ୍କ ପଡ଼ିଛି ଦେଖିଲି
ହେ ଜଗବନ୍ଧୁ
ଦେଖି ମୂର୍ଚ୍ଛାଗତ ଗଲି ।୧୮।

ଧଇର୍ଯ୍ୟ କେ ପାରେ ଧରି
ଆହା ପ୍ରାଣନାଥ ଗଲ କି କରି
ହେ ଜଗବନ୍ଧୁ
ଛଡ଼ା ମର୍ଜ୍ଞୀ ପ୍ରାପ୍ତ ହେଲି ।୧୯।

ନିର୍ଣ୍ଣ ବଚନ ହେଲା
ଏହି ସମୟେ ଉଗର କହିଲା
ହେ ଜଗବନ୍ଧୁ
ତୁମ୍ଭଙ୍କୁ ସାହେବ ନେଲା ।୨୦।

ପଡ଼ିଲ ଭୂମିରେ ଢଳି
ଆହା ପ୍ରାଣନାଥ ଗଲ କି କରି
ହେ ଜଗବନ୍ଧୁ
ପୃଷ୍ଠ ପ୍ରାୟୁ ଗଲ ସଢି ।୨୧।

ଫାନ୍ଦଥିଲା କେତେ ଫାନ୍ଦ
ଫାନ୍ଦ ଭାଜିଗଲା ହୋଇଲା ଅନ୍ଧ
ହେ ଜଗବନ୍ଧୁ
ଫାନ୍ଦିଲା ବଧି ଏ ଛନ୍ଦ ।୨୨।

ବାଳମୁକୁନ୍ଦ ଯେ ଥିଲେ
ଷଣ୍ଢିକୁଳ ହୋଇ ଧଯ୍ୟା ନ କଲେ
ହେ ଜଗବନ୍ଧୁ
କଣ୍ଠ କାଟି ଧରାଇଲେ ।୨୩।

ଭଲ ରାଜଗୁରୁ ଭଲ
ସାହେବ ସଙ୍ଗତେ ଲଢ଼େଇ କଲ
ହେ ଜଗବନ୍ଧୁ
ଖୋରଧାରେ ଫାଶି ହେଲ ।୨୪।

ମୁଁ ଅବା କରାଣକା'ରା
ମୋ କାନ୍ତଙ୍କୁ ନେଲ ସାହେବ ଧରି
ହେ ଜଗବନ୍ଧୁ
ମୋ ବନ୍ଧୁ ପ୍ରାଣ ଈଶ୍ୱର ।୨୫।

× × × × ×

ଜୀବନ ଠାକୁର ମୋର
ଯେବେ ନ ଆସିଲେ ଓଡ଼ିଶା ପୁର
ହେ ଜଗବନ୍ଧୁ
ଗଙ୍ଗା କଟକାଇ କର ।୨୬।

ରସ କଥା ଜାଣେ କହ୍ନ
ରସ କଉତୁକ ଭାଙ୍ଗିଲା ବହ୍ନ
ହେ ଜଗବନ୍ଧୁ
ଆଉ ବୁଦ୍ଧି ଦିଶୁ ନାହିଁ ।୨୭।

ଲକ୍ଷ୍ମୀ ଘରେ ବସିଥିଲେ
ଯେଉଁଦିନୁ କର୍ମ ବାମ ହୋଇଲେ
ହେ ଜଗବନ୍ଧୁ
ମୋ କର୍ମକୁ ନ ଆସିଲେ ।୨୮।

ବଡ଼ ରାଜା ହୋଇଥିଲେ
ଯେଉଁଦିନୁ ରାଜା କଟକ ଗଲେ
ହେ ଜଗବନ୍ଧୁ
ଧନରତ୍ନ ବୋହି ନେଲେ ।୨୯।

ଶିଖି ମୁଲକରୁ ଗଲା
ସୁଦର୍ଶନ ଚକ୍ର କେଣେ ରହିଲା
ହେ ଜଗବନ୍ଧୁ
ମୋ କର୍ମକୁ ନ ପଡ଼ିଲା ।୩୦।

ଶରଣ ପଶିଲି ମୁହିଁ
ଯେବେ ନ ଆସିବେ ମୋ ନିଜ ସାଇଁ
ହେ ଜଗବନ୍ଧୁ
ଅନାଥ ହୋଇଲି ମୁହିଁ ।୩୧।

ସଢ଼ିଗଲା ଦେହ ମୋର
ସାହେବ ନେଲେକ ନିଜ ଠାକୁର
ହେ ଜଗବନ୍ଧୁ
ସରୁନାହିଁ ଦିନ ମୋର ।୩୨।

ହସି କହୁଥିଲ ମୁହାଁ
ହରଣୀପ୍ରିୟ ଥିଲୁ ଦେଲ ଅନାଇ
ହେ ଜଗବନ୍ଧୁ
ହସିବାକୁ ପ୍ରାଣ ନାହିଁ ।୩୩।

କ୍ଷମା ସାଗର ଶ୍ରୀହରି
ବାର ବରଷର ବାଳିକା ହରି
ହେ ଜଗବନ୍ଧୁ
ସଂସାର୍‌ ନିଅ ଉଦ୍ଧରି ।୩୪।



ସମାପ୍ତ